ସୁବଳ ସୁଦାମ ସଖା ସଙ୍ଗତରେ
କେ କରିବ ପରିହାସ ଗୋ ॥ ୮ ॥

କଲେ ଅନୁକୂଳ ଗୋପର ଯୁବତୀ
ପହୁଞ୍ଚିଲେ ଝିନ ବାସ ଗୋ
ଭଣିଲେ ଆରତ ମୋତେ ସଙ୍ଗେ ନିଅ
ମୁଁ ପରା ତୁମ୍ଭର ଦାସ ଗୋ ॥ ୯ ॥
✳✳

✳✳

## ସୁନ୍ଦର ଦେଉଳେ ହରି

### ଅର୍ଜୁନ ଦାସ

(ଅଷ୍ଟାଦଶ ଶତାବ୍ଦୀ)

ସୁନ୍ଦର ଦେଉଳେ ହରି ହେ
ସୁନ୍ଦର ଦେଉଳେ ହରି
ସୁନ୍ଦରୀ କ ଯେନ ବନେ କରିଛନ୍ତି
ମହାପ୍ରଭୁ ହେ
ଶଙ୍ଖ ଚକ୍ର ଗଦାଧାରୀ ॥୦॥

ସୁନ୍ଦର ମୋହନ ଚୂଳ ହେ
ସୁନ୍ଦର ପୀତ ଦୁକୂଳ
ଶ୍ରୀଜଗନ୍ନାଥଙ୍କୁ ସୁନ୍ଦର ଦିଶଇ
ମହାପ୍ରଭୁ ହେ
ଧଣ୍ଡା କରଞ୍ଜିଆ ମାଳ ॥ ୧ ॥

ସୁନ୍ଦର ସପତ ଫଣୀ ହେ
ସୁନ୍ଦର ସପଛ ଫଣୀ
ଶ୍ରୀଜଗନ୍ନାଥଙ୍କୁ ସୁନ୍ଦର ଦଶଇ
ମହାପ୍ରଭୁ ହେ
ଭାଇ ତାଙ୍କ ହଳପାଣି ॥୨॥

ଭଣଇ ଆରକ୍ତ ଧୀର ହେ
ଦୋଷ କ୍ଷମା କର ମୋର
ଶ୍ରୀଜଗନ୍ନାଙ୍କ ଚରଣେ ଶରଣ
ରକ୍ଷା କଲେ ଚକ୍ରଧର ॥୪॥

**

**

# ତବ ନାମ ପତିତପାବନ

## କାର୍ତ୍ତିକ

(ଅଷ୍ଟାଦଶ ଶତାବ୍ଦୀ)

[ ତାଳ-ପହପଟ ]

ତବ ନାମ ପତିତପାବନ ତିନି ଭୁବନେ ପ୍ରକଟି ବାଜେ
ମୁଁଭି ପତିତ କଦମ୍ବ ମୁକୁଟ ମଣିଙ୍କ ଉପରେ ରାଜେ ॥୦॥

ମୋ ଇ କଣଳ ଅଭିମାନ ଲୋଭ କ୍ରୋଧ ପରକୁ ହିଂସା
କାମିକ ସଙ୍ଗେ କପଟୀ ମୁଁହି ନ ସହେ ପର ପ୍ରଶଂସା ॥୧॥

ମୁଁହି ଗର୍ବିତ ପର ନିନ୍ଦକ ଖଳ ବିଶ୍ୱାସ ଘାତୀ
ବଞ୍ଚିତ ତବ ନାମୁଁ କଠୋର ବିଷୟ-ବିଷ ମୋହୀ ॥୨॥

ମୁଁହି ମିଥ୍ୟାରତ ଧରମ ବିରୋଧୀ କର୍ମ କୁଟିଳ ବୁଦ୍ଧି
ପରଧନ ପରଦାରା ଲମ୍ପଟ କର୍ମଗୁଣେ ଅସିଦ୍ଧି ॥୩॥

ମୁଁହି ଗଜ ଅଜାମିଳ ବ୍ୟାଧ ହରିଣୀ ଭାହିଁ
ପରୀକ୍ଷ ଦାମୀ
କାର୍ତ୍ତିକ ଦୀନ କହଇ ପ୍ରଭୁ
ସୁକଲ ଅନ୍ତର୍ଯ୍ୟାମୀ ॥୪॥

**

**

# ଭଜ କଳାଧଳା ଦେବ ଭାଇଙ୍କି

**ଗୋପାଳ**

**(ଅଷ୍ଟାଦଶ ଶତାବ୍ଦୀ)**

ଭଜ କଳାଧଳା ଦେବ ଭାଇଙ୍କିରେ ମନ ।।୦।।

ହୃଦେ କରଡ଼ିମାଳ ପଡ଼େ ଆଲଟ ଚାମର
ତୋ ଜନ୍ମ ସୁଫଳ କର ଚାହିଁକରେ ।।୧।।

ରତ୍ନ ସିଂହାସନେ ଉଭା          କୋଟି କାମ ଜିଣି ଶୋଭା
ମଧ୍ୟରେ ସୁଭଦ୍ରା ଶଶି ମୁହିଁକରେ ।।୨।।

ଯାʼର ଲାଗିଣ ପଥର          ପାଷାଣୁ ନାଜ ଶରୀର
ପାଇଲା ମୁକତି ହେଲା ଚାହିଁକ ରେ ।।୩।।

ଯେତେକ ଅଛୁ ତୋ ଦୁଃଖ          ଜଣାଅ ଚାହିଁ ଶ୍ରୀମୁଖ
ବୋଲେ ଗୋପାଳ ଚତୁର୍ଦ୍ଧାରୂପ ଧାସ୍ତିକରେ ।।୪।।

**

**

# ଦୀନବନ୍ଧୁ ଦୟାସିନ୍ଧୁ

## ଦାମୋଦରଦ୍ୱିଜ

(ଅଷ୍ଟାଦଶ ଶତାବ୍ଦୀ)

ଦୀନବନ୍ଧୁ ଦୟାସିନ୍ଧୁ ତୁମ୍ଭେ ଦୁଃଖ ନିବାରଣ ହେ ।।ପଦ।।
ଆହେ ନୀଳଗିରି ଦାରୁ ବିହାରୀ ପ୍ରଭୁ ଦଇତାରି
ନିତ୍ୟ ପୁରୁଷ ହେ ନିତ୍ୟ ଅବତାରୀ
ନାରାୟଣ ହେ ପ୍ରଭୁ ରକାରୀ
ନରସିଂହ ନରହରି ମୁରାରୀ ହେ
ନଳିନ ଈକ୍ଷଣ ହେ ।। ୧ ।।

ଆହେ ପ୍ରଭୁ ଲକ୍ଷ୍ମୀପତି କଳା ଜଳଧର ମୂର୍ତ୍ତି
ରସିଲି ନାହିଁ ମୁଁ ତୁମ୍ଭ ଭଗତି
ବସିଲି ନାହିଁ ସାଧୁଙ୍କ ସଙ୍ଗତି
ପୋଷିଲି ନାହିଁ ପ୍ରଭୁଙ୍କ ଗୁଣ କୀର୍ତ୍ତି
ମୁଁ କରି ପଣରାଣ ହେ ।। ୨ ।।

ଯେବେ ମୋତେ ରଖିବ, ରଖିବାରୁ ଆଉ କି ଦାଗିବ
କପାଳରେ ମୋର ଯାହାଥିବ କାଳେ-
କାଳେ ଅନ୍ୟଥା ନୋହିବ
ଏମନ୍ତ ଆଜ୍ଞା ମୋତେ ଯେବେ ହେବ
ଏ କାହାକୁ ଦୂଷଣ ହେ ।।୩।।

ଭଣେ ବିପ୍ର ଦାମୋଦର ଖରି-ହେଲା
ପ୍ରଭୁ କଷ୍ଟ ମୋର
ଭରସା କରିଛି ଶ୍ରୀପଦ୍ମ ପୟର
ଭସାଇ ଦେଲ ହେ ଭବସାଗର
ଭେଳା ହୋଇବ ସେ ଆଉ କାହାର
ମୋ ଯେନିବା ଜଣାଣ ହେ ।।୪।।

**

**

# ଅଶେଷ ମଙ୍ଗଳ

## ନୃସିଂହ ଗଜପତି

(ରାଗ-ମଙ୍ଗଳ ଗୁର୍ଜ୍ଜରୀ)

[ଅଷ୍ଟାଦଶ ଶତାବ୍ଦୀ]

ଅଶେଷ ମଙ୍ଗଳ ପୂର୍ଣ୍ଣକୁମ୍ଭ କଳା ମୁଖ
ବସନ ପ୍ରାନ୍ତେକ ବେଢ଼ି ଶୋହେ ବିନ୍ଦୁ ରେଖ ଯେ ॥୧॥

ଜଗନ୍ନାଥ ନାମ ଏକା ତ୍ରିଭୁବନେ ସାର
ଭକ୍ତ ଯାହା ଦୁରିତକୁ ଛେଦନ କୁଠାର ହେ ॥୨॥

ଅଧର ଚୂତ ପଲ୍ଲବ ଅରୁଣର ଜ୍ୟୋତି
ଶ୍ରୀ ଫଳତିଳକ କପାଳରେ ବିରାଜନ୍ତ ହେ ॥୩॥

ଅଧର ନୟନ ଶ୍ୱେତ ପଙ୍କଜ ସୁନ୍ଦର
ମଧୁ ଲୋଭେ ଚୁମ୍ବି ରହେ ଡୋଳା ମଧୁକର ହେ ॥୪॥

ବାରତିଥି ତାରଚନ୍ଦ୍ର ଯୋଗ ଏ କରଣ
କିଛି ନ ବିଚାର ପଶ ନାମରେ ଶରଣ ହେ ॥୫॥

କାଳବେଳ ଶୁଭ ଲଗ୍ନ ନବଗ୍ରହ ଶାନ୍ତ
ପଦକୁ ପଦ ସମ୍ପତ୍ତି ନ ଥାଇ ବିପତ୍ତି ହେ ॥୬॥

ଯାତ୍ରାର ଆରମ୍ଭ ବେଳେ ଗୋବିନ୍ଦ ସୁମର
ଲଭ ଯେଣ ଗ୍ରହମାନେ ଥିବେ ସଙ୍ଗତର ହେ ॥୭॥

ଜଗନ୍ନାଥ ପଦ୍ମପାଦେ ଚିନ୍ତି ହେ ସୁମତି
ପଦଯୁଗ ବନ୍ଦିତ ନୃସିଂହ ଗଜପତି ହେ ॥୮॥

**

**

# ଆହେ ମହାପ୍ରଭୁ

## ପଦ୍ମନାଭ ପଟ୍ଟନାୟକ

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-ରାମକେରୀ]

ଆହେ ମହାପ୍ରଭୁ ନୀଳାଦ୍ରିସିଂହ କମଳାପତି
ତୁମ୍ଭ ଆଉ ଦୀନଜନରେ ପଡ଼ୁଅଛୁ ବିପତ୍ତି ।।୧।।

ପତିତପାବନ ବାନାକୁ ନୀଳଚକ୍ରେ ଉଡ଼ାଅ
ମୋହବେଳକୁ ଏ ମହିମା କାହିଁପାଇଁ ବୁଡ଼ାଅ ।।୨।।

ଅପରାଧ ଅଛୁ ଏମନ୍ତ ଦେନଛକ ଚଉରେ
ଅପରାଧ ଭୟୁ ଭଞ୍ଜନ ବାନା ଏ ଜଗତ ରେ ।।୩।।

ଶରଣ ସମ୍ଭାଳ ପରା ହେ ବାଞ୍ଛା କଳପତରୁ
ଅଶରଣ ଜନ ରଖିଲେ ସିନା ଏ ଆରତରୁ ।।୪।।

ଦୁରିତ ସମୁଦ୍ରେ ଭାସୁଛୁ ପ୍ରଭୁ ଏକ ଉଚିତ
କଳୁଷ ନାଶନ ବାନାକୁ ଏତ ଅଟେ କଞ୍ଚିତ ।।୫।।

**

**

# ନଶୁଣୁଅଛ କାହିଁକି ?

## ପଦ୍ମନାଭ ପଟ୍ଟନାୟକ

(ଅଷ୍ଟାଦଶ ଶତାବ୍ଦୀ)

ମହାପ୍ରଭୁ ମହାଆର୍ତ୍ତି ହେଲା ଯେ
ନ ଶୁଣୁଅଛ କାହିଁକି ॥୦॥

ଚତୁର୍ଥ ଯେତେ ସଙ୍କଟ ମାନଙ୍କରୁ
ରଖିଛ ଯାହା ଯାହାକୁ
ଜଗଦୀଶ ଏ ଉତ୍ତରେ ଜଣାଇ
ଦଆଉ ମୋ ଦୁଃଖ କାହାକୁ ॥୧॥

ଅନ୍ତରଗତ କଥା ଅନ୍ତରଯାମୀଙ୍କ
ଅନ୍ତର ହୋଇଛ ନକ
ଭୃତ୍ୟ ହେଲେ ଅବରତେ ଅପରାଧୀ
ପ୍ରଭୁ ଚିତ୍ତରେ ଘେନକ ॥୨॥

ସନ୍ତତ ସନ୍ତାପ ପ୍ରତାପ ଅନଳ
ଜଳୁଛି ହୃଦ ଭିତରେ
କରୁଣାସିନ୍ଧୁ କାରୁଣ୍ୟ ଜଳ ବୃଷ୍ଟି
କର କନା ତୁରିତରେ ॥୩॥

ଅନିତ୍ୟ ସଂସାର ଉତ୍ପତ୍ତି ପ୍ରଳୟ
ସ୍ଥିତିକ ଅଟ କାରଣ
ଏ ଘେନ ତବ ଚରଣ ବିନୁ ମୋର
ଅଛି କେ ଅନ୍ୟ ଶରଣ ॥୪॥

ଅଗାଧ ସମୁଦ୍ର ମଧ୍ୟରେ ପଡ଼ିଣ
ଅନ୍ତରେକ ହେଲି ହରି
ବୋଲେ ପଦ୍ମନାଭ ଭବଗ୍ରାସ୍ତି ଜାଣ
କର ଏ ବିପଦୁଁ ହରି ॥୫॥

**

✳✳

# ଦୟାକର ଦୀନବନ୍ଧୁ

**ରାମକୃଷ୍ଣ**

(ଅଷ୍ଟାଦଶ ଶତାବ୍ଦୀ)

ଦୟାକର ଦୀନବନ୍ଧୁ ! ଶୁଭେ ଯାଉ ଆଜ ଦିନ
କର ଯୋଡ଼ି ତୁମ୍ଭ ପଦେ କରୁଅଛି ନିବେଦନ ।।ଘୋଷା।।

ଅନାଦି ଅନନ୍ତ ହରି କ୍ଷୀର ସାଗର ବିହାରୀ
ଲକ୍ଷ୍ମୀଦେବୀ ମନୋହାରୀ ପ୍ରଭୁ ପତିତପାବନ ।।୧।।

ସନ୍ଥ ଶାନ୍ତ ପ୍ରଦାୟକ ଦୁଷ୍ଟ ଶାସ୍ତି ବିଧାୟକ
ରୁକ୍ମିଣୀ-ପ୍ରାଣନାୟକ ଜଗତ ଜନ ବନ୍ଦନ ।।୨।।

ଜଗଜ୍ଜନ ହିତକାରୀ ଦଶ ଅବତାର ଧାରୀ
ମଧୁସୂଦନ ମୁରାରି କାଳିୟ ଦର୍ପ ଗଞ୍ଜନ ।।୩।।

ଯେବେଣେ ଚକ୍ଷୁ ପଡ଼େ ଯହିଁ ତୁମ୍ଭ କୀର୍ତ୍ତି ବିରାଜଇ
ଭାବ ଚିତ୍ତ ପୁଲକଇ ହେ ଭକ୍ତ ହୃଦଚନ୍ଦନ ।।୪।।

ତୁମ୍ଭେ ଧ୍ୟାନ ତୁମ୍ଭେ ଜ୍ଞାନ ମୁକ୍ତିଦାତା ଭଗବାନ
ତୁମ୍ଭ ବିନୁ ନାହିଁ ଆନ କଳିକଳୁଷ ନାଶନ ।।୫।।

ତୁମ୍ଭେ ଏ ସଂସାରେ ସାର ଆଉ ସବୁ ମାୟା ଘୋର
କୃତାନ୍ତ ଭୟୁଁ ଉଦ୍ଧର କହେ ରାମକୃଷ୍ଣ ଦୀନ ।।୬।।

✳✳

**

# ଜୟ ଜୟ ହରି

## ରାଧାନାଥ

(ଅଷ୍ଟାଦଶ ଶତାବ୍ଦୀ)

ଜୟଜୟ ହରି    ନୀଳାଦ୍ରି ବିହାରୀ
ଯେବେ କରେ ଅରି ଅନ୍ତ ବସି
ପାପମତ୍ତ କରୀ    କୋପ ଚଣ୍ଡ ଧରି
ମୋ ହୃଦ କମଳ ବନେ ପଶି
ଆହେ ବ୍ରହ୍ମରାଶି
ଧର୍ମକର୍ମ ସବୁ ଦିଏ ନାଶି ॥୧॥

କଳା ବଳୟକ    କମନୀୟ ମୁଖ
ଦେଖିଲେ ମୋ ଦୁଃଖ ହୁଏ ଦୂର
ସୁରଙ୍ଗ ଅଧର    ଦଶେ କି ସୁନ୍ଦର
ଧାତା ପୁରନ୍ଦର ଯା' କିଙ୍କର
ଆହେ 'କମ୍ବୁଧର
ଶମ୍ଭୁ ସେ ବଞ୍ଛନ୍ତି ଯା' ପୟର ॥୨॥

ପବିତ୍ର ଜାହ୍ନବୀ    ଯା'ପଦୁ ସମ୍ଭବ
ଜଗତକୁ କଲେ ପରିତ୍ରାଣ
ଗୌତମ ମହିଳା    ହୋଇଥିଲେ ଶିଳା
ମୁକ୍ତ ହେଲ ଲଗି ଶ୍ରୀଚରଣ
ଆହେ ନାରାୟଣ
ଭୟ କର ମୋର ନିବାରଣ ॥୩॥

ଜୟ ଦୀନବନ୍ଧୁ ଅଘଟମ ଇନ୍ଦୁ
ନାମ କୃପାସିନ୍ଧୁ ଅଛୁ ବନ୍ଧୁ
ଚଢେ ମୋତେ ଊଣା ନ କର କରୁଣା
ଦୀନ ରାଧାନାଥ ଗୀତେ କହୁ
ଆହେ ଭାବଗ୍ରାହୀ
ଜୀବ ଯାଉ ତବ ନାମ ଗାଇ ।।୪।।

**

**

# ନୀଳଚକ୍ରେ ଉଡୁଛି ବାନା

## ରସାନନ୍ଦ

(ଅଷ୍ଟାଦଶ ଶତାବ୍ଦୀ)

ନୀଳଚକ୍ରେ ଉଡୁଛି ବାନା
ଚଉ ଚଇତନ ହରି ଭଜନା
ଉଭରୁ ଉଜାଣି ବହୁଛି ତ୍ରିବେଣୀ
ମଧ୍ୟରେ ଗଙ୍ଗା ଯମୁନା
ଝଲଝଲ ଜ୍ୟୋତି ଶୂନ୍ୟେ ବିରାଜୁଛି
ସେ ରୂପ ଦେଖିଲେ ହେବୁ ଭେଟଣା ॥୧॥

ପାଣି ପଙ୍କ ନାହିଁ ଫୁଟିଅଛି କଇଁ
କରୁଚ ଦିବ୍ୟ ବାସନା
ଅଦ୍ଭୁତ ମୂରତି ଦୃଷ୍ଟିରେ ରହୁଛି
ଯେହ୍ନେ ବାରମାଢ଼ ଅଟଇ ସୁନା ॥୨॥

ଅଥଳ କୂଳରେ ଦେଉଳ ରହୁଛି
ଲହୁଡ଼ିକ ଟଳ ମଟଳ ସିନା
ପଣ୍ଡାନାହିଁ ଯହିଁ ଭୋଗ ପାଉଅଛି
ଶୂନ୍ୟରେ ବାଜୁଛି ଘଣ୍ଟ ବାଜଣା ॥୩॥

ଗଙ୍ଗା ସେ ଯମୁନା ସରସ୍ୱତୀଧାର
ବୁଡ଼େ ପାରିବାକୁ ହୋଇଛି ମନା
ଭଣେ ରସାନନ୍ଦ ନବଘନ ବୃନ୍ଦ
ହଜାଇ ଦେଉଛି ମୋହ ଚେତନା ॥୪॥

**

**

## ମଣିମା ଶୁଣ ମା ହେଉ

### ସ୍ୱପ୍ନାନନ୍ଦ

( ଅଷ୍ଟାଦଶ ଶତାବ୍ଦୀ )

[ତାଳ-ଏକତାଳ ଆଡ଼ଖେମଟା]

ମଣିମା ଶୁଣିବା ହେଉ ଗରିବ ଡାକ
ଅରକ୍ଷ ଜନକୁ ରଖ ପଙ୍କଜ ମୁଖ ।।ଘୋଷା।।

କୃପା ସାଗର କାହିଁକି ମୋ ବେଳକୁ ଗଲ ଶୁଖି
ଜାଣିଲ ମୋ କର୍ମ ବାଙ୍କ, ନୋହେ ଏଲକ୍ଷ ।।୧।।

ଆତଙ୍କ ନାଶନ ବାନା ନ ଶୁଣୁ ଭୃତ୍ୟ ବେଦନା
ଏବେ ହୋଇଯିବ ମନା କେ ଦେବ ଡାକ ।।୨।।

ଦାସ ଯେବେ ନାଶଯିବ କୀର୍ତ୍ତିରେ ଅକୀର୍ତ୍ତି ହେବ
କୀରତ ଚନ୍ଦ୍ରରେ ଲାଗିଯିବ କଳଙ୍କ ।।୩।।

କହେ ସ୍ୱପ୍ନାନନ୍ଦ ଛାର, ନାହିଁ ଅନ୍ୟ ପ୍ରତିକାର
ଏ ଦୀନ ଅବସ୍ଥା ମୋର ନେଣେ ନ ଦେଖ ।।୪।।

**

**

## କେହ୍ନ ସରିକି

### କବିସୂର୍ଯ୍ୟ ବଳଦେବ ରଥ

(ଊନବିଂଶ ଶତାବ୍ଦୀ)

କେହ୍ନ ସରିକ, ପ୍ରଭୁ ପଣେ ନୀଳାଦ୍ରି କେଶରୀ କି
ଯା' ଠାରେ ଯୁରନ୍ତି ଦୁଃଖିଜନ ଦସ୍ୟୁ
ନଖଠାରୁ ଶିଖା ସରିକ ||ପଦ||

କି କହିବା ଆଉ ତାଙ୍କ ଶ୍ରୀଚରଣ
ଅନୁସରଣ ସ୍ୱରୂପୀକି
ବଜାଉଛନ୍ତି ବିଭୀଷଣ ଆଗରେ
ଜଗତ ବିଜୟୀ ତୂରୀକି ||୧||

ସାନକୁ ବଡ଼ କରିବାରେ
ଉଡ଼ାଇ ଅଛନ୍ତି ଧ୍ୱଜ ମଣ୍ଡଳୀକି
ଦେଖ ନାଗ ନର ଗନ୍ଧର୍ବ କିନ୍ନର
ଉପରେ ଧ୍ରୁବ ନଗରୀକି ||୨||

କି କହିବ ତାଙ୍କ ପୀରତି କରିବା
କ୍ଷୀରତି ଚନ୍ଦ୍ର ମାଧୁରୀକି
ରଙ୍କ ବିପ୍ର ପାଦ ଧୂଆଇ ଯା' ଦେଲେ
ରମା କରେ ରନ୍ଧୁ ଝରିକି ||୩||

କ୍ଷମା ସାଗର ଯେ ତାହାଙ୍କୁ ଭଜିଲେ
କାଳ କିଂକରଙ୍କୁ ଡରିକି
ବୋଲେ କବିସୂର୍ଯ୍ୟ ଆନ ଉପାୟକୁ
ପେଲିଦିଅ ଗିରି ଦରୀକି ||୪||

**

**

# ପ୍ରାଣ ବାନ୍ଧବ ହେ

## କବିସୂର୍ଯ୍ୟ ବଳଦେବ ରଥ

(ଊନବିଂଶ ଶତାବ୍ଦୀ)

[ରାଗ-କାମୋଦୀ]

କମଳ ବାସିନୀ ପ୍ରାଣ ବାନ୍ଧବ ହେ
ଆର୍ତ୍ତତ୍ରାଣ କମନୀୟ କଳାମୁଖ ଚନ୍ଦ୍ର
କମ୍ବୁ ମଧ୍ୟପୁରୀ ନୀଳ ବସୁନ୍ଧରା ଧରା ଚୂଳ
ଗୁହାଗୃହ ବିହାରୀ ପାରନ୍ଦ୍ର
ହେ ମହାବାହୁ
କଉଣପ କୁଳ କ୍ଷୟ ଦକ୍ଷ
କୃପଣ କା ମିତ କଳ୍ପ ବୃକ୍ଷ
କହ୍ନୁ ନୋହ୍ବା କଦନ ସିନ୍ଧୁ ନିମଜ୍ଜନ ଜନ
କର୍ଣ୍ଣ ଧାରବର ରକ୍ଷ ରକ୍ଷ ହେ ॥୧॥

ଖଣ୍ଡ ପରଶୁ ଚନ୍ଦନ ମୁରଳୀ ସୁସାବଧାନ
ଖମଣି ମଣ୍ଡଳ ମଧ୍ୟ ବାସୀ
ଖଗାଧିପଧ୍ୱଜ ବ୍ରଜ ଖଞ୍ଜନ ନେତ୍ରାସମାଜ
ଚଞ୍ଚଳା କୌତୁକ ଅଭିଳାଷୀ
ହେ ମହାବାହୁ
କ୍ଷୀଣ ଜନଙ୍କର ଅନ୍ତଃସାର
ଖଣ୍ଡିତ ମେଦନୀ ଭସ୍ମ ଭାର
ଖରମୟୂଖର ପୁତ୍ର ଚରକର ବରପତ୍ର
ନିଦାରଣ ଦସ୍ୟୁକର ହେ ॥୨॥

ଗହନେ ଗର୍ଭିଣୀ ଏଣୀ ଗରିଷ୍ଠ ବିପଦ ପୁଣି
ଗୁହାର ଗର୍ଭକ ସ୍ମୃତ ଜଲ
ଗୋତ୍ର ଅମିନଙ୍କୁ ଫାରମାସିକା ମାତ୍ରକେ
ତାର କେତେବଡ଼ ଦର ଦୂର ହେଲା
ହେ ମହାବାହୁ
ଗୋପେ ଗୋବସ୍ତ୍ରା ଗୋପିକା ଗୋପ
ତ୍ରାସି ଦେଉଥିଲା ଶକ୍ର କୋପ
ଗୋବର୍ଦ୍ଧନ ଗିରିଛତ୍ର ଟେକିଛି କି ପଦ୍ମନେତ୍ର
ବହିଲ ସେ ଉପତାପ ଲେପ ହେ ॥୩॥

ଘନା ଘନଘଟା ଘୋର ନୃଶଂସ ହିରଣ୍ୟାସୁର
ବାଞ୍ଛି ନିଜ ତନୁଜର ବଧ
ଘମାକ୍ତ ତୀବ୍ର କୋପରେ ଘଟାଇଲା ତା' ଉପରେ
ବଜ୍ରାଧିକ ଅନେକ ଆୟୁଧ
ହେ ମହାବାହୁ
ଘେନ ନୃସିଂହ ଅବତାର
ଘାତ ମାତ୍ରକରେ ଜରଜର
ଘଟୀ ଅର୍ଦ୍ଧକରେ ଭକ୍ତ ପ୍ରହ୍ଲାଦର ଭୟ ମୁକ୍ତ
କଲ ପରା ତୁମ୍ଭେ ଚକ୍ରାୟୁଧ ହେ ॥୪॥

ନାଗନାଥକୁ ସଲଲେ ଚକ୍ର ଆକର୍ଷିଲ୍ କାଳେ
ଲକ୍ଷ୍ମୀ ଅକ୍ଷ ଖେଳେ ଥିଲେ ମାତ୍ର
ନିରେଖି ସାରକୁ ଭଲେ ନିମେଷ ମଧ୍ୟେ ଦେଖିଲେ
ନାଗାର ହେବାର ଖରଶ୍ୱାସୀ
ହେ ମହାବାହୁ
ନକ୍ର କାଣ୍ଡିନରୁ ଚକ୍ରଧାର
ନନ୍ଦୁଥିଲା ବନ୍ଧୁକ ପ୍ରକର
ନିଖିଳ ଲୋକେ ଏ ଯଶ ନାଚୁଛୁ ହେ ଜଗଦୀଶ
ନୋହିଁଲଟି କେଉଁ ଖ୍ୟାତ କର ହେ ॥୫॥

ଚତୁର୍ଦ୍ଦଶ ଲୋକ ଯେଉଁ, ଚନ୍ଦପଦ୍ମନ୍ଦମ ଗାଢ-
ଅଛନ୍ତି ଅଭ୍ୟସ୍ତ ପାଇ ନିତ
ଚକାନସ୍ୟନ ହେ ସେହୁ ଚନ୍ଦ୍ରକୁ ଶ୍ରୀକରେ ବହି
ଘୁଞ୍ଚୁଁ ଛ ତ ମୋହର ବିପତ୍ତି
ହେ ମହାବାହୁ
ଚରାଚରେ ଚନ୍ଦ୍ର ଅଛ ହେଲ
ଚକୋର କି ଚନ୍ଦ୍ର ନ ପାଇଲ
ଚିନ୍ତୁଛି ମୁଁ ଚିରନ୍ତନ ହେବାରୁ ତାର୍କ୍ଷ୍ୟକେତନ
ଚପଳ କି ଚିତ୍ତ ହୋଇଗଲ ହେ ।।୬।।

ଛଳପତ୍ତ ବେଶ ଧରି, ଛଦନ ଶାଳାରୁ ହରି
ନେଲ ଯେ ଦେବୀକୁ ସୁରମିନ୍ଦ
ଛେଦ ତାହାକୁ ମାର୍ଗଣେ, ଛୁଦ୍ର କୁହ୍ମା ବିଭୀଷଣେ
ଟେକାଇଲେ ଆପଣେତ ଛନ୍ଦ
ହେ ମହାବାହୁ
ଛାର ଦୁଃଖ କେତେ ଅବା ମୋର
ଛିନ୍ନାନାଥ ତୁମ୍ଭେ ସେ ଅନ୍ଧାର
ଛଦ୍ମେ ବଳି ଦ୍ୱାର ଖର୍ବ ଦ୍ୱିଜେନ୍ଦ୍ର ବେଶେ ତା ପର୍ବ
ଛଡ଼ାଇଲ ପରମଈଶ୍ୱର ହେ ।।୭।।

ଜଗତେ ଜାଣନ୍ତି ଜନ, ଯାହା କଲ ଦୁଃଶାସନ
ଦ୍ରୁପଦ ଜେମାକୁ ସଭାତଳେ
ଜଳଜ ଚରଣେ ସ୍ତୁତି କଲି ବାରୁ ମହାସତୀ
ପ୍ରତିଷ୍ଠା ତୁଟିଲ ନାହିଁ ତଳେ
ହେ ମହାବାହୁ
ଜମା ହୋଇଥିଲେ ଯେତେ ଜନ
ଜଣେ ଦେଖିନାହିଁ ଅପଘନ
ଜନ୍ମିବେ ଜଗଦ୍ଗୁରୁ ଜଠର ପୂରିଲ ଭସ୍ମ
ନିବାରଣ ଜଳଧି ଶୟନ ହେ ।।୮।।

ଝନ୍ତ୍ରାନଲେ ଝାଡ଼ଦାଲ ଜଡ଼ିଗଲାପରି ଜଲ
ଝରିଗଲା ପରି ଫଣା ଘଣ୍ଟ
ଝାଙ୍କି ମନସ୍ତାପ ଭସ୍ମ ଅମଲେ ମୋ ଆୟୁ କ୍ଷୟ
ହୋଇଲାଣି ଧୀନ ଦସ୍ଯୁପଣ୍ଟ
ହେ ମହାବାହୁ
ଝଣ୍ଡ ମୋ ଅଭିଲାଷ ପୁର
ଝିମିତି ହେଲାଣି ମନ୍ୱନ୍ତର
ଝାଣ୍ଡି ତପ୍ତ ଅଲକ୍ତ ଜଲ ଜମ୍ବାଲ ବଣୁଁ ବ୍ୟାକୁଳ
ଝଷଦଶା ହୋଇଲା ମୋହର ହେ ॥୯॥

ନ ଗା ନାମେ ନୃପବର ନରେନ୍ଦ୍ର ନନ୍ଦଙ୍କି ଟେ-
କାନ୍ତ ହୋଇଥିଲେ କୁକ ସରି
ନବୀନ ନୀରଦ ନନ୍ଦା ନବ ରତନ ବସନ୍ଧା
ଶ୍ରୀହସ୍ତେ ତାହାଙ୍କ କର ଧରି
ହେ ମହାବାହୁ
ନେଇଯିବା କାଳେ ଭୁଲେ ଭୁଲେ
ନରେଖି ତାହାଙ୍କ ତେଜ ଭଲେ
ନାକ ନତମ୍ବିନୀମାନେ, ନନ୍ଦନବନ ପ୍ରସୂନେ
ନଢନଢ ଉପହାର ଦେଲେ ହେ ॥୧୦॥

ଟେକଛୁ ଅଦ୍ୟାପି ପୀନ, ବାହୁଯୁଗଲ ଧୀନ-
ଜନରେ ଗ୍ରସ୍ଥା ଦେବାକୁ ଚଞ୍ଚ
ଟାକ ରହିଛୁ ମୁଁ ସେହି, ବାହୁବୃନ୍ଦାରକ ମହୀ-
ରୁହ ଅନାତପକୁଟି ନଢ
ହେ ମହାବାହୁ
ଟିକଏ କରୁଣା ଜାତ ହେଉ
ଟୋପାଏ ତହୁଁ ଏ ଟେକା ପାଉ
ଟାଳଦେଲେ ଭବତ୍ରାସୀ, ଦୁର୍ଗତ ଦୁଃଖକୁ ସ୍ବର୍ଦ୍ଧି
ଟମକ ପିଷ୍ଟପେ ବାଜଯାଉ ହେ ॥୧୧॥

ଠଣାଦାରପଣ କାଳ, କରରେ ଧରି କରାଳ
ଦଣ୍ଡ ଜଗି ରହିଅଛ୍ଛ ଠଣା
ଠିକମାର୍ଗ ପରିହରି, ଠକ ଆଚରଣ କରି
ବଞ୍ଚିବା ଜନ୍ତୁର କି ଠିକଣା
ହେ ମହାବାହୁ
ଠଉରିଥିବାରୁ ଏ ଜଗତେ
ଠଉରାଇ ଗତି ହସ୍ତାହସ୍ତେ
ଠାକୁରମାନଙ୍କ ମଥାମଣି ହେ ମୁଁ କେଉଁ କଥା
କରିବି ବିସ୍ତର ହବ୍ୟ ଚଢ଼େ ହେ ॥୧୨॥

ଡାକ ଗଉରବେ ଆଣି ବନ୍ଦମାନ୍ଦ୍ଧ ଜନ ପାଣି
ପଦ୍ମେ ଦେଉନାହିଁ ବରାଟକା
ଡ଼ୁବାଇ ନାହିଁ ମସ୍ତକ, ମନ୍ଦାକିନୀ ହୃଦୋଦକ
ପୁରେ ପଶି ହରି ହରି ଡାକ
ହେ ମହାବାହୁ
ଡରୁଛ୍ଛ ଯେ ଗ୍ରୁମୁରେ ଡୁମ୍ବର
ଡାକୁଅଛ୍ଛ ଆହେ ବିଶ୍ୱମ୍ଭର
ଡ଼ିମ୍ବର ଦୋଷକଳାପ ତୁମ୍ଭେ ପରା ବାପ ମାଙ୍ଗ
ନ ଜଳେ କି କରିବ ଇତର ହେ ॥୧୩॥

ଢାଳ କରୁଣା ପୀୟୂଷ, ଅଶେଷ ଦୋଷୀଙ୍କ ଦୋଷ
ନାଶିବାରୁ ସିନା ବାରମ୍ବାର
ଢକ୍କା ବାଜୁଛ୍ଛ ସଂସାର ମଧ୍ୟ ଏହି ଅନୁସାର
ସକାଶୁଁ ମୁଁ କରୁଛ୍ଛ ବ୍ୟାପାର
ହେ ମହାବାହୁ
ଢାଳେ ଛିଦ୍ର ଅନାଇ ନ ଗ୍ଳଲ
ଢମ କରୁଅଛ୍ଛ ଗ୍ରୁଢ ଠେଲ
ଢାଙ୍କି ରହିଥିବା ଯୋର, ଦାବାଗ୍ନିକ ନାଥ ମୋର
ଢୋକ ଦେବ ଅନାୟାସେ ବୋଲ ହେ ॥୧୪॥

ଅପରମିତ ମହିମ ଅଘବିଧ୍ୱଂସନ ନାମ
ଅତ୍ୟନ୍ତ ପ୍ରବଳ ହେଲେ ହେଲେ
ଅପରାଧ ହେବା ଡ଼ରେ ଅଘରେ ଆତଙ୍କ ନରେ
ଆସକ୍ତ ନୋହିବେ ଜାଣେ ଭଲେ
ହେ ମହାବାହୁ
ଅଣୁଏ ଆସ୍ପୃହ ନାହିଁ ମୋର
ଆଚରୁଛୁ ପାତକୀ ପ୍ରକାର
ଆପଣ ହୃଦେ ନିବାସ, କର ଯେଉଁ ଫରମାସ
କରୁଛୁ ତା କରୁଛୁ କିଙ୍କର ହୋ ॥୧୫॥

ତାରିବାକୁ ମାରିବାକୁ ତାପାଇଁ ନିବାରିବାକୁ
ତୁମ୍ଭତୁଲ୍ୟ ପ୍ରଭୁ ଆଉ ନାହିଁ
ତପସ୍ୟା ଗିରିତଳେ ତପୋଧନମାନେ ଢଳେ
ତବତତ୍ତ୍ୱ ଜାଣନ୍ତି ବା ନାହିଁ
ହେ ମହାବାହୁ
ତର୍କି ନ ପାରିବାରୁ ବିଭୂତି
ତସ୍କର ବନିଲେ ପ୍ରଜାପତି
ତନୁରୁ ତର୍ଣ୍ଣକ ଶିଶୁ, ତକ୍ଷଣେ ହେବା ସକାଶୁଁ
ତଳେ ଲୁଠି ଲଜେ କଲେ ସ୍ତୁତି ହେ ॥୧୬॥

ଥିବାରୁ ମସ୍ତକେ ଶଶି, ପର ହେ ବୈକୁଣ୍ଠ କଶୀ
ରବ ତବ ପ୍ରଭାବ ମୋ ମନେ
ଥୁଆ ଧନ ସିନା ଭୋଗ କର ହରିବ ଉଦ୍‌ବେଗ
ବୋଲି ଭାବୁ ଭାବୁ ଅନୁଦିନ
ହେ ମହାବାହୁ
ଥାଏ ମୋ ଭରସା ମେରୁପର
ଥାପିରେ ଧଇର୍ଯ୍ୟ ଥାଏ ପୂର
ଥରୁଅଛୁ ଏବେ ଭୟଭରେ ଅନୁକମ୍ପାମୟ
ନୟନାନ୍ତ ଛଟା ଦିଅଠାରି ହେ ॥୧୭॥

ଦିନେ ଦସ୍ୟୁାକ୍ରାନ୍ତା ବାଳା ଦୃଶ୍ୟ କରାଇଲେ ଦୀନା
ଦୀନବନ୍ଧୁ ନାମକୁ ତୁମ୍ଭର
ଦୁଷ୍ଟ ଦୁଃଖ ଦନ୍ଦଶୂକ-ଦଷ୍ଟ ହୃଦନ୍ତର ଲୋକ
ରକ୍ଷା ଜାଙ୍ଗଳିକ ପୁରନ୍ଦର
ହେ ମହାବାହୁ
ଦରିଦ୍ରକୁ ଦାନ ଦେବା ଯଶ
ଦିଗନ୍ତକୁ କରଇ ଅଶ୍ଳେଷ
ଦଇବେ ଦ୍ରବିଣବନ୍ତ ଜନେ କଲେ ବଡ଼ ଦଉ ହେ
ଦାତାର କି ହେବ ପରିତୁଷ ॥୧୮॥

ଧରିଥିଲେ ତରୁ ରୂପ, ଧାତାପୁତ୍ର ମୁନିଶାପ,
ବଶୁଁ ଧନାଧିନାଥଙ୍କ ସୁତେ
ଧରାଇଲ ଦିବ୍ୟତନୁ, ଧ୍ରୁବକୁ ବାଳକ ଦିନୁଁ
ଦିବ୍ୟ ଧାମ ଦେଲ ଏ ଜଗତେ
ହେ ମହାବାହୁ
ଧଡ଼ ଶେଷୁ ସମର୍ପି ନିଜର
ଧନୀ ହେଲେ ସୁଦାମା ଭୂସୁର
ଧବଳ କରିଛୁ ଏଣୁ, ଯଶ ବ୍ୟୋମେ ତୁଲେ ମହୀ
ଧର୍ମ ଧାରାବନ୍ତ ଧୁରନ୍ଧର ହେ ॥୧୯॥

ନିରର୍ଗଳ ଅଧିକାର, ନିତ୍ୟ ନିଳୟ ଯାହାର
ନାଥଙ୍କର ନାଥ ଶୁଣିଅଛୁ
ନିସ୍ତାରଣ ହୋଇ ତାର, ନରଦେହ ବହିବାର
ନାଶଗଲା ବୋଲାଇଣ ଛୁ ଛୁ
ହେ ମହାବାହୁ
ନ ନଗୃଇ ଏହା ଜନମୁଖ
ନିଯୋଜନା କର ମୋର ସୁଖ
ନଳିନେ ଉଲ୍ଲାସ ଶିରୀ ନିଧାନ ଉଟଲ ପରି
ନବୋଦିତ ମିହିର ମୟୂଖ ହେ ॥୨୦॥

ପ୍ରପନ୍ନ ହୋଇ ମୁଁ ବାରେ ପଦପଙ୍କେ ଲୁହନ୍ତଲେ
ପଡ଼ୁ ପଡ଼ୁ ପେଲିଦେବା ନୋହୁ
ପଡ଼ିବ ସିନା ତୁମ୍ଭର ଗର୍ବେ ଦେଇ କରଭର
ପଦାରେତ ସ୍ଥଳ ନାହିଁ ଆଉ
ହେ ମହାବାହୁ
ପରମ ସୌଭାଗ୍ୟ ମୋର ଏକା
ପର ପରମାଣୁ ନାହିଁ ଦକା
ପଭୂର୍ଣ୍ଣକୁ ମାଧକ ପ୍ରପଞ୍ଚ ମଣ୍ଡଳଯାକ
ଜନ୍ଦାହେବ ବୋଲି କରେ ଡକା ହେ ॥୨୧॥

ଫନ୍ଦା କରି ଆପଣଙ୍କୁ, ଫଳ ଲଭ ବିନା ରଙ୍କୁ
ବଳିଲଣି ଆଚରଣେ ସିନା
ଫେଡ଼ି ଏ ମାନସ କଥା, କା ଆଗେ କହିବି ବ୍ୟଥା
ଫେଡ଼ିନେବ ଆଉ ତୁମ୍ଭ ବିନା
ହେ ମହାବାହୁ
ଫାଟିଅଛୁ ଯେବେ ମୋ କରମ
ଫନ୍ଦାଇବାକୁ ଆପଣ କ୍ଷମ
ଫୁଟିଥିଲ ପଦ୍ମଣ୍ଡକେ, ଯେଉଁ କୁବ୍ଜା ଏହି ଲୋକେ,
ନ କଲ କି ତାକୁ ରମ୍ଭା ସମ ହେ ॥୨୨॥

ବଳମ୍ବେ ସହିବା ପୀଡ଼ା, ହେଲେହେଁ ବରହ ଚୂଡ଼ା-
ବତଂସ ମୁଁ ବଳାଆଇଁ ଏତେ
ବରକତ କଣ ଅଛ, ବଞ୍ଚାପନ, ନ କରନ୍ତ,
ବାଧା ବଳ ପଡ଼ିଲଣି ମୋତେ
ହେ ମହାବାହୁ
ବଳିଷ୍ଠ ବାହୁଯୁଗଳ ତଳେ
ବେଗେ ମୋତେ ଗ୍ରସ୍ତାଦଅ ବେଳେ,
ବଳଦେବ ବଳାହୁତା ବରଜ ହେ ସିନ୍ଧୁସୁତା
ବର ବନ୍ଦେ ଅମନ୍ଦ ବଳଲେ ହେ ॥୨୩॥

ଭୟାନକ ଭବ ଅନ୍ଧ ମୁଖେ ପଡ଼ିଛନ୍ତି ମୁହିଁ
ଭବ୍ୟ କଥା ଲୋଡ଼ିଲେ କେ ଦେବ
ଭରଜିଲେ ଭଲେ ଏହା ତୁମରୁ ହେ ସମାନାହା
ଭଲ ଲୋଡ଼େ ନ ଲୋଡ଼େ ମାଧବ
ହେ ମହାବାହୁ
ଭରସା ଏତକ ଥାଏ ମୋର
ଭକ୍ତିୀ ଯେଣୁ ତୁମ୍ଭେ ବଳଆର
ଭୂରୁଭଙ୍ଗ ମାତ୍ରକରେ, ଭସାଇଲ ରତ୍ନାକରେ
ମହୋନ୍ନତ ବହୁତ ଭୂଧର ହେ ॥୨୪॥

ମହାମହିମା ହେ ମଣି, ମଉଳ ଗର୍ଭିକମଣି
ମହୋନ୍ନତ ମହୀଧର ସିନା
ମନାସି ତୁମ୍ଭର ଯଶ, ପଙ୍ଗୁ ଲଙ୍ଘିଛୁ ନମିଷ
ମାତ୍ରକେ ତାହାକୁ ଶ୍ରମ ବିନା
ହେ ମହାବାହୁ
ମଢ଼ିଥିବା ଜଗମକୁ ଗୁଣି
ମଲ ଗୁରୁତନୟଙ୍କୁ ଆଣି
ମହରିଦ ଲୋକେ ଦର, ମଲ୍ଲୀମାଳା ମନୋହର
କୀର୍ତ୍ତିରେ ମଣ୍ଡିଲ ଯଦୁମଣି ହେ ॥୨୫॥

ଯମଙ୍କ କଙ୍କରେ ମନ୍ତ୍ର, ମନ୍ତ୍ର ହେବା ଯେଉଁ ଯନ୍ତ୍ର-
ମାନଙ୍କୁ ଯାତନ ଦେଉଥାନ୍ତି
ଯାଗଭାଗ ଭୁଞ୍ଜିବାକୁ, ଯୋଗ୍ୟ କରିଅ ତାହାଙ୍କୁ,
ଯଶୋଦାଙ୍କ ଯବିଷ୍ଟ ସନ୍ତତି
ହେ ମହାବାହୁ
ଯଦୃଚ୍ଛା ବିଳାସ ବିଚକ୍ଷଣ
ଯତ୍ନକଲେ ନମିଳ ଆପଣ
ଯାବତ ଘଟରେ ବନ୍ଧ-ରନ୍ଧ୍ରରେ ସନ୍ତତ ରହି
କରୁଛ କି ଇଚ୍ଛା ତୁମ୍ଭେ ଜାଣ ହେ ॥୨୬॥

ରତ୍ନାକର ଯା ମନ୍ଦିର, ରମା ରମଣୀ ଯାହାର
ଯାହାର କୌସ୍ତୁଭ ମଣିବର
ରଥ ସୁନ୍ଦରବନତାର, ରଥଚରଣ ହତ୍ୟାର
ରୁଦ୍ରଦେବ ପଦ୍ମ ପରିବାର
ହେ ମହାବାହୁ
ରସା ଚରମରେ ପଡ଼ି ପଡ଼ି,
ରହିଛୁ ସନ୍ତତ କରଯୋଡ଼ି
ରଙ୍କ ଗୁହାରି-ଖରଗ୍ରୀ, ରତ୍ନକୁଣ୍ଡଳଆ ଶ୍ରୂତି
ରନ୍ଧ୍ର ପାଶେ ଅରେ ଯାଉ ପଡ଼ି ହେ ॥୨୭॥

ଲଗି ଝାଲେ ଏ ମକର, କୁଣ୍ଡଳ ଯୁଗଳ ମୋର
ଦୁଃଖ ଜଣାଇବେ ବୋଲି ଚନ୍ତ
ଲଗାଇ ରସାରେ ଶିର, ଲକ୍ଷ ଲକ୍ଷ ନମସ୍କାର
ଲକ୍ଷ୍ମଦେଇ କରୁଥାଏ ସ୍ତୁତ
ହେ ମହାବାହୁ
ଲବ୍ଧ ହୋଇ ଏତେ ଶିନ୍ନଗଣ
ଲଗିଲେ କାହିଁକି ମୋର ଋଣ
ଲଭି ଶ୍ରୂତି ପାଶେ ଘର, ଲଗଡ଼ କି ଲମ୍ପଟସାର
ଲୋକରେ ଲୁଳିତ ଲୁବ୍ଧଗୁଣ ହେ ॥୨୮ ॥

ବଡ଼ ମୃଦୁଳ ଏ ବନମାଳା ବୋଲି ପ୍ରତିଦିନ
ବନ୍ଧୀ କରୁଥାଏ ବାଲ୍ମପନ
ବିଶେଷ ତାହାଙ୍କ ସଙ୍ଗ, କରି ଆସୁଥିବା ଭୃଙ୍ଗ
ପଛେ ଗୋଡ଼ାଇବାକୁ ମୋ ମନ
ହେ ମହାବାହୁ
ବରଜ ବନିକା ଯାକ, ବୁଲି
ବୁଝୁଥାଏଁ ଦେଖି ପ୍ରତି ବଲ୍ଲୀ
ବଇଜୟନ୍ତୀ ବଲ୍ଲିଗ୍ରୀ, ବକ୍ଷରେ ଯେ ଥିଲେ ଶିଗ୍ରୀ
ଭୁମୁରେ କି ପଡ଼ିଥିଲ ବୋଲି ହେ ॥୨୯॥

ଶର୍ବ ବେଲକୁ ବଳ, ଅଦ୍ୟାପି ନାହାନ୍ତ କଳ
କାଳେହେଁ ନତ୍ୟ ମୁଁ ଲଭ ରତ
ଶଶି କୁରଙ୍ଗକୁ ଶେଷ, ଧର୍ବକୁ ଶଙ୍କର ବଷ
କଳଙ୍କ ପର୍ଯ୍ୟେ ବହୁଛନ୍ତ
ହେ ମହାବାହୁ
ଶରଣ ବୋଲବା ଡାକପଣେ
ଶରଣାର୍ଥୀ ଜନ ତତେ ଜଣେ
ଶତ୍ରୁ ହେଲେ ସେ ମୋହର ବୋଲି ତ ହୁକୁମ କର
ପ୍ରତପାଳୁ ନାହିଁ ଏବେ କେଣେ ହେ ।।୩୦।।

ଷୋଡ଼ଶ ସହସ୍ର ବ୍ରଜ ସରୋରୁହାକ୍ଷୀ-ସମାଜ
ଯେନ ସୁରସୁତା ତାର କୁଞ୍ଜେ
ଷଡ଼ାସ୍ୟଜନକାହୃତ ସଙ୍ଗର ପ୍ରସଙ୍ଗେମଣ୍ଡ
ହୋଇ ପ୍ରଫୁଲ୍ଲିତ ପୁଷ୍ପ କୁଞ୍ଜେ
ହେ ମହାବାହୁ
ଷଡ଼ଙ୍ଘ୍ରି ରଚଲି ପର କେଳ
ଷଡ଼ାହୃତ ନରସନ ଶାଳୀ
ଷଡ଼ଅଙ୍ଗୀ ଶ୍ରୁତମାନେ, ସ୍ତୁତ କଲେ ଅବସାନେ
ନ ଲଭିଲ ପାଦ ଧୂଳି ହେ ।।୩୧।।

ସବୁ ସଂସାର ସଦନୁ, ସମସ୍ତ ଜନ ବଦନୁ
ଶୁଣିଅଛୁ ସତ ଅବା ମିଛ
ସହସ୍ର ସଂଖ୍ୟକ ଅପ-ରାଧ କଲେ ହେଲେ ମାଫ
କର ପ୍ରସନ୍ନକୁ ରଖି ଅଛ
ହେ ମହାବାହୁ
ସେ ସକାଶୁଁ ମୋର ଏ ସାହସ
ସଙ୍କୋଚକୁ ମନେ ନାହିଁ ବାସ
ସରଳ ସକଳ ସୁର, ସାମନ୍ତ ମାନଙ୍କ ସାର
ସରକ ସେବକ ସମୁଲ୍ଲାସ ହେ ।।୩୨।।

ହରହସ୍ତ ବଲ୍ଲଭକ, ହଂସରଥାଧିକୃତକ
ହଟି ରଚ୍ଚ ନାହିଁ ମୁଁ ସମ୍ମୁଖେ
ହର୍ମ୍ୟତଳେ ଥିବାଯାକେ, ହାସ୍ୟାସ୍ପଦ ନୋହୁ ଲୋକେ
ହରନେବ କାଲ କ ମୁଖେ
ହେ ମହାବାହୁ
ହଇଗଣ ନୋହୁ କ୍ଲେଶକାଳେ
ହରେ ହରେ ବୋଲି ଅନ୍ତଃକାଳେ
ହସି ହସି ଯିବ ହରଦଣ୍ଡସୁତଙ୍କ ନଗରୀ
ସୀମା ନ ଦେଖିବ ଭୋଳେ ହେ ।୩୩॥

କ୍ଷିତକ ବହୁବା ଅହୁ, କ୍ଷମ ନୋହୁବାରୁ କହୁ
ନପାରନ୍ତ ଯାହାଙ୍କ ପୁରତେ
କ୍ଷମା ପୀୟୂଷ ସମୁଦ୍ର, ହେବାରୁ ମୁଁ ଅତ କ୍ଷୁଦ୍ର
ଶ୍ରୀଗୁରୁମୁରେ ଜଣାଇଲି ଏତେ
ହେ ମହାବାହୁ
କ୍ଷମ ଅପରାଧ ଏତ ନୁହେ
କ୍ଷମାଧିପବାନାଧିବାସ ହେ
କ୍ଷମା କର ଆଜ୍ଞା ହେବ, କ୍ଷିତସୁର ବଳଦେବ
କବରବ ରାମ୍ଭୁରୁ କହେ ହେ ॥୩୪॥
**

❋✳

# ବାଧିଲୁ ଜାଣି କ୍ଷମା

## କବିସୂର୍ଯ୍ୟ ବଳଦେବରଥ

(ଊନବିଂଶ ଶତାବ୍ଦୀ)

[ରାଗ-କାମୋଦୀ]

ବାଧିଲୁ ଜାଣି କ୍ଷମା କର ନୋହିଲେ ରମା-
ରମଣ ଦଣ୍ଡ ଦିଅ ଟାଳି
ତୁମ୍ଭଙ୍କୁ ଜଗନ୍ନାଥ ! ଆଜ ମୋ ମନୋରଥ
ଭରତ ବଳଦେବ ଗାଳି
ହେ କୃପାନିଧି !
କରୁଣା ସିନ୍ଧୁ ବୋଲି କରି
କହନ୍ତି ବୁଧେ ଡରି ମରି
କାଳସର୍ପ ଆପଣ କବଳ କରି ପ୍ରାଣ
ପବନମାନଙ୍କୁ ସବୁରି ହେ ॥୧॥

ଜଳଧି ଅନ୍ତେ ନିଜ ଘର ଦେବାଧିରାଜ
ବୁଡ଼ାଇ ଦେଇଛ ଆପଣ
ତୁମ୍ଭର ସିନା ଯେବେ ଆଶ୍ଚର୍ଯ୍ୟ ନୋହେ ଆନ
ଜନର ଘରବୁଡ଼ା ପଣ
ହେ କୃପାନିଧି
ଭୁଜଙ୍ଗ ସାମ୍ୟ ଆମ୍ଭ ତୁଲେ
ବଢାଅ ବୋଲି ଆଜ୍ଞା ହେଲେ
ମୁଁ ନୁହେଁ ଘରବୁଡ଼ା ବଢାଇବାକୁ ଛୁଡ଼ା
ହୋଇଛୁ ବଢାଇବ ଭଲେ ହେ ॥୨॥

ତାହାକୁ ବୋଲି ଚକ୍ରୀ ଚକ୍ର ଥିବାରୁ ଚକ୍ରୀ
ତୁମେତ ବୋଲାଅ ମଣ୍ଡଳେ
ବେଷ୍ଟରେ କୁଣ୍ଡଳୀ ସେ ଆପଣ ତ ବିଶେଷେ
ଭୂଷିତ ମକର କୁଣ୍ଡଳେ
ହେ କୃପାନିଧି
ଅଦୃଶ୍ୟ ହେବାରୁ ତା ପାଦ
ତାହାକୁ ବୋଲି ଗୂଢ଼ପଦ
ଆପଣା ଚରଣ ତ ବିରଞ୍ଚିକ ଗୁପତ
କାହିଁ ତା' ଠାରୁ ତୁମ୍ଭ ଭେଦ ହେ ।।୩।।

ହେବ ବା ଅବଧାନେ ତାହାକୁ ତ୍ରିଭୁବନେ
ବୋଲନ୍ତି କାକୋଦର ନରେ
ଏ ତ୍ରିପିଷ୍ଟପ ଯାକ ମଧ୍ୟେ ଗୋଟିଏ କାକ
ନାହିଁକ ତୁମ୍ଭର ଉଦରେ
ହେ କୃପାନିଧି
ବିବରେ ସେ ଅଛି ଲମ୍ପଟ
ବିବର ବିହଙ୍ଗମ ସ୍ପଷ୍ଟ
ଅଧରେ ସେ ଲମ୍ପଟ, ଆପଣ ସେତ ପଟ-
ପଟଳେ ହୋଇ ଅଛ ସ୍ଫୁଟ ହେ ।।୪।।

ଜାନ ନ ଆଇ ଆଖି ଭୁଜଙ୍ଗଠାରେ ଦେଖି
ନୟନଶ୍ରବା ବୋଲି ତାକୁ
କହ କମଳାନନ ! କାହିଁଛୁ ତୁମ୍ଭ କାନ
ସର୍ପ ବୋଇଲେ ଚଳିବାକୁ
ହେ କୃପାନିଧି
ଫଣୀ କାୟାକୁ ବୋଲି ଭୋଗ
ଥିବାରୁ ସେ ଦୁଇ ସଂଯୋଗ
ତାହାକୁ ବୋଲି ଭୋଗୀ, ତୁମ୍ଭେ କ ନୁହ ଭୋଗୀ
କରୁଥା' ଅଛ ମହାଭୋଗ ହେ ।।୫।।

ଯେବେ ଭୁଜଙ୍ଗ ନୁହଁ କାଳୀୟଠାରେ ଦ୍ରୋହ
                    ଜଳ କାହିଁକ ଏତେ କର
କେତେ ନ ଥିଲେ ଗୋପେ ତୁମ୍ଭେ କାହିଁକ କୋପେ
                    ତାହାକୁ ଦେଲ ପ୍ରାଣେ ମାର
          ହେ କୃପାନିଧି
     ତାହାର ନାମେ ତୁମ୍ଭ ନାମ
     ଅଦ୍ୟାପି ହୋଇଛୁ ଜନମ
ଯେବେ ସୁଯୋଗ ଦୋଷ ନଥାନ୍ତା ନାଥ କହ
                    କମାଇ ହୁଅନ୍ତା ଏ ଜମ ହେ ॥୬॥

ଜାଣିବାକୁତ କାନ୍ତ ଲବଣୀ ହାଣ୍ଡି ତନ୍ତୁ
                    ଧର ପାଶରେ ବୃତେ ଭିଡ଼ି
ଦୟା ନ କର ତଳେ ଯାମଳା ତରୁ ତଳେ
                    ଜନନୀ ନେଇ ଦେଲେ ଗୁଡ଼ି
          ହେ କୃପାନିଧି
     ଯେତେକ ଥିଲା ଗର୍ବେ ପଡ଼ି
     ଜୀର୍ଣ୍ଣ ହେବାକୁ ହେଲ ଭିଡ଼ି
ତିନି ଜଗତ ଯାକେ ଜାଣିତ ଥିବେ ଲୋକେ
                    ସେ ତରୁ ଯିବାର ଉପୁଡ଼ି ହେ ॥୭॥

ବ୍ରହ୍ମା ଶଙ୍କର ମୁଖ୍ୟ ଦେବଙ୍କଠାରୁ ମୋକ୍ଷ
                    ପ୍ରଧାନ ଧନ ଗୁଡ଼ି କଲ
ପଡ଼ତକୁ ନ ପୋଷି ବାରୁ ଜମରେ ଆଣି-
                         ବଷ ପର୍ବ୍ୟେ ଆସ୍ତ୍ରିସିଲ
          ହେ କୃପାନିଧି
     ଅସାବଧାନେ ଗଲେ ମିଳି
     ଗୋଟିକୁ ଗିଳଇ କୁଣ୍ଡଳୀ
ଅଗଣିତ ବ୍ରହ୍ମାଣ୍ଡ ହାଣ୍ଡି ମଣ୍ଡଳୀ ରୁଣ୍ଡ
                    କର ଆପଣ ଅଛ ଗିଳି ହେ ॥୮॥

ଅଁଦ୍ୱୈତ ବୋଲିଏ ସେ ଏକ ଅକ୍ଷର କୋଷେ
ଅଦ୍ୱୈତ ବୋଲାଅ ନିପୁଣ,
କଂସ ପ୍ରମୁଖାସୁର ବିପକ୍ଷମାନଙ୍କର
ଅଦ୍ୱୈତ ହୋଇଛ ଆପଣ
ହେ କୃପାନିଧି,
ଜଗତେ ଧରି ଯେବେ ଅଦ୍ୱୈ
ଘଟ ଗୋଟିକେ ନେଇ ଥୋଇ
ଅଛ ଯାବତ ଘଟେ ବଞ୍ଚାଅ ଯେ କପଟେ
ମୋର ହାବୁଡ଼ୁ ଯିବ କାହିଁ ହେ ॥୯॥

କେଉଁ ଶିଶୁ କାମିନୀ ସ୍ତନ୍ୟ ପାନରୁ ଯେଣ
ଜୀବନ ଯାଇଛୁ ଜଗତେ,
ଶୋଷି ପୂତନା ପ୍ରାଣ ଯେଣିବାର ଜୀବନ
ନାହିଁକି ତୁମ୍ଭ ଦ୍ରବ୍ୟ ଚତ୍ୱେ ?
ହେ କୃପାନିଧି,
ସଜଳ କଥା ମୋର ଦେଖି
ଅଛନ୍ତି ଲକ୍ଷ ଲକ୍ଷ ସାକ୍ଷୀ,
ବ୍ରଜେ ଭୁଜଙ୍ଗ ଗୁଳି କରି ମୁଁ ନାହିଁ ବୋଲି
ଲୁଅଁ ତ ଥରେ ଚକା ଆଖି ହେ ॥୧୦॥

ନୁହେଁ ଆବାସ ଘର ମାନସ ସରୋବର
ଶୁଭିଲା ନାଗେଶ୍ୱର ରବ,
କ୍ଷଣେ ନ ରହି ଧାଇଁ ଗଲଟି କାହିଁ ପାଇଁ
ଆଉ ନ ଥିଲେ କେତେଦେବ
ହେ କୃପାନିଧି
ମନ୍ତ୍ର ଜାଣିବା ଲୋକେକେବଣ
ହୁଅନ୍ତି ସବୁ ଆଶୀବିଷ
ମନ୍ତ୍ରାଧୀନ ତ ତୁମ୍ଭେ ବଞ୍ଚାଉ ଅଛ ଦମ୍ଭେ
ଭୁଜଙ୍ଗ ନୁହଁ ଆଉ କିସ ହେ ॥୧୧॥

କହଇ କବିସୂର୍ଯ୍ୟ ନାଥ ତୁହିଁ ଅଧୈର୍ଯ୍ୟ
ଏଣିକି ମହତ ନ ଯାଉ,
ମୁଁ ତୁମ୍ଭ ପଣସ୍ଥିର ଜାଣିଲେ କି ବିସ୍ଥିର
ଇତରେ ନ ଜାଣନ୍ତୁ ଆଉ,
ହେ କୃପାନିଧି
ଯେତେବେଳେ ମୋ ଅନ୍ତ ହେବ
ଏତିକି ମାଗି ମୋତେ ଦେବ
ପରେତରାଟ ଦ୍ୱାର ସୀମାରୁ ପରିହାର
କରାଇ ଯହିଁ ତହିଁ ନେବ ହେ ॥୧୨॥

**

**

## କ୍ଷୀରମଧ୍ୟସିନ୍ଧୁ

### କବିସୂର୍ଯ୍ୟ ବଳଦେବ ରଥ

(ଊନବିଂଶ ଶତାବ୍ଦୀ)

[ ରାଗ-କାମ ବର୍ଦ୍ଧନୀ ]

କ୍ଷୀର ମଧ୍ୟ ସିନ୍ଧୁ-ଜେମା ଜୀବ ବନ୍ଧୁ ତୁମ୍ଭେ ତ ଜଗତପତି
ଟେକି ସମଦୃଷ୍ଟି ପତାକାକୁ ପୁଣି ଏ କି ପକ୍ଷପାତ ରୀତି ?
ହେ ମହାପ୍ରଭୁ
କେ କି କଲା ମୁଁ ନ କଲି
କେ କି ଦେଲା ଅବା ମୁଁ ଅବା ନ ଦେବା
ଦେନା ଏତେ ହଶ ହେଲି ହେ ॥୧॥

ମୃଗମୁଣ୍ଡବତୀକି ରଖିଲ ଯେ ନାଶି ମୃଗମୁଣ୍ଡ-ବିଦ୍ୱେଷ-ଦାଉ
ଚରଣ ପଙ୍କଜ ସ୍ମରଣ ବିନା ସେ କିସ କରିଥିଲା ଆଉ ?
ହେ ମହାପ୍ରଭୁ

କୁମ୍ଭୀର ଗ୍ରାସରେ ଗାଜ,
ଜନେ କହୁବାର ଅନେକପା-ରାଜ
ମନେ କଲ୍ କି ନା ମାନ ହେ ॥୨॥

ନୃପସଭା ମଧ୍ୟେ ଅସ୍ଥିର ହୁଅନ୍ତେ ଦ୍ରୁପଦ ସୁତା ଆବର
ଧାନରୁଣ୍ଡ ଆନ କିଛୁ କହୁବାର କାନ ଶୁଣିନାହିଁ ମୋର
ହେ ମହାପ୍ରଭୁ
ହୃଦେ ଯେ ଥାଅ ନିରତେ
ଲାଞ୍ଚ ଦେଇଥିଲେ କାଞ୍ଚନ କେତେ କି
ପାଞ୍ଚ ପଣ୍ଡୁରାଜ ସୁତେ ହେ ॥୩॥

ଜୂପରେ କେଳଣ ଉପରେ ପତାକା ଧୀଆଇଲ ଯେ ଭୂଜାକ
ଯାହା ହୋଇଥିଲା ଯାହା ହେଲା ତୁମ୍ଭ ପ୍ରସାଦ ବଣୁର ଜକା
ହେ ମହାପ୍ରଭୁ
ଜଗତେ ତ ତାହା ଜଣା
ଅନ୍ଧକୁ ନେତ୍ର ମିଳିବାରୁ ହୋଇଛୁ
ଯଶ ଡିଣ୍ଡିମ ବାଜଣା ହେ ॥୪॥

ନଳ କୁବେରଙ୍କ ଚରିତକୁ ବୁଧେ ବଳିକୁ ଅଛନ୍ତି ଏବେ
ପ୍ରହ୍ଲାଦକୁ ମହା ଆହ୍ଲାଦ ଆପଣ କରିଛ ପରା ପୁରୁବେ
ହେ ମହାପ୍ରଭୁ
ମୁନିଙ୍କ ଆଶ୍ରମ ଶିଳା
ତୁମ୍ଭଙ୍କୁ କି ଉପକାର କରି ରୂପବନ୍ତି
ହୋଇ ବାଳସିଲ୍ ହେ ॥୫॥

କେବଳ ସୁଦାମା ଦ୍ୱିଜ ନିଜ ଶକ୍ତି ଅନୁରୂପ ଆଚରିଲେ
ଗଳିତାଏ ଖୁଧା ନଜର ଦେବାରୁ ଫଳ ତା' ଦୁଶାଳିଲେ
ହେ ମହାପ୍ରଭୁ
ଆଉ କେ କି କଲା କହ
କାହା କାମକୁମ୍ଭ ପୁରିନାହିଁ ତୁମ୍ଭ
ଅହେତୁକ ଅନୁଗ୍ରହ ହେ ॥୬॥

ଅନନୁଗତ ତୋ ମନନୋହେ ବୋଲି ଆଜ୍ଞା ହେବ ପରି ମୋତେ
ନାମ ସ୍ୱସୁତର ଡାକବାରୁ ଦିବ୍ୟଧାମ ଲଭିଲା କେମନ୍ତେ
ହେ ମହାପ୍ରଭୁ
ଅଜାମିଳ ମହାସୁର
କେଉଁ ସାବଧାନ ହୋଇ ନାମ ଗାନ
କରିଥିଲେ ସେ ତୁମ୍ଭର ହେ ।।୭।।

କବି ରବି ରାୟଗୁରୁ ଯୋଡ଼ି କର ଯୁଗଳକୁ ଶ୍ରୀମୂରେ କହେ
ଭଲ ଅବା ମନ୍ଦ କରିବାକୁ ତ ମୁଁ ମୋହର ଆୟତ୍ତ ନୁହେଁ
ହେ ମହାପ୍ରଭୁ
ସବୁ ତୁମ୍ଭ ଇଚ୍ଛା ସିନା
ରଖ ବା ନରଖ ମୋହର ଗତି ତ
ପତିତପାବନ ବାନା ହେ ।।୮।।

**

**

# ସଙ୍ଗାତ ଦେଖିଲେ ରହୁଛୁ ଲଖି

## ଯଦୁମଣି ମହାପାତ୍ର

[ ରାଗ- ତୋଡ଼ି ପରଜ ]

ସଙ୍ଗାତ ଦେଖିଲେ ରହୁଛୁ ଲଖି
ଖଲୁଣୀ ପରାୟେ କାଳିଆ ମୁହଁକୁ
ଗୁଳୁଣୀ ପରାୟେ ଆଖିରେ ॥ପଦ॥

ପଣ୍ଡା ରନ୍ଧା ଭାତ ଗଣ୍ଡାକ ସେ ଯେବେ ନୟନେ ଦଅଇ ଦେଖି
ଭଣ୍ଡାରି କୁହନ୍ତ ତାଙ୍କଠାରୁ ନେଇ ବ୍ରାହ୍ମଣେ ଦଅନ୍ତ ଚାଖିରେ ॥୧॥

ଯଗତ ଯାଙ୍କ ଭଜୁଥାନ୍ତ ତାହାକୁ କେଉଁ ଗୁଣ ତା'ର ଦେଖି
ପୁରତେ ନରତେ ବସିଛୁ ଯାହାର ଦ୍ୱିଗୁଣ ସାଗୁଣା ପକ୍ଷୀରେ ॥୨॥

ଧଳାକଳା ବେନି ଭାଇ ଯେ ମଧ୍ୟରେ ଜଗିଛନ୍ତ ବେନି ପାଖି
ଜଗତ ଯା'କର ମନ ମୋହୁଅଛୁ ବନ ହଳଦିଆ ମୁଖୀରେ ॥୩॥

ଯଦୁମଣି ଭଣେ ନିଜଗତ ଦୀନଜନଙ୍କୁ ପାରଇ ରଖି
ନାମ ଧରିଥିବୁ ଅରେ ଯେବେ ଯମ କରଣ ନ ପାରେ ଲେଖିରେ ॥୪॥

**

**

# ମାନସ ଭଜ

## ଯଦୁମଣି ମହାପାତ୍ର

[ ରାଗ-ତୋଡ଼ି ପରଜ ]

ମାନସ ଭଜ ତୁ ଉତ୍ତମ କରରେ
ତମ ଚକାଚକ ମୁକୁଟ ଅଳଙ୍କାର ଚନ୍ଦ୍ରାନନ୍ଦନ ଶ୍ରୁତୁଗ୍ରରେ ମାନସ ।।ପଦ।।

ସାବନ୍ତୀ ପ୍ରମୋଦ ପ୍ରବୀଣ ତରୁଣ ସୁଧାକିରଣ ମଣ୍ଡଳ
ଲୋଚନ ଗାଣ ବକଣଙ୍କ ପବଣ ପୀୟୂଷ ପ୍ରାଶନ ଥାଳୀରେ ।।୧।।

ହୀରକ ଝଲକ ନୀଳମଣି ଟେକ ଝଲରେ ବଳି ଦ୍ୱନ୍ଦ୍ୱଆ
ଜଗଜ୍ଜନ ମନମୋହନ ତାରକ ଲକ୍ଷ୍ମୀରେ ବେନି ବନ୍ଧଆ ।।୨।।

ନାର ବେଦପୁର ନାରଙ୍ଗୀ ନକର ତାରଣେ ସର୍ବସ୍ୱର୍ଣ୍ଣିଶ୍ରୀ
ଫଗ୍ରବେ ଗରୁଆ ହେବାରୁ ଫରୁଆ ଫିଟିପଡ଼ିଥିବା ପଣରେ ।।୩।।

ନାରଙ୍ଗୀ ନକର ମଣି ଯଦୁମଣି କହେ ଟଣେ ଖଳି ଖଳି
ଦୁଗ୍ଧ ଜଳଧି ପୁତ୍ରୀ ହେମ ଗାତ୍ରୀର ଗଣ୍ଡମଣ୍ଡନ ମୁଚୁଳୀରେ ।।୪।।

**

**

# ଚକାନୟନକୁ ଡକାରେ

## ଯଦୁମଣି ମହାପାତ୍ର

(ଊନବିଂଶ ଶତାବ୍ଦୀ)

[ରାଗ-ଏରଭାଲ କାମୋଦୀ]

ଚକା ନୟନକୁ      ଡକାରେ ମାନସ
ଚକା ନୟନକୁ ଡକା
ନାଲିକ ବନ୍ଧୂକ      ନାଲ ନେଣ ତେଜ
କଣପାରନ୍ତ ଯେ ଫକା ॥ ଘୋଷା ॥

ଯାହା ବଳେ ଭଳେ      ପଣ୍ଡି ଗୃର ଭ୍ରଳେ
ବାହୁରେ ବନ୍ଦେମେ କକା
ଦର୍ଶନ ମାତ୍ରକେ      ଯେ ଅଘ ଲଙ୍ଘନ
କଲେ ମଘବାଣ କକା ॥୧॥

ପଶୁ ତାର୍ଯ୍ୟକେ      ଦୃଷ୍ଟ ପଣ ସର୍ଜ୍ଜକେ
ସୃଷ୍ଟ ଯେଉଁ ଷଣ୍ଢାବକା
ଯୁଗଳ ବିଘାତ      ସର୍ଜ୍ଜି ବର୍ଜ୍ଜି ଦେଲେ
ଅର୍ଜ୍ଜିତ ବୃଜନ ଦକା ॥୨॥

ବାଳା-ବଳ ପାପୀ      ରାଜା ଅଜାମିଳ
ପୁତ୍ରକୁ ଡାକିବା ଛକା
ଗରିଷ୍ଠ ନଷ୍ଟ      ଦୁରିତ ପାପିଷ୍ଟକୁ
ଦ୍ୱରିତେ ମାଇଲେ ଧକ୍କା ॥୩॥

ନିନ୍ଦାସ୍ତୁତ ଭକ୍ତ　　ଯେଣ ମୁକ୍ତି ଦେବା
ଶକ୍ତି ମନ୍ତ୍ର ପରେ ପକା
ବେଦରାଜପୁଣ୍ୟ　　ନଦୀଜ ପବ୍ରୀଣ
ପାଣ୍ଡକୁ ଯେ କଲେ ଏକା ।।୪।।

ମହା ମନ୍ଦମାବନ୍ତ　　ବୋଲି ଯା' ନାମେ
ବ୍ରହ୍ମାଣ୍ଡେ ବାଜଇ ଡକା
ମାନକୁ ଛଡ଼ାଇ　　ସେ ମାନଗୋବନ୍ଧ
ନୃପକୁ କଲେଟି ବୋକା ।।୫।।

ଯଦୁମଣି ଭଣେ　　କଲିକର୍ମ ଗୁଣେ
ରଖିବେ ନାହିଁ ବଡ଼ କା
ନୀଳାଚଳ ଚୂଳେ　　ନୀଳଚକ୍ରେ ଲୁଲେ
ପାପୀ ପାବନ ଫଡ଼କା ।।୬।।

**

**

# ଓଜଶୀଳ ଭୋଜ ଗଜ

**ଯଦୁମଣି ମହାପାତ୍ର**

( ଊନବିଂଶ ଶତାବ୍ଦୀ )

[ ରାଗ-ବସନ୍ତ ]

ଓଜଶୀଳ ଭୋଜ ରାଜ ଜୀବନ-ହରଣେ ତେଜ
ଅର୍ପଣ କଲ କୃପଣେ ନୋହି
ଗମ୍ଭୀର ଜଳେ କୁମ୍ଭୀର ଗଳ ଗ୍ରହଣେ କୁମ୍ଭୀର
ଜୀବରକ୍ଷା କଲ କକ୍ଷା ବନ୍ଧି
ହେ ନୀଳାଚଳ କଳାକାର !
ସତ କି ଏ ମିଛ ?
ନେଲ ଯାହା ଦେଲ ତାହା ଏଥକୁ କପାଇଁ ମହା-
ଦାତା ପଣେ ପତାକା ବାନ୍ଧିଛ ହେ ॥୧॥

ଦଳି ବଳିଷ୍ଠ ବାଳକ ଅକଳିତ ବିଭୂତି କି
ବଳିତ କରରେ କରିଥିଲ
ନ ମାନିକରି ରମାକୁ ଅକିଞ୍ଚନ ସୁଦାମାକୁ
ବିପୁଳ ସଂପଦେ ମଣ୍ଡି ଦେଲ
ହେ ନୀଳାଚଳ କଳାକାର !
ସତ କି ଏ ମିଛ ?
ନେଲ ଯାହା ଦେଲ ତାହା ଏଥକୁ କମ୍ପାଇଁ ମହା-
ଦାତାପଣେ ପତାକା ବାନ୍ଧିଛ ହେ ॥୨॥

ଗୋକୁଳ-କଳାଧଉତ ଗଉରାଙ୍ଗୀଙ୍କ ମହତ
ନେଇଥିବା ସକାଶରୁ କର
ଦ୍ରୁପଦ ନୃପ ନନ୍ଦନା- ମହତ ହର ବେଦନା
ବନାଶନେ ହେଲ ଧନ୍ୱନ୍ତରୀ
ହେ ନୀଳାଚଳ କଳାକର !
ସତ କି ଏ ମିଛ ?
ନେଲ ଯାହା ଦେଲ ତାହା ଏଥକୁ କିପାଇଁ ମହା-
ଦାତାପଣେ ପତାକା ବାନ୍ଧିଛ ହେ ॥୩॥

ପାତକ-ମୁକୁଟ ଶ୍ରେଣୀ ଶିରୋମଣି ଯଦୁମଣି
ମନ ଛଳେ ନେଇ ନ ପାରିବ
ଏହା ଉଚ୍ଚାରଣେ ଯେବେ ଚକ୍ର ଦେଇ ପାର ଲବେ
ତେବେ ସିନା ଜାଣ ବୋଲାଇବ
ହେ ନୀଳାଚଳ କଳାକର !
ସତ କି ଏ ମିଛ ?
ନେଲ ଯାହା ଦେଲ ତାହା ଏଥକୁ କିପାଇଁ ମହା-
ଦାତାପଣେ ପତାକା ବାନ୍ଧିଛ ହେ ॥୪॥

**

**

# ଜଗବନ୍ଧୁ ଦୟାଳ

## ଗୋପାଳକୃଷ୍ଣ ପଟ୍ଟନାୟକ

(ଊନବିଂଶ ଶତାବ୍ଦୀ)

[ରାଗ-କୀରବାଣୀ]

ଜଗବନ୍ଧୁ ଦୟାଳୁ ଥାଉଁ ମନ କାହିଁପାଇଁ ଖଳୁରେ
ରହ ଉଦ୍ଧରିବେ ଏ ଜଞ୍ଜାଳୁରେ ॥ ଘୋଷା ॥

ନିରୁପାଧି କୃପାକର ମହିମାବ୍ଧି
ନୀଳାଚଳ ସୁଧାକର
ନିଖିଳ ପ୍ରାଣି ହିତକାଙ୍କ୍ଷି ତୋତ୍ତୁର
ବଦନ କି ତାଙ୍କୁଂ ଘୋର ॥୧॥

ପ୍ରଭୁ ବଦାନ୍ୟେଶ ସ୍ୱରୂପେ ଅର୍ଥୀଙ୍କି
କରୁଣ ନୃପ ପ୍ରସନ୍ନେ
ଯୁବତୀଙ୍କି କାମ ସଖାକୁହିଁ ସମ
ଅଧୀଶ ସ୍ୱଭକ୍ତେ ଜନେ ॥୨॥

ଦାମୋଦର ଗଲେ ନ ମାଗ୍ ଯା' ଦେଲେ
ଶୁଣିତ ଥିବୁ ପୁରାଣେ
ବୃଥାହୋଇବକି ଜଣାଇବାର ଶୁ
ପ୍ରଣାମ କରି ଚରଣେ ॥୩॥

କୃପ ଲୁ ପଣେକେ କାଳିବ ପିଆଇ
ଦେଇଥିଲା ବିଷ ବକୀ

ଦୋଷ ଯେନ କସ ଦଣ୍ଡିବେ ଜନନୀ
ଗଣେରେ ଦେଲେ ଗଢକ ।।୪।।

ନୃପ ମୁନି ଗୋପୀ ସୀତା ପିତଙ୍କର
ଶତ୍ରୁ କ୍ଷୟ ଆତ୍ମା ମୋକ୍ଷ
କରିଛ ଯା ନାମ ମାନକେ ସେ ପ୍ରଭୁ
ହୋଇଅଛନ୍ତି ପ୍ରତ୍ୟେକ୍ଷ ।।୫।।

ଦାରଣ କର-ପଣପ୍ରାଣ ଘୋଷଣ
ବ୍ରହ୍ମାଣ୍ଡ ଭିତ୍ତି ଫଟାଇ
ବାହାର ଯାଇଛ, ନ କର ସ୍ମରଣ
ଦୁଃଖୀ ହେଉ କାହିଁପାଇଁ ।।୬।।

କୁରୁ ସଭାତଳେ ଡାକିବାର ବେଳେ
ଯାହା ଦେଲେ ଦ୍ରୌପଦୀଙ୍କି
ଥାଉ ତାହା, ପୁଣି ବୋଲି ମୁଁ ତା ଋଣୀ
କହୁଅଛନ୍ତି ସେ ଡାକ ।।୭।।

ଭକ୍ତ ବନ୍ଧୁ ପଣ ଭାରତ ଯୁଦ୍ଧରେ
ଭୀଷ୍ମଠାରେ ଦିଆଇଲେ
ନିୟମ ଲଂଘି ରଥରୁ ଡେଇଁ ରଥ-
ଚରଣ ଧରି ଧାଇଁଲେ ।।୮।।

ଶରଣ ପଶି ବିଭୀଷଣ ଆସିଛୁ
ବୋଲି କହୁ ଶ୍ରୀ ମୁହଁରେ
ଦେଲେଣି ତେତେବେଳକୁ ତାଙ୍କୁ ଲଙ୍କା
ପଦବୀ ଭକ୍ତ ଲୀଳାରେ ।।୯।।

ବିଧିପଦ ସୁଖ ବୋଲି ହନୁମାନ
କଲରୁ ଅନୁମୋଦନ
ବ୍ରହ୍ମା କରିବେ ରଖିଛନ୍ତି ପ୍ରଭୁ କେ
ଏପରି ଜାଣିବ ମନ ।।୧୦।।

ଧ୍ରୁବ ମନୋରଥ ପୂର୍ଣ୍ଣ କରିବାର
ପ୍ରତ୍ୟକ୍ଷରେ ତ ଦିଶୁଛି
ଚରଣ ପଙ୍କଜ-ରଜରେ ପଥର
ପଥର ନାରୀ କରିଛି ॥୧୧॥

ପ୍ରହର ଅର୍ଦ୍ଧେକ ଧୂଳି କଲେ ଭକ୍ତ
ବଇରି ରାକ୍ଷସ ମେରୁ
ସେ ପ୍ରହ୍ଲାଦଙ୍କ ବିପଦ ଠାରୁ ତ
ନୁହଇ ମୋ ଖେଦ ଗରୁ ॥୧୨॥

ଭଜନ କୀର୍ତ୍ତନ ଆତ୍ମ ସମର୍ପଣ
ଦାସ୍ୟ ସଖ୍ୟାଭିବାଦନ
ସ୍ମରଣ ପୂଜା ଶ୍ରବଣ ନବରତ୍ନ
କୃଷ୍ଣ କରିଛନ୍ତି ଦାନ ॥୧୩॥

ରମା ଶୁକବଲୀ ହନୁମାନାର୍ଜୁନ
ଅକ୍ରୂର ଦୈତ୍ୟ ତନୁଜ
ପୃଥୁ ପରୀକ୍ଷିତ ହୋଇ ଅଲଂକୃତ
ଲଭିଛନ୍ତି ପଦକଂଜ ॥୧୪॥

ବୋଲିବୁ ମୁଁ ଧ୍ୟାନ ଭଜନ ସାଧନ
ନ ଜାଣଇ ଜନମରୁ
ଅଜାମିଳ ଯାମଳାର୍ଜ୍ଜୁନ କ ସେ
କରିଥିଲେଟି ପୂର୍ବରୁ ॥୧୫॥

ଯା, ଗୁଣାର୍ଣ୍ଣବରୁ ବିନ୍ଦୁଏ ବର୍ଣ୍ଣିଲେ
ଶେଷରେ ନ ହେବ ଶେଷ
କ କହିବ ତାହା ଗୋପାଳ କୃଷ୍ଣ ତ
ନୁହଇ ଖାଟ ସଦ୍ଗୁଣ ॥୧୬॥

**

**

# ଅନୁସରତ

## ଗୋପାଳକୃଷ୍ଣ ପଟ୍ଟନାୟକ

(ଊନବିଂଶ ଶତାବ୍ଦୀ)

[ରାଗ-ହନୁମତ ତୋଡ଼ି]

ଅନୁସରତ
ପ୍ରଭୁ ! କାଳ ଯାକ ଗଲା ସରତ
କଣ ବିତରଣ କଲେ କେତେ ଗୁଣ।
ହୁଅନ୍ତା କରୁଣା ସରତ ।। ଘୋଷା ।।

ଅଶରଣ ଜନ ବନ୍ଧୁପଣ ଯଶ
ସଂସାରେ ହୋଇଛୁ ଉଦିତ
ପଥର ହୋଇ ପଥରେ ପଡ଼ିଥିଲା
ଅହଲ୍ୟାକୁ ଦେଲ ତାରତ ।।୧।।

ପାଞ୍ଚାଳୀକି ଦୁଃଶାସନ ଘଞ୍ଚାଳିଲା
ବଞ୍ଚାଇଲ ବାସ ଦେଇତ
ଘୁଞ୍ଚାଇଲ ନାହିଁ ମୋ ଗ୍ରୁର କଦନ
ପୋଛୁଇଲ ନେଇ ବାରତ ।।୨।।

କାହିଁଥିଲା ଚନ୍ଦ କାହିଁଥିଲା ନନ୍ଦ
ପଲକ ପତନ ନୋହୁତ
ଛୁଡ଼ିଗଲା ମଥା ରହିଗଲା କଥା
ଡାକିଲା ମାଧବେ କଷ୍ଟ ତ ।।୩।।

କାଳ କିଙ୍କର ଭୟରେ ଅଜାମିଳ
ପୁତ୍ରୋପସ୍ୱରରେ ଡାକନ୍ତି
ପରମପଦ ପାଇଲା ଆପଣଙ୍କ
ନାମ ମହିମା ଏପରନ୍ତି ।।୪।।

ନିରୂପାଧି କୃପା କର ବୋଲି ବିଧି
ଭବାବ୍ଧିରେ ଥାଉ କଥନ୍ତି
ମୁଁ କଲି ଦୋଷକି ? ନାଶିଛନ୍ତି ବକ୍ରୀ
ବିଷ ପିଆଇଁ ତା ଦୂରନ୍ତି ।।୫।।

ଗୋପାଳ କୃଷ୍ଣ କହେ ଜଗନ୍ମଙ୍ଗଳ
ଯାହା କରିବ ତୁମ୍ଭ ଚିତ୍ତ
ଆପଣା କୃପାଳୁ ପଣକୁ ବଳି ମୋ
ଦୁଷ୍କୃତ ନୁହଇଁ ଖଣ୍ଡିତ ।।୬।।
**

✻✻

# ନୀଳଚକ୍ରେ ହେ, ଦେଖ ଉଡ଼ୁଛି ବାନା

## ଗୌରଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

[ରାଗ-ଶଙ୍କରାଭରଣ-ରୂପକ ତାଳ]

ନୀଳଚକ୍ରେ ହେ, ଦେଖ ଉଡ଼ୁଛି ବାନା
ପତିତ ପାବନ ନାମଟି ଯା' ନାଁ ॥ ଘୋଷା ॥

ଆସ ଆସ ବୋଲି ପାତକୀମାନଙ୍କୁ
ଡାକୁଅଛି ପସ୍ତ ଫଗାତ ! ଅନା
ନେତ ଧ୍ୱଜାବର ଉଡ଼ି ଫର ଫର
ଉଡ଼ାଇ ଦେଉଛି ଭବ ଯାତନା ॥୧॥

ପଞ୍ଚକୋଶୀଯାଏ ଜନେ ଦେଖାଯାଏ
ଦର୍ଶନେ କଳୁଷ ହୁଅଇ ଚୂନା
ଚଉଦ ବ୍ରହ୍ମାଣ୍ଡ କର ତାଙ୍କ ଲୀଳା
ଶଙ୍ଖନାଭି କ୍ଷେତ୍ରେ ବଚନ ସିନା ॥୨॥

ସଳଖ ସୁନ୍ଦର ବଡ଼ଦାଣ୍ଡ ଶୋଭା
ମର୍ତ୍ତ୍ୟମଣ୍ଡଳରେ କାହିଁ ଅଛି ନା
ଶରଧା ବାଲିରୁ ସ୍ୱର୍ଗଦ୍ୱାର ଯାଏଁ
ଗହଳ ଚହଳ ନୁହେଁ କଳନା ॥୩॥

ପାପ ଛଡ଼ାପୁରେ ବାସ କରିବାକୁ
ଯାହାକୁ ତାହାକୁ ନୁହଇ ମନା

ଆଗୁଣ୍ଡାଳ ବପ୍ର ପଙ୍କକେ ଭୁଂଜିବା
ବଡ଼ ଆଚମ୍ବିତ ଲଗଇ କନା ।।୪।।

ଗୌର ଦ୍ୱିଜ ଭଣି ଶ୍ରୀକ୍ଷେତ୍ର ରହଣି
ପାଇଁ କରୁଥାଇ ସଦା ଭାବନା
ସତେ ହେବେ ସାହା ଦଇଆର ବାହା
ସଂପୂର୍ଣ୍ଣ କରିବ ମନ କାମନା ।।୫।।

**

**

# ଦୀନବନ୍ଧୁ ଦୁରିତ ନାଶନ ହେ

## ଗୌରଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

[ ରାଗ-ସାବେରୀ ]

ଦୀନବନ୍ଧୁ ଦୁରିତ ନାଶନ ହେ
ଶ୍ରୀ ଦେବାଧି ଦେବରାଜ
ମହାମହୋତ୍ସବ କରିବାକୁ ଦେବ-
ସ୍ନାନ ମଣ୍ଡପକୁ ବିଜେ ।। ଘୋଷା ।।

ଛେଡି ରତ୍ନସିଂହାସନ ମହାପ୍ରଭୁ !
ହେଜି ପତିତଙ୍କ ଦୁଃଖ
ନିରେଖମାନେ ନିସ୍ତାର ହୋଇଯିବେ
ନିରେଖି କଳା ଶ୍ରୀମୁଖ ।।୧।।

ଦିବ୍ୟବେଶ ହୋଇ ଦୟାଳୁ ସାମନ୍ତ
ଦେଉଳରୁ ବାହାରିଲେ
ମସ୍ତକରେ ହସ୍ତ ନିବେଶି ସମସ୍ତ
ଜନମାନେ ଜୁହାରିଲେ ।।୨।।

ବାଜେ ଜୟ ଶଙ୍ଖ ମଙ୍ଗଳ ମହୁରୀ
ମର୍ଦ୍ଦଳ ବୀର କାହାଳୀ
ପୁରୁଷମାନଙ୍କ ହରବୋଲ ଧ୍ୱନି
ନାରୀଙ୍କର ହୁଳହୁଳି ॥୩॥

କେହୁ ଧରେ ଛତ୍ର ଆଢ଼େଣୀ ଚାମର
କେ ଧୀରେ ଢାଳେ ଚାମର
ଆଗେ ମାଳ ମାଳ ହଡ଼ୁଛି ଟୀଳ
ଢଳେ ଆଲଟ ରୁଚିର ॥୪॥

ଛଡ଼ ବାଡ଼ ଧରି ଡାକେ ପଢ଼ିଆରୀ
ମହିମା ମହିମା ବାଣୀ
ସ୍ନାନ ମଣ୍ଡପକୁ ବିଜେ କର ପ୍ରଭୁ
ତ୍ରୈଲୋକ୍ୟର ଚିନ୍ତାମଣି ॥୫॥

ଖଟଣୀ ସେବକ ପଥ ସମାର୍ଜନ୍ତି
ପକାନ୍ତି ପାହାଡ଼ା ତୁଳି
ପଢ଼ନ୍ତି ବିଜୟେ କରନ୍ତି ଗୋବିନ୍ଦ
ଧୀରେ ଧୀରେ ଢଳି ଢଳି ॥୬॥

ରତନ ମଣ୍ଡପ ସ୍ଥିରୁ ଚନ୍ଦ୍ରାତପ
ଚିତ୍ର ବିଚିତ୍ରରେ ଶୋଭା
ସନ୍ଧିରେ ପାବଚ୍ଛ ବସିଅଛି ସ୍ୱଚ୍ଛ
ଶୁଭ୍ର ବ୍ରହ୍ମକାଠ ଖୋଭା ॥୭॥

ଜମ୍ବୁନଦ ହେମବାଡ଼େ ମନୋରମ
ଆହ୍ଲାଦିବା ଅପସରି
ଭାଇ ଭଗ୍ନୀ ସଙ୍ଗେ ଘେନକର ରଙ୍ଗେ
ବିଜୟେ ଜଗୁ ସୋଦର ॥୮॥

ଇନ୍ଦ୍ର, ଚନ୍ଦ୍ରଦେବ, ନୈରୃତ, ବରୁଣ
ସୁର ସିଦ୍ଧ ବିଦ୍ୟାଧରୀ

ଶ୍ରୀ ଗ୍ରମୁଟରେ ଆସି ସେବା କରୁଛନ୍ତ
ମାନବ ମୂରତ ଧରି ॥୯॥

ଅନେକ କନକ ଘଟ ପୂର୍ଣ୍ଣ କରି
ଆକାଶର ଗଙ୍ଗା ପାଣି
ଜୟ ଜୟ ଜଗନ୍ନାଥ ବାଣୀ ଭଣି
ଶିରେ ନ ଢାଳନ୍ତି ଆଣି ॥୧୦॥

ବ୍ରହ୍ମା ଶିବଙ୍କୁ ଲଭ୍ୟ ନୋହୁଥିଲା ଯେ
ସେହୁ ସେ ଚରଣାମୃତ
ଏବେ ଇଚ୍ଛା ସୁଖେ ପାନ କରି ଲୋକେ
ହେଉଛନ୍ତ କୃତକୃତ୍ୟ ॥୧୧॥

ଅତ ସମ୍ଭ୍ରମରେ ସ୍ନାନ ମହୋତ୍ସବ
ବିଧାନକୁ ବଢାଇଲେ
ଧୂପ ଦୀପ ବନ୍ଦାପନା ଦେବାର୍ଚ୍ଚନ
କର୍ପୂର ଆଳତ କଲେ ॥୧୨॥

ପଣ୍ଡା ପଶୁପାଳ ନାନା ଧଣ୍ଡାମାଳ
ଶ୍ରୀ ଅଙ୍ଗରେ ଲମ୍ବାଇଲେ
କଳା କଳେବର ବେଶଧରି ହରି
ବାହୁଡ଼ା ବିଜୟେ କଲେ ॥୧୩॥

ବିଘ୍ନରାଜ ଉପାସକ ଏକ ଦ୍ୱିଜ
ଭକ୍ତ ପୂର୍ବେ ଥିଲା ଆସି
ଏ ମହାପ୍ରଭୁ ନୁହନ୍ତି ବୋଲି କ୍ରୋଧେ
ଯାଉଥିଲା ସେହୁ ଋଷି ॥୧୪॥

ଜାଣି ତାର ମନ କରୁଣା ନିଧାନ
ଆଣି ପାଶେ ରଖାଇଲେ
ଗଜ ବଦନ ଶୋଭି ବେନି ନୟନ
ତାର ଆଗେ ଦେଖାଇଲେ ॥୧୫॥

ହେନ୍ଧୁଢ଼ନଠାରୁ ଗଜ ବେଶ ହେଲେ
ଭକ୍ତବନ୍ଧୁ ଭାବଗ୍ରାହୀ
ବଡ଼ ଦେଉଳକୁ ଝୁଲି ଝୁଲି ବିଜେ
ଠାବେ ଠାବେ ରହି ରହି ॥୬॥

ଅନେକ ଜଳ ଅଭିଷେକ ହେବାରୁ
ଶ୍ରୀ ଅଙ୍ଗେ ଅଳସ ଯହୁଁ
ଲୋକଙ୍କ ଦେଖାର ଅଣସର ଘରେ
ଗୁପତେ ରହିଲେ ତହୁଁ ॥୭॥

ଭକ୍ତଙ୍କ ଆକୁଳ ଜାଣି ଅନୁକୂଳ
କଲେ କରୁଣା ନିଧାନ
ଅଣସର ଘର କରଣ ଅନ୍ତର
ଗୁଣ୍ଡିଚା ଯାତ୍ରା ବିଧାନ ॥ ୮॥

ନବ ଜଳଧର ରୂପ ମନୋହର
ଶ୍ରୀ ମୁଖମଣ୍ଡଳ ଶୋଭା
ଜଗତ ମୋହନ ବେଶଧରି ହରି
ମଣୋହି କୋଠାରେ ଉଭା ॥୯॥

ସେ କାଳର ଶୋଭା ମଣୋହି ଉତ୍ସବ
ଦେଖିଛି ଯାହାର ଆଖି
କବି ତୁଣ୍ଡର କାହିଁ ସେ ଛବି ବର୍ଣ୍ଣିବ
ସେହି ତାର ଏକା ସାକ୍ଷୀ ॥୧୦॥

କାଲି ଶ୍ରୀ ଗୁଣ୍ଡିଚା ଯାତ୍ରା ହେବ ବୋଲି
ଆଜିଠାରୁ ହୋଇ ସଜ
ନନ୍ଦିଘୋଷେ ରଥେ ବିଜୟେ କରିବେ
ବିସ୍ତାରଣ ବେନି ଭୁଜ ॥୧୧॥

ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ପରିକ୍ରମ
କେହି ନଜାଣନ୍ତି କାହୁଁ

ଧର୍ମ ଅର୍ଥ କାମ ମୋକ୍ଷ ଏ ପ୍ରତ୍ୟକ୍ଷ
ଠାବେ ଠାବେ ପୁଣ ଅଛୁ ॥୨୨॥

କେ କହୁ ପାରବ ଶ୍ରୀକ୍ଷେତ୍ର ମହିମା
ଶେଷ ମୁଖେ ନୋହେ ଶେଷ
ଦେବଙ୍କ ଦୁର୍ଲ୍ଲଭ ମର୍ତ୍ତ୍ୟରେ ବୈକୁଣ୍ଠ
ଲୀଳା ଅଶେଷ ଅଶେଷ ॥୨୩॥

ହେ ଜଗନ୍ନିବାସ ମୋର କ୍ଷେତ୍ରବାସ
କରିବାକୁ ବଡ଼ ଆଶ
ଦାଣ୍ଡେ ଧରି ଏହୁ ଅନୁଜ୍ଞା ମାଗଇ
ଗଉରଚରଣ ଦାସ ॥୨୪॥

**

**

# କାଳିଆ କାହ୍ନୁ

## ଗୌର ଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

[ ରାଗ-ଖରହରପ୍ରିୟା ]

କାଳିଆ କାହ୍ନୁ ! ଆଉ ବିଳମ୍ବ କର କାହିଁକି ?
ବରଷକ ଅରେ ବିଜୟ ରଥରେ
ପଥିତ ତାରିବା ପାଇଁ କି ॥ଘୋଷା॥

ଚଉଦ ବ୍ରହ୍ମାଣ୍ଡ ରୁଣ୍ଡ ହୋଇଛନ୍ତି
ଦର୍ଶନ କରିବା ପାଇଁକି
ଅନେକ କାଳର ଦୁଃଖ ଉପେକ୍ଷିବେ
କଳା ଶ୍ରୀ ମୁଖକୁ ଚାହିଁକି ॥୧॥

ଆଗେ ଗଜପତି ଉଭାହୋଇଛନ୍ତି
ଶିରେ ଯୋଡ଼ି କର ଦୁଇକ
ସୁନା ଶୋଧନୀରେ ମାର୍ଜନା କରନ୍ତି
ପହଣ୍ଡି ବିଜେସ୍ୱେ ଭୂଇଁକ । ୨॥

ଛତଣା ନିଯୋଗେ ଝଭି ହୋଇଛନ୍ତି
ଯେ ଭଜନ ହେବେ ଯହିଁକ
ଆକାଶେ ଇନ୍ଦ୍ର ଅମର ବୃନ୍ଦ ପୁଷ୍ପ
ବୃଷ୍ଟି କରୁଛନ୍ତି ତହିଁକ ॥୩॥

ତାଳଧ୍ୱଜ ରଥେ ବିଜେସ୍ୱେ କରନ୍ତି
କହ୍ନୁ ଦଅ ବଡ଼ଭାଇଙ୍କି
ଦେବୀରଥ ବଡ଼ ସୁନ୍ଦର ଦଶିବ
ଭଉଣୀ ହଳଦୀ ମୁହିଁକ ॥୪॥

ତୁମ୍ଭେ ପଛରେ ପଛକେ ଆସୁଥାଅ
କରି ନବରଙ୍ଗ ଛଇକ
ମଥା ଦୋହଲାଇ ଟାହୁଆ ହଲାଇ
ଠାବେ ଠାବେ ରହୁ ରହୁକ ॥୫॥

ସେବକମାନଙ୍କ ଅଙ୍ଗ ଶ୍ରମ ଝାଳ
ଗମଗମ ପଡ଼େ ବହୁକ
ଝଙ୍କା ଝଙ୍କି କରିବାରୁ ବାଧୁଥିବ
ପଦ୍ମ ସୁକୁମାର ଦେହକ ॥୬॥

ଦେବଦାସୀ ନାଟ ଉତ୍କଟ କରନ୍ତି
ତା ତା ଧ୍ରିମିକଟ ଥେଇକ
ବାଜେ ଖୋଲ ତାଳ ମହୁରୀ ମଂଜୁଳ
ମର୍ଦ୍ଦଳ ତା ଧେଇ ଧେଇକ ॥୭॥

କା ନେତ୍ରୁ ଲୋତକ ବହେ ଥକଥକ
କେହୁ ନାଚେ ଗୀତ ଗାଇକ

ଜଗମୋହନଆ ଜଗତଜନଙ୍କୁ
　　　　　　　　　ଲଗାଇଛୁ ପ୍ରେମ ବାଇକ ॥୮॥

କେତେ ଖାଇବ କଦଳୀ କରମଙ୍ଗା
　　　　　　　　　ସରପୁଳି ଖଣ୍ଡ ଛିଣ୍ଡକ
ନାଡ଼ୁ ବଡ଼ ଗଜା ମନୋହର ଖଜା
　　　　　　　　　ଛେନାପୁର ବଟା ଦହିକ ॥୯॥

କେ କେତେ ଭମାଳୀ ଗୀତ ଶୁଣାଇବେ
　　　　　　　　　କେ କେତେ କରିବେ ଟାହିକ
ଖଣ୍ଡି ଚିରଦୁଃଖ ମଣ୍ଡି ଦେବ ଆଜ
　　　　　　　　　କ୍ଷେତ୍ର ବଡ଼ଦାଣ୍ଡ ସାହିକ ॥୧୦॥

ନ' ଦିନ ଅବଧି ଲକ୍ଷ୍ମୀଙ୍କି ପ୍ରବୋଧି
　　　　　　　　　ଆସିଅଛୁ ପରି କହିକ
ଭୁମି ହୋଇ ଆସ ଚହ୍ଲଅଛୁ ଟିକ
　　　　　　　　　ଜଳପତ୍ର କେମା ଦେଇକ ॥୧୧॥

ଆହେ ଚକାଡୋଳା! ବୃନ୍ଦାବନ ଲୀଳା
　　　　　　　　　ମନେ ଆଉ ପଡ଼ୁ ନାହିଁକ
ଆସ ବଂଶୀଧର ! ଚରାଇବପର
　　　　　　　　　ଜଗତ-ଭଗତ ଗାଇଙ୍କି ॥୧୨॥

ପାପ ଅନ୍ଧକାର ଦୂର କ କରିବ
　　　　　　　　　ଆଉ ସେ ପାରିବ ଛୁଇଁକ ?
ନୀଳଶଇଳ ଶିଖର ପୂର୍ଣ୍ଣଚନ୍ଦ୍ର
　　　　　　　　　ଆସୁଛନ୍ତ ପରା ଉଇଁକ ॥୧୫॥

ଅପଲକ ଦୃଷ୍ଟି କରରେ ମାନସ
　　　　　　　　　ଆଉ ଏ ସମୟ ପାଇ କ ?
ଗରୁଡ଼ଚରଣ ପଶିଲା ଶରଣ
　　　　　　　　　ନନ୍ଦୀଘୋଷ ରଥ ଛୁଇ କ ॥୧୬॥
　　　　　　　　　**

**

# ପ୍ରାଣ ସଙ୍ଗାତରେ

## ଗୌରଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

[ରାଗ-ଶ୍ୟାବେଶ୍ୱ, ରଥଯାତ୍ରା-ବୃତ୍ତେ]

ପ୍ରାଣ ସଙ୍ଗାତରେ ! ନୟନ ପୂରାଇ ଅନା
ସଂସ୍ୱର ହୋଇ କେମନ୍ତେ ଉଡ଼ଇ
ଧନ ରଥେ ଧନବାନା ॥ ଘୋଷା ॥

ତାଳଧ୍ୱଜ ଦେବଦଳନ ଶ୍ରୀନନ୍ଦି-
ଘୋଷ ନାମ ସୁଘଟନା
ଭାଇଭଗ୍ନୀ ସଙ୍ଗେ ବସିଛେ କି ରଙ୍ଗେ
ନାଗର ଛଇଲ କହ୍ନା ॥୧॥

ଡାହାଣେ ଶ୍ରୀ ବଳଭଦ୍ର ଦେବରାଜ
ବଡ଼ଠାକୁର ଯାହା ନାଁ ।
ବାମେ ନନ୍ଦଘୋଷ କ ସୁନ୍ଦର ଦଶେ
ଶ୍ରୀପିଣ୍ଡ କାଳିଆ ସୁନା ॥୨॥

ବେନି ଭାଇ ମଧ୍ୟେ ହରିଦ୍ରା ବରଣୀ
ସୁଭଦ୍ରାଈ ଚନ୍ଦ୍ରାନନା
ଗୋକୁଳ ନଗରେ ଯିବାକୁ ଭାବରେ
ହୋଇଛନ୍ତି ଉନମନା ॥୩॥

ତ୍ରୈଲୋକ୍ୟ ମୋହନ ରୂପରୁ ଅପଘନ
ଶୋଭା ନୁହଇ କଳନା

ଉପମା ଦେବାକୁ ତିନ ପୁରେ ନାହିଁ
ଯା' ସୌନ୍ଦର୍ଯ୍ୟ ଅତୁଳନା ॥୪॥

ଟାହୁଆ ଫୁଲଇ ଭ୍ରୁଟିକ ଫୁଲଇ
କି ମନେ କରି ଭାବନା
ପହଣ୍ଡି ବିଜେ୍ଯ କରୁ ଦେବବ୍ରହ୍ମ
ପୁରାନ୍ତି ଭକ୍ତ କାମନା ॥୫॥

ସିଂହ ଦୁଆରୁ ସରଧା ବାଲି ଯାଏଁ
ଶ୍ରୀକ୍ଷେତ୍ରବର ପାଟଣା
ଶ୍ରୀପୁରୁଷୋତ୍ତମ ଯାହାକୁ ବୋଲନ୍ତି
କାହାକୁ ନାହିଁ ବା ଜଣା ॥୬॥

ଲକ୍ଷ୍ମୀ ଭାଉଜିଆ ଜଗନ୍ନାଥିଆର
କଉତୁକ ବୁଝାମଣା
ଜନମାନଙ୍କର ଗହଳଚହଳେ
କେ କାହିଁ ହୁଅନ୍ତି ବଣା ॥୭॥

ଆଜ କି ଆନନ୍ଦେ ଉଛୁଳି ପଡ଼ୁଛି
ଗୁଣ୍ଡିଚା ପାଟ ଅଗଣା
ଗହ ଗହ ନାଦ ବାଜେ ନାନା ବାଦ୍ୟ
କେ କରିବ ତା' ବର୍ଣ୍ଣନା ॥୮॥

ଆମ୍ଭ ଠାକୁରାଣୀ ଗୃହିଁ ରହିଛନ୍ତି
କରି ମନ୍ଦିର ମାର୍ଜନା
ଏ କଳା ଶ୍ରୀ ମୁଖ ଦରଶନ କରି
ହରିବେ ହୃଦ ଯାତନା ॥୯॥

ଆମ୍ଭେ ସର୍ବେ ସଖୀ ହୁଳହୁଳି ଦେଇ
କରିବା ଗୋ ବନ୍ଦାପନା
ଗୌର ଦ୍ୱିଜ କହୁ ସବାପଛେ ରହି
ଛଡ଼ାଇବ ଆବର୍ଜନା ॥୧୦॥

✳✳

**

# ନୀଳାଦ୍ରି ସିଂହ

## ଗୌର ଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

[ରାଗ—ହରି କାମ୍ଭୋଜି]

ନୀଳାଦ୍ରି ସିଂହ ! କି ଲୀଳା ଲଗାଇଛ ଆଣିକି ?
ନିସ୍ତାରିବା ପାଇଁ ପତିତମାନଙ୍କୁ
ବିସ୍ତାରିଛ ବେନି ପାଣିକି ॥ ଘୋଷା ॥

ଏକାକରି ଯାହା ଗୁଡ଼ି ଆସିଅଛ
ମହାଲକ୍ଷ୍ମୀ ଠାକୁରାଣୀଙ୍କି
ସେ ଏବେ କି ଦୁଃଖେ ବସି ମ୍ଳାନ ମୁଖେ
ନଖେ ଚିରନ୍ତି ଧରଣୀକି ॥ ୧ ॥

ତୁମ୍ଭେ ନନ୍ଦୀଘୋଷ ପୃଷ୍ଠେ ବସି ହୃଷ୍ଟେ
କର କଟାକ୍ଷ ଗୃହିଣୀକି
ଦର୍ଶନ ମାତ୍ରକେ ଅଶେଷ କଳୁଷ-
ମାନଙ୍କୁ ପକାଅ ହାଣିକି ॥ ୨ ॥

ଆଗେ ବଳଭଦ୍ର ମଧ୍ୟରେ ସୁଭଦ୍ରା
ପଛରେ ଛଇଳ ମଣିକି
ତିନିଗୁଣେ ସ୍ଥିତି ନିର୍ଗୁଣ ମୂରତି
କେ ପାରେ ସେ ତତ୍ତ୍ୱ ଜାଣିକି ॥ ୩ ॥

ଜକ ଜକ କଲା ଶ୍ରୀମୁଖ ଝଟକ
ନିନ୍ଦେ ଇନ୍ଦ୍ର ନୀଳମଣିକି

କେମନ୍ତ ସୁନ୍ଦର ରଙ୍ଗିମା ଅଧର
ବନ୍ଧୁଲି କୁସୁମ ଜିଣିକ ॥ ୪ ॥

ଦ୍ୱିସପ୍ତ ବ୍ରହ୍ମାଣ୍ଡ ଯାକ ଶୋଭାକୁଣ୍ଡ
ସାର ସାର ଘୁଣିଘୁଣିକ
ବସ୍ତୁର ବସ୍ତୁର ଗ୍ରର ବଦନ ଏ
ରୂପ ଅଛୁ କଣମାଣିକ ॥ ୫ ॥

ରଥର ଦଉଡ଼ି ଲମ୍ବେ ଧାଡ଼ି ଧାଡ଼ି
କିବା ସେ ବାସୁକୀ ଫଣିକ
ନର ସ୍ୱରୂପେ ଅମର ଗଣ ମିଣି
ସଧୀରେ ଧରନ୍ତି ଟାଣି କ ॥ ୬ ॥

ଚନ୍ଦ କଟ କଟ ମାଳେନ୍ଦ୍ର ପ୍ରକଟ
ଘଣ୍ଟ ନାଦ ଟିଣିଟିଣିକ
ବାଜେ ଦୁମୁ ଦୁମୁ ଦୁନ୍ଦୁଭି ମର୍ଦ୍ଦଳ
ବେଣୁ ବୀଣା ଅନାବେଣିକ ॥ ୭ ॥

ଛନ୍ଦ ଗ୍ମମର କଳସ ମନୋହର
ବିଚନ୍ଦ ରଥ ସାଜେଣୀକ
କରି ଘୂଂ ଘୂଂ ଚଳେ ନନ୍ଦିଘୋଷ
କମ୍ପାଇ ଦଏ ଧରଣୀକ ॥ ୮ ॥

ଗର୍ଜ୍ଜି ନାହିଁ ତର୍ଜ୍ଜି ଅଛୁ ସେ ପ୍ରକୋପେ
ବର୍ଜ୍ଜିଛୁ ପାତକ ଶ୍ରେଣୀକ
ପଲା ରୁ ଅଠର ନଳାଠାରୁ ବଳ
ନ ଆସିବୁ ଆଉ ଏଣିକ ॥ ୯ ॥

ଜଗତ କରତା ଚତୁର୍ବର୍ଗ ଦାତା
ଫିଟାଇ ଐଶ୍ୱର୍ଯ୍ୟ ଖଣିକ
ପ୍ରେମ ଚିନ୍ତାମଣି ଫପଡ଼ିକ ଆଣି
ଦାଣ୍ଡରେ ଦେଇଛୁ ବୁଣିକ ॥ ୧୦ ॥

ଦରଶନେ ଆଜ ଆନନ୍ଦ ଉଛୁଳେ
ଜେନ୍ଥୁ ଭାଷେ ଜମ୍ବୁ ବାଣୀକ
ଯାହା ମନେ ଯାହା ଅଛଇ ସେ ତାହା
ଜଣାଏଟି ଚନ୍ଦ୍ରାମଣିଙ୍କି ।। ୧୧ ।।

ଗଉର ଚରଣ ବୋଲେ ବାପଗ୍ରାଣ
ପକାଉଛୁ ଆଥ କାଣିକ
ମୋ ମରଣ ବେଳା ଜାଣି ଚକାଡୋଳା !
ଦେଖାଇବ ଏହ୍ନ ଠାଣି କ ।। ୧୨ ।।

**

* *

## କଳା ସିଂହ ! କାହିଁକି ଅଇଲୁରେ

### ଗୌର ଚରଣ ଅଧିକାରୀ

( ଊନବିଂଶ ଶତାବ୍ଦୀ)

[ ରାଗ-କାମୋଦୀ ]

କଳାସିଂହ ! କାହିଁକ ଅଇଲୁରେ
ଶ୍ରୀ ନୀଳ କନ୍ଦର ଛାଡ଼ି
ଭାଇ ଭଗ୍ନୀ ସଙ୍ଗେ ଯେକ କର ରଙ୍ଗେ
ରହୁଛୁ ସୁର୍ଣ୍ଣିଗ୍ର ବାଢ଼ି ।। ଘୋଷା ।।

ହଜାରେ ସୁଆର ରାନ୍ଧି ପରଶିଲେ
ତେବେ ନ ପୁରଇ ପେଟ
ଏଠାରେ ସପୁଆ ପଣସ କଦଳୀ
ଖାଇ ହୋଇଯିବୁ ମୋଟ ।। ୧ ।।

ଅରଗଲା ଗଲା ଯିବାକୁ ଚେଣିକ
ବ୍ରାହ୍ମଣଙ୍କୁ ଆଜ୍ଞା ନାହିଁ
ଏବେ ନାନା ଜାତି ଯୁବତୀ ଆସିଣ
ଲଦୁଛନ୍ତି ଖଜୁବାହି ।। ୨ ।।

ଇନ୍ଦ୍ର ଚନ୍ଦ୍ର ଦେବବୃନ୍ଦ ଆଜ୍ଞାକାରୀ
ବ୍ରହ୍ମା ପଢୁଥାନ୍ତି ବେଦ
ସେ ସୁଖ ନୋହିଲା ବୋଲି ଶୁଣୁଛୁ କି
ଛଗ ଛମାଲିଆ ପଦ ।। ୩ ।।

ବଡ ଦେଉଳରେ ବଡ ଘଣ୍ଟାମାଳ
ବଡ ରଙ୍ଗ ଧଡ଼ି ପିନ୍ଧା
ଏବେ ଭାଇ ଭଗ୍ନୀ ତିନି ଜଣ ଯା'କ
ଖମ୍ବରେ ହୋଇଛି ବନ୍ଧା ।। ୪ ।।

କର୍ପୂର ଚନ୍ଦନ ଚୂଆ ଚଉସମ
ନ ରୁଚିଲା ସେ ସୁବାସ
ଏବେ ଶ୍ରୀ ଅଙ୍ଗରେ ଅଙ୍ଗୁଳେ ବହିଲେ
ଲାଗିଛି ହଳଦୀ କଷ ।। ୫ ।।

ଯଡ଼ି ବଡ଼ି ଗଜା ଖଣ୍ଡଖଇ ଖଜା
ଏ ତୋତେ ନୋହିଲା ମିଠା
ମାଉସୀ ଦୁଆରେ ଭିଡ଼ି ଖୋଇବାଇଲୁ
ପାଉଁଶିଆ ପୋଡ଼ ପିଠା ।। ୬ ।।

ଘର ଘରଣୀଙ୍କ ନ'ଦାନକୁ ପରି
କଣ ଆସିଅଛୁ କଣ୍ଠ
ସେ କଥା ପାଶୋର ମୂଳଉଛୁ ଗାଳ
ତୁ ବଡ଼ ବିଷମ ଖଣ୍ଡ ।। ୭ ।।

ହେରା ଦିନ ପରି ରଥ ଭାଙ୍ଗିଗଲେ
ଠାକୁରାଣୀ ହୋଇ କ୍ରୋଧ
ତେବେ ପୁଣି ତୋର ଚେତା ପଶୁ ନାହିଁ
ଯାଇଛୁ ଗହ୍ୱର କାଦ ।। ୮ ।।

ଆନ ନାରୀ ପରି ନୁହନ୍ତି କମଳା
ଯେ ଯେ ନ ସହନ୍ତି ଝାନ୍ଧ
ଘଡ଼ିଏ ଉଛୁର ହେଲେ ଘଉଡ଼ିବେ
ଘରେ ପୂରାଇବେ ନାହିଁ ॥ ୯ ॥

ସେମାନ କହିବୁ ଗୋକୁଳ ନାରୀଙ୍କୁ
ଠାରିବୁ ନୟନ କୋଣେ
ବଂଶୀ ବଜାଇବୁ ମନ ମଜାଇବୁ
ଖୋଜାଇବୁ କୁଞ୍ଜ ବଣେ ॥ ୧୦ ॥

ନିଶ୍ଚୟେ ତୋହର ମନେ ପଡ଼ିଗଲା
ବୃନ୍ଦାବନେ ଗାଈ ରଖା
ଦ୍ୱାଦଶ ବନରେ ବିହାର କରିବୁ
ସଙ୍ଗେ ଧେନୁ ଗୋପ ସଖା ॥ ୧୧ ॥

ଐଶ୍ୱର୍ଯ୍ୟ ସମ୍ପତ୍ତି ନୀଳାଦ୍ରିରେ ସ୍ଥିତ
ବ୍ରଜେ ଏକା ପ୍ରେମ ଭାବ
ଜଣାଗଲା ତେବେ ଉଭୟ ପକ୍ଷରେ
ପ୍ରେମ ସେ ପରମ ଭାବ ॥ ୧୨ ॥

ଜଣା ଅଛି ମୋତେ ପୂର୍ବରୁ ତୋହର
ସ୍ୱଭାବ ଗୋଟିଏ ଅଛି
ଠେକ ଲେକ ଫେକ ଟିକିଏ ନରଖି
ଦାନରେ ଦସ୍ତା ଶ୍ରୀବଚ୍ଛି ॥ ୧୩ ॥

ହରଙ୍କୁ ମୋହିନୀ ରୂପେ ଭୁଲାଇଲୁ
ବ୍ରହ୍ମାଙ୍କୁ ବସ୍ତ୍ରାହରଣେ
ସୁନାଶିର ଗର୍ବ ଚୂନା କରିଦେଲୁ
ଗୋ ମତ-ଗିରି ଧାରଣେ ॥ ୧୪ ॥

ଦନ୍ତ କ୍ଷତ ଚୂତ ଶବରଣୀ ଦେଲା
ଖାଇଲୁ ତାର ଅଇଣ୍ଠା

ଶୋଇଲ୍ପ ଶେଯରେ ଶ୍ରୀବତ୍ସ ବ୍ରାହ୍ମଣ
ମାଇଲ୍ପ ପଦ୍ମ ଗୋଇଠା ॥ ୧୫ ॥

ଭଲ ଭଲ ଲୋକ ଦେଉଳକୁ ଗଲେ
ପଣ୍ଡା ମାରନ୍ତି ଘଉଡ଼ି
ଏବେ ନୀଚ ଲୋକେ ଦରଶନ କରି
ଝିଙ୍କନ୍ତି ରଥ ଦଉଡ଼ି ॥ ୧୬ ॥

ନୋହିଲେ କାହିଁକି ଭକତ ବତ୍ସଳ
ନାମ ଦୀନ ଜନ ବନ୍ଧୁ
ପତିତମାନଙ୍କୁ ଦରଶନ ଦେଇ
ଉଦ୍ଧରିଲୁ ଭବସିନ୍ଧୁ ॥ ୧୭ ॥

ନାନା ନଟକୂଟ ନବରଙ୍ଗ ଜାଣୁ
ଛଇଲ ନାଗର ହରି
ଇତର ଲୋକଙ୍କ ମହତ ସମ୍ଭାଳୁ
ଆପଣା ମହତ ସାରି ॥ ୧୮ ॥

ବଡ଼ ଲୋକ ପୁଅ ବୋଲି ସିନା ତୋତେ
କେହି ନ ବୋଲନ୍ତି କିଛି
ଭଉଣୀକି ଘେନି ଦାଣ୍ଡେ ବୁଲିବାର
କାହା ଘରେ ଦେଖାଅଛି ॥ ୧୯ ॥

ଗଦ୍ଧର ଚରଣ ବୋଲେ ପ୍ରଭୁ ପଣ
ଜଣାଗଲା ଏବେ ଆସ
ପତିତପାବନ ପତାକା ଉଡ଼ାଇ
ରତ୍ନ ସିଂହାସନେ ବସ ॥ ୨୦ ॥

**

**

# ବଡ଼ ଠାକୁରଙ୍କ

## ଗୌର ଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

[ରାଗ—ହଂସ ଧ୍ୱନି

ବଡ଼ ଠାକୁରଙ୍କ ସହୋଦର ହେ
ମୋ ଜଣାଣେ ଲୁହ କାଲ
ବଡ଼ଦାଣ୍ଡେ ବଡ଼ ଭୁଜକୁ ବସ୍ତାର
ବଡ଼ ଦେଉଳକୁ ଗ୍ଭଲ ॥ ଘୋଷା ॥

ବଡ଼ ପଣେ ବଡ଼ ଛଇକ ଦେଖାଅ
ପିନ୍ଧ ବଡ଼ ଧଣ୍ଡାମାଲ
ବଡ଼ ରଜା କର ଯୋଡ଼ ଡାକୁଛନ୍ତ
ତାଙ୍କ ଗୁହାର ନ ଟାଳ ॥ ୧ ॥

ବଡ଼ପଣ୍ଡା ବଡ଼ ସୁଆର ସେବକ
କଲେଣି ବଡ଼ ପଖାଳ
ବଡ଼ ଠାକୁରାଣୀ ରୋଷ ହେବେ ବଡ଼
ଏ କଥା ମନରେ ଭାଳ ॥ ୨ ॥

ବଡ଼ ପାବଛୁଆ ବଡ଼ ଅଲସୁଆ
ପଣ ଛାଡ଼ ଚତ୍‌କାଲ
ବଡ଼ ନୟନଙ୍କୁ କବା ଅଗୋଚର
ବଡ଼ ଦୁଃଖୀଙ୍କ ଜଂଜାଳ ॥ ୩ ॥

ବଡ଼ ସିଂହାରବେଶକୁ ଦରଶନ
କରିବାକୁ ମୋ କଟାଳ
ବଡ଼ ଅରକ୍ଷିତ ଗଉର ଚରଣ
ଭଜେ ଶ୍ୟାମ କାମପାଳ ॥ ୪ ॥

**

**

# ଅହେ ବିଶ୍ୱମ୍ଭର

## ଗୌର ଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

[ରାଗ—ଖରହର ପ୍ରିୟା]

ଆହେ ବିଶ୍ୱମ୍ଭର
ମୋର ଏ ଦୁରନ୍ତ ଦଶା ହର ॥ ଘୋଷା ॥

ଏ ଘୋର ସଂସାର ଦିଶୁଛି ଅନ୍ଧାର
ଅସ୍ଥିର ହେଉଛି ସଦା ପ୍ରାଣ
କୃପାସିନ୍ଧୁ ହରି ! ଶ୍ରୀଚରଣ ତରୀ
ଦାନରେ ଦାସକୁ କର ତ୍ରାଣ ॥ ୧ ॥

ହିଂସା କୁଟ ଦ୍ୱେଷ ଆଦି ନାନା ଦୋଷ
ଅଶେଷ କଳୁଷ ମୁଁ ବହିଛି
ମାୟା ମୋହ ଦ୍ୱନ୍ଦେ ପଡ଼ି ନିରାନନ୍ଦେ
କଲବଲ ଏକା ହେଉଅଛି ॥ ୨ ॥

ଅବଳର ବଳ ଦୁଃଖୀର ସମ୍ବଳ
ଶରଣ ବତ୍ସଳ ଭବତ୍ରାହି
ମହାବାହୁ ମହାମହିମାବନ୍ତ ହେ !
ସଦା ସଙ୍କଟରୁ କର ତ୍ରାହି ॥ ୩ ॥

ପ୍ରଭୁ ଆଦି ମୂଳ ! ତୁମେ ଅନୁକୂଳ
ହୁଅ ଯା'ରେ ତାର କିବା ଭୟ

ଦୁବଟାକୁ ଦାରୁ କର ମହାମେରୁ !
ଶୁଣିଛୁ ପୁରାଣ ଲୀଳାମସ୍ତ ॥ ୪ ॥

ନୀଳାଦ୍ରି ସାମନ୍ତ ! କେତେ ହନ୍ତସନ୍ତ
ହେବ ଆଉ ଏ କଂକାଳେ ପଡ଼ି
ବାରେ ଅନୁକମ୍ପା ନ ହେଉଛୁ କମ୍ପା
ଚଜ ମଣୁଅଛୁ ଷୋଳ ଘଡ଼ି ॥ ୫ ॥

ଏଡେ ପ୍ରଭୁ ହୋଇ ନ ଶୁଣ ଗୋସାଇଁ
ଭୃତ୍ୟର ଗୁହାରି ଡାକ ଥରେ
ଭବ ଦୁର୍ବାସନା ଅନର୍ଥ ଭାବନା
ପ୍ରବଳ ହେଉଛି ହୃଦୟରେ ॥ ୬ ॥

ଯାମଳା ଭଞ୍ଜନ ଗରବ ଗଞ୍ଜନ
ମାନସ ରଞ୍ଜନ ବ୍ରଜବନ୍ଧୁ
ଅଭୟ ଦାୟକ ଆଶିଷ ନାୟକ
ଇଷ୍ଟମୟ ହରି କୃପାସିନ୍ଧୁ ॥ ୭ ॥

ସ୍ୱାମୀ ଜନାର୍ଦ୍ଦନ ଶ୍ରୀମଧୁସୂଦନ
ଆଶା ପୂର୍ଣ୍ଣ କର ଦଇତାରି
ଗଉର ଚରଣ ଦୁଷ୍ଟ ଆଚରଣ
ଧ୍ୱଂସି ଦିଅ ପାପ-ତାପ ହରି ॥ ୮ ॥

**

**

# ଦୀନବନ୍ଧୁ ଦୂରିତ ନାଶନ ହେ

## ଗୌର ଚରଣ ଅଧିକାରୀ

( ଊନବିଂଶ ଶତାବ୍ଦୀ )

[ ରାଗ-ସାବେରୀ ]

ଦୀନବନ୍ଧୁ ଦୂରିତ ନାଶନ ହେ
ଶ୍ରୀ ଦେବାଧି ଦେବରାଜେ
ଅରକ୍ଷ ରକ୍ଷଣ ବୋଲି ପରା ତୁମ୍ଭ
ମହିମା ତ୍ରିଭୁବନ ବାଜେ ॥ ଘୋଷା ॥

କର ପଦ୍ମ ଯୋଡ଼ି ସ୍ତୁତି କରୁଥାନ୍ତି
ବ୍ରହ୍ମାଦି ଦେବ ସମାଜେ
ତେତେଡ଼େ ବଡ଼ପଣ କେ ନେଲା ଚଳାଇ
ଫେଡ଼ି କହୁନାହିଁ ଲାଜେ ॥ ୧ ॥

ଯେଉଁ ଶ୍ରୀ ଭୁଜକୁ ରଥାଙ୍ଗ କମଳ
ଶଙ୍ଖ ଗଦାବର ସାଜେ
ସେ ଅସ୍ତ୍ର ଛଡ଼ାଇ କେ ନେଇ ଗଲାକି
ତୁଚ୍ଛ ହାତେ ଅଛ ବସିଜେ ॥ ୨ ॥

ଯେବଣ ଚନ୍ଦନ ଅର୍ଗଳି ଗଳିବା
ପାଇଁ ମନା ଦେବରାଜେ
ଏମନ୍ତ ଶ୍ରୀରତ୍ନ ସିଂହାସନ ଅଧି-
କାରୀ କେ ଦେଲା କି କାର୍ଯ୍ୟେ ॥ ୩ ॥

ବଡ ଠାକୁରଙ୍କୁ ସ୍ନାନ କରିବାକୁ
କ୍ଷମ କେ ଶ୍ରୀକ୍ଷେତ୍ର ରାଜ୍ୟେ

କମ୍ପା ନ କହୁଛ ମଉନେ ରହୁଛ
ଦେଖି ମୁଁ ହୁଏ ଥକା ଯେ ।। ୪ ।।

କେତେ ସୁପ୍ରୟତ୍ନେ ଧାଇଁ ଧାଇଁ ଧଣେ
କଲା ଶ୍ରୀମୁଖ ବଚନେ
ଗୌର ଦ୍ୱିଜଠାରେ କେବଳ ଅହନ୍ତା
ଆଜ୍ଞା ହେଉ ଦେବରାଜେ ।। ୫ ।।

**

* *

# ଲୀଳାମୟ

## ଗୌର ଚରଣ ଅଧିକାରୀ

( ଊନବିଂଶ ଶତାବ୍ଦୀ )

[ ରାଗ-ଖମ୍ବାବତୀ ]

ଲୀଳାମୟ ! ଏ ଲୀଳା ତୁମ୍ଭର ହେ
କେମନ୍ତେ ବୁଝିବ ମୁହିଁ
ହର ବ୍ରହ୍ମାଙ୍କୁ ଯେ ଅଟ ଅଗୋଚର
ଅନନ୍ତ ଅନ୍ତ ନ ପାଇ ।। ଘୋଷା ।।

ଇନ୍ଦ୍ର ବରୁଣ କୁବେର ଆଦି ଯେତେ
ଛନ୍ତି ଦଶଦିଗ ପାଳେ
ବାଣୀ, ରମା, ଉମା ତୁମ୍ଭର ମହିମା
ଜାଣି ନ ପାରିଲେ ତାଳେ ।। ୧ ।।

କୋଟି କୋଟି ଋଷି କଲେଣ କଲେଣ ବସି
ଧ୍ୟାନେ ହେଉଛନ୍ତି ବଶା

ମୁଁ ଗ୍ଲର ଅଧମ କି କଣ ବୁଝିବ
ତୁମ୍ଭ ମାୟା ବୁଝାମଣା ।। ୨ ।।

କାହାକୁ କେତେ କି ନ କରୁଛ ହର
ଦସ୍ୟୁଙ୍କୁ ସାମନ୍ତ ମଣି ।
ମାରିବା ତାରିବା ଦୁଇ କଥା ଭଲ
ବହୁଛ ସାରଙ୍ଗ ପାଣି ।। ୩ ।।

ଶମ୍ଭୁ ମଦନଙ୍କୁ ଏକଗତି ଦଅ
ଏତ ବଡ଼ ଆଚମ୍ବିତ
କାହାକୁ ଅଚଳା ବିଭୂତି ସମର୍ପ
କାହାକୁ କର ଅର୍ଥିତ ।। ୪ ।।

କେଉଁ ଗୁଣ ବା ତୁମ୍ଭର ବାହୁନବ
ଆହେ ମହାଭୁଜ ଟେକା
କେ ପିନ୍ଧି ବୁଲୁଛି ଖଣ୍ଡିଆ ଦରଷ
କାହା ମୁଣ୍ଡେ ସୁନା ଠେକା ।। ୫ ।।

କେହୁ ଦାନା ପାଇଁ ହୁଏ ହାଇଁ ହାଇଁ
କେ ଭୁଞ୍ଜଇ ଶାଳି ଅନ୍ନ
ଝଙ୍ଗ ମଣି ଶିଷ୍ୟ ରଙ୍ଗ ଗୌର ଦୁଃଖ
ନ ଶୁଣି ମୁଦଛ କର୍ଣ୍ଣ ।। ୬ ।।

**

⁕⁕

# ଦୁଃଖନାଶନ

## ଗୌର ଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

[ରାଗ—ପ୍ରଭାତୀ]

ଦୁଃଖନାଶନ ଗରୁଡ଼ାସନ ହରି !
ଦୁଃଖ ଜଣାଇବି କାହାକୁ
ଦୀନନାଥ ଆଉଁ ଅନ୍ଧାର ଘୋଟୁଛୁ
ଏ ନନ୍ଦାଟି ଚଉବାହାକୁ ॥ ଘୋଷା ॥

ଚନ୍ଦ୍ରା-ନାବ ପରେ ବସାଇ କରି
ଠେଲିଦେଲ ଯେଣୁ ଯାଉଛୁ ସରି
ରଖ ରଖ ବୋଲି କାହାକୁ ଡାକିବି
ଶ୍ରବଣତ କଲ ଲୁହାକୁ ॥ ୧ ॥

ସୁଦାମା-ଦାରିଦ୍ର୍ୟ ଭଞ୍ଜନ କାରି
ରଖିଛ ପାଣ୍ଡବେ କୁରୁ ସଂହାରି
ଜଳର ମଧ୍ୟରେ ଗଜକୁ ରଖିଲ
ଛେଦି ପକାଇଲ ଗ୍ରାହାକୁ ॥ ୨ ॥

ଅଜାମିଳ ନାମେ ଯେ ମହାପାପୀ
ତରିଗଲା ପୁତ୍ର ନାମକୁ ଜପି
ନାଚେକ ମାରିଲ ଶ୍ରୀବତ୍ସ ବ୍ରାହ୍ମଣ
ହୃଦରେ ବହିଲ ତାହାକୁ ॥ ୩ ॥

ବନର ହରିଣୀ ଚନ୍ଦ୍ରବା ମାନେ
ଘନେ କୃପା କଲ ପରା ସାକ୍ଷାତେ

ଅର୍ଷିତ ଡ଼ାକକୁ ନ ଶୁଣୁଛ ଲଙ୍କା
ନୋହୁବ ନ ଲକ୍ଷ୍ମୀ ନାହାକୁ ॥ ୪ ॥

ଯେଉଁ ନାମ ଧର୍ ପବନ ସୁତ
ଡେଇଁ ସମୁଦ୍ର ଆଣିଲା ସଙ୍କେତ
ଶଙ୍କର ଚରଣ ସେ ପାଦେ ଶରଣ
ହର ବ୍ରହ୍ମା ଚନ୍ଦ୍ର ଯାହାକୁ ॥ ୫ ॥

**

**

# ଶ୍ରୀପତି ମୋ ବିପତ୍ତିକି

**ବାଙ୍କା ଦାସ**

(ଊନବିଂଶ ଶତାବ୍ଦୀ)

ଶ୍ରୀପତି ମୋ ବିପତ୍ତିକି ହାରିବ କି ପାରିବ ହେ
ଆଶ୍ରିତ କଲ ଜନକୁ ତାରିବ କି ମାରିବ ହେ ॥୦॥

ଜରେ ତାରିବାରୁ ଜଣି   କରିଛି ଭରସା ଶ୍ରୀ
ହରଣୀ ତାରିଛ ବୋଲି
ଥରିବ କି କରିବ ହେ ॥୧॥

ଦରିଦ୍ର ଦୋଷ ମୋହର   ହରି ନପାରିଲେ ହରି
ଦରିଦ୍ର ବାଙ୍କା ବୋଲଇ
ଗରିବ କି କରିବ ହେ ॥୨॥

**

**

# ଦୀନବାନ୍ଧବ ହେ

## ବାଙ୍କା ଦାସ

(ଊନବିଂଶ ଶତାବ୍ଦୀ)

[ ରାଗ–ସାବେରୀ ]

ଦୀନ ବାନ୍ଧବ ହେ ! କେତେ ଦେଲ ମୁଁ ନ ଦେଲ ?
ଚୈତନ୍ୟ କର ଡାକିଲ ପ୍ରକାର
ଠକ ଦେଲ ମୁଁ କି କଲି ॥ ଘୋଷା ॥

ତାରିଛ କଣ୍ଟକ ମାରି ତା ଅଙ୍କ
ସ୍ୱର ସେ ହେବାରୁ ଘାଲି
ବାଜାବଜା ପାପୀ ରାଜା ଅଜାମିଳ
ସଜାରୁ ହୋଇଲା ଖାଲି ॥ ୧ ॥

ଉର ମରୁଥିଲା ହର ଯେବନଗଲା
ଡରିଗଲା ହର ବୋଲି
ଗଞ୍ଜାଇ ଭୁଞ୍ଜାଇ ଗଞ୍ଜାଇ ମାରୁଛ
କେଉଁ ଅପରାଧ କଲି ॥ ୨ ॥

ଅନ୍ଧ ବିପ୍ରକୁ ଚକ୍ଷୁଦାନ ଦେଲ ତା-
ପୁତ୍ର ସଙ୍ଗେ ଖେଳ ବାଲି
ଅଧମ ଦାସକୁ ଉଦ୍ଧରିଲ ନାହିଁ
ବଧ ହେଲି ବୁଲି ବୁଲି ॥ ୩ ॥

ପିଲାଟି ଦିନରୁ ଡକା ପକାଉଛି
ଫିକା ହୁଅନ୍ତାଣି ନାଲି
ବଙ୍କା ବୋଲେ ଚକା- ନେତ୍ର ନ ଜାଣଇ
ଏଡ଼େ ଡକାଇତ ବୋଲି ॥ ୪ ॥

**

**

# ଆହେ ପ୍ରଭୁ ଜଗନ୍ନାଥ

## ରଘୁନାଥ ଦ୍ୱିଜ

(ଊନବିଂଶ ଶତାବ୍ଦୀ)

[ ରାଗ-ଖରହରପ୍ରିୟା ]

ଆହେ ପ୍ରଭୁ ଜଗନ୍ନାଥ
ବାରେ ଫେଡ଼ ମୋ ଆରତ
ଦୁଃଖ ଦେଖି ମହାପ୍ରଭୁ
କଷ୍ଟେ ଦେଇଛ କି ହସ୍ତ ।।ଘୋଷା।।

ଗଜ ଡାକିଲା ଜଳରେ
ତାହାଂ ଶୁଣିଲ କର୍ଣ୍ଣରେ
ଚକ୍ରକୁ ପେଶିଲ ଖରେ
ଗ୍ରାହ ପ୍ରାଣ କଲ ହତ ।। ୧ ।।

କୁରୁପତି ସଭାତଳେ
ଦ୍ରୌପଦୀ ଆତଙ୍କ କାଳେ
କୋଟି ବସ୍ତ୍ର ଦେଇ ହେଲେ
ରଖିଲ ତାର ମହତ ।। ୨ ।।
ଆହୁରି କଥାଏ ପୁଣି
ଆତଙ୍କେ ଡ଼ାକେ ମୃଗୁଣୀ
ବ୍ୟାଧକୁ ଜୀବନେ ହାଣି
ଫେଡ଼ିଲ ତାର ଆରତ ।। ୩ ।।

ଅତି କଷ୍ଟେ ଡାକେ ହରି !
ଦୁଃଖ ନଗଲା ମୋହରି
ବାରେ ଶୁଣ ମୋ ଗୁହାରି
କହେ ଦ୍ୱିଜ ରଘୁନାଥ ।। ୪ ।।

**

✳✳

# ଜୟ ଜଗବନ୍ଧୁ

## ଗୋପୀନାଥ

( ଊନବିଂଶ ଶତାବ୍ଦୀ )

[ ରାଗ-ଶୁଦ୍ଧ ସାବେରୀ ]

ଜୟ ଜଗବନ୍ଧୁ                ଯଦୁକୁଳ ଇନ୍ଦୁ
ଜୟ ଯାମଳା ଭଞ୍ଜନ
ଜୟ ଜନାର୍ଦ୍ଦନ                ଜଗତ ଜୀବନ
ଜୟ ଯଶୋଦା ନନ୍ଦନ ।। ଘୋଷା ।।

ସତ୍ୟରେ ମର୍ତ୍ତ୍ୟରେ                ନରହରି ! କରେ
ବଧିଲ ହିରଣ୍ୟ
ପ୍ରହ୍ଲାଦେ ଇନ୍ଦ୍ର-                ପଦକୁ ଗୋବିନ୍ଦ
ବଳେ କରିଛ ପ୍ରଦାନ ।। ୧ ।।

ତ୍ରେତୟା ଯୁଗରେ                ରାମ ଅବତାରେ
ପିତୃ ସତ୍ୟେ ଗଲ ବନ
ଲଙ୍କାରେ ରାବଣ                ବଧିଲ ଆପଣ
ଭକ୍ତକୁ କଲ ରାଜନ ।। ୨ ।।

ଦ୍ୱାପରେ ଗୋପରେ                କୃଷ୍ଣ ଅବତାରେ
ମୋହିଲ ଗୋପୀଙ୍କ ମନ
କଂସ କେଶୀ ନାଶି                ଭୂ-ଭାର ଉଶ୍ୱାସି
ରାଜା କଲ ଉଗ୍ରସେନ ।। ୩ ।।

କଳି ଯୁଗେ ହରି                ବିଜେ ନୀଳଗିରି
ଶ୍ୱେତ ପୀତ କୃଷ୍ଣ ବର୍ଣ୍ଣ
କମଳ ପଦ୍ମରୁଁ                ବହେ ମକରନ୍ଦ
ମଧୁକର ଗୋପୀ ମନ ।। ୪ ।।

✳✳

**

# ଚକାନୟନକୁ

## ଚନ୍ଦନହଜୁରୀ (ଗୋଖିଟୁଣ୍ଡିଆ)

[ ଊନବିଂଶ ଶତାବ୍ଦୀ ]

( ରାଗ-ରସକୁଲ୍ୟା )

ଚକାନୟନକୁ ପତିତ କେହି
ଚକାଇ ଖର ନିଶ୍ୱାସ ପକାଇ
ଡକା ପକାଇ ଗରୁଡ଼ ପଛରେ
ବକାର ମୋ ଆର୍ତ୍ତି ଶୁଣ ସତ୍ୱରେ ହେ
ଢକ୍‌କା ବାଜୁଛି ମହିମା ହେ
ଠକାର କର କର୍ଣ୍ଣେ ଶିର ନ ଶୁଣ
କାହିଁକି ବଠସ କର୍ମୀ ହେ ॥ ୧ ॥

କଷ୍ଟ ହରଣୀ ଦ୍ରୌପଦୀ ବିପତ୍ତି
ହର ହରିଛ ପଶ୍ଚ ଡେଗ ଶ୍ରୁତି
ଦରିଦ୍ର ସୁଦାମାକୁ କୋଟି ନିଧି
ପରିପୂର୍ଣ୍ଣେ ଦେଲ କୃପା ବାରିଧି ହେ
ଧରି ଯା' ମହିମା ଚରଉ ହେ
ସରିତ ଯାଉଛି ହରି ! ଆଉ ଥରେ
ନ ଚାହିଁଲେ କୃପା ନେଦେ ହେ ॥ ୨ ॥

ଆଜାନୁବାହୁ ! ମୁଁ ପତିତ ଜଣେ
ଅଜାମିଳଙ୍କୁ ଦଳି ସହସ୍ର ଗୁଣେ
ଲଜ୍ଜା ହରି ନ ତାରିଲେ ନିକର
ଧ୍ୱଜାଚକ୍ରରୁ ଦହନ ଉଦ୍ଧାର ହେ

ମଞ୍ଚାରେ ମୁ ଏହା ଭାବେ ହେ
ବଜାଇ ଜୟ ଆର୍ତ୍ତତ୍ରାଣ ଡିଣ୍ଡିମ
ବଜାଇ ଦେଉଛ ଏବେ ହେ ॥ ୩ ॥

ପିତାମାତା ସେବା ମୋର ବଭଙ୍ଗ
ଲିତାକୁ ଲିତା ମୋ ଅସତସଙ୍ଗ
ଗୀତାରେ ଅବଗାହ ନାହିଁ ବନେ
ଗୀତା ଭାଗବତ ନ ଶୁଣେ କର୍ଣ୍ଣେ ହେ
ପୀତାମ୍ବର ଚନ୍ଦ୍ରେ ଚନ୍ଦ୍ର ହେ
କି ତାପ ଚିତ୍ରଗୁପ୍ତଙ୍କୁ ଚଗାଇବ
ମୋ ଅନ୍ତକାଳେ ଯେମନ୍ତ ହେ ॥ ୪ ॥

ବଟପୁଟ ବାସୀ ଆରତତ୍ରାଣ
ଘଟ ଘଟକେ ରହ ସବୁ ଜାଣ
ଖଟନ୍ତ ଯେଉଁ ଚରଣେ କମଳା
ହଟ କର ମୋ ଦୁର୍ଦ୍ଦଶା ନଗଲା ହେ
ନଟବର ବେଶ ଧାରୀ ହେ
ଝଟତିରେ ପ୍ରଭୁ ଶ୍ରୁତିକେର ଶୁଣ
ଏ ଦୀନଜନ ଗୁହାର ହେ ॥ ୫ ॥

ପାଣ୍ଡୁ ପ୍ରିୟ ହେ ଦଣ୍ଡୁଛ କ ଦୋଷେ
ଦାଣ୍ଡକୁ ଏ କଥା କେମନ୍ତ ବଶେ
ଗ୍ରୁଣ୍ଡରେ ମଇନ ଛଲେ ଆପଣ
କାଣ୍ଡକରେ ନେଲ ବାଲୀର ପ୍ରାଣ ହେ
ତାଣ୍ଡବ ନୃତ୍ୟ କାରୀଙ୍କି ହେ
ଖଣ୍ଡ କରଦେଲ ବିଷ୍ଣୁକୁଟ ମାୟା
ଲଗାଇ ଦେଇ ଭେଳକ ହେ ॥ ୬ ॥

ଆରତ କେହ ନାହିଁ ମୋର ପ୍ରଭୁ
ଆରତ ତ୍ରାଣ ପରତ୍ରାଣ ସବୁ

ସାରଥୀ ହୋଇ ପାର୍ଥ ରଥେ ଶ୍ୟାମ
ଭାରତ ଯୁଦ୍ଧେ ଭରଢଆ ଢ଼ମ ହେ
ସାର ଘଣ୍ଟା ଘୋଡ଼ାଇଣ ହେ
ମାର ପିଅର ତା ପରାଣ ରଖିଣ
ରୁହାଇଛ ବଡ଼ ପଣ ହେ ॥ ୭ ॥

ପକ୍ଷ ହୀନ ଜନ-ରକ୍ଷଣ ବୋଲି
ଲକ୍ଷଣ ଅଗ୍ରଜଙ୍କୁ ଆଶ୍ରେ କଲି
ପକ୍ଷ ଦାୟକ ହେ ଲକ୍ଷଣ ସୁଖ
ଦକ୍ଷ ପଣେ ରଖିବାରେ ନିରକ୍ଷ ହେ
ଲକ୍ଷ କେ ତୁମ୍ଭର ଅଛୁ ହେ
ବକ୍ଷ ବିଦାରିଛ ନକ୍ଷେ ହଣଶ୍ୟର
ପ୍ରହଲ୍ଲଦ ମାନ ଇଚ୍ଛୁ ହେ ॥ ୮ ॥

ଧଣ୍ଡାମାଲ ବୁହା ଦୁର୍ଦ୍ଦଶା ରାହୁ
ଚଣ୍ଡାଳ ଗ୍ରାସୁଅଛୁ ଗୃହୁଁ ଗୃହୁଁ
ଭଣ୍ଡାରେ ଖଣ୍ଡା ନାହିଁକି ମଣିମା
ଗଣ୍ଡାକର ହଣୁନାହିଁ ମହିମା ହେ
ହଣ୍ଡା ମୋ ଯାଉଛୁ ଫାଟି ହେ
ଅଣ୍ଡା କରି କୃପାଜଳ ବୃଷ୍ଟି କର
ମୋ ଚଉ ସ୍ଥୁତକ ପାଟି ହେ ॥ ୯ ॥

ମନ୍ଦରଧର ନୀଳଗିରି ବାସୀ !
କନ୍ଦର ବାସୀ ପ୍ରାନ୍ତେ ଅଛୁ ବସି
ପନ୍ଦର ନେନ୍ଦ୍ର ଧାତା ପୁରନ୍ଦର
ବନ୍ଦନ କରନ୍ତି ଯେଉଁ ପଦ୍ମର ହେ
ଛନ୍ଦଚୂଡ଼ ଦେବଙ୍କେ ହେ
ନନ୍ଦନନ୍ଦନ ଶ୍ରୀ ଚରଣାର ବନ୍ଦେ
ଚନ୍ଦନହନ୍ଦୁଜ୍ଞା ଭନେ ହେ ॥ ୧୦ ॥

**

**

# ଆରେ ପାପ ଈକ୍ଷଣ

## ଚନ୍ଦନହଜୁରୀ (ଗଞ୍ଜାମ ଖଣ୍ଡିଆ)

( ଊନବିଂଶ ଶତାବ୍ଦୀ )

ଆରେ ପାପ ଈକ୍ଷଣ କୃତାର୍ଥ ହେବୁ ଜାଣ
ବଡ ଶୃଙ୍ଗାର ବେଶ ଦେଖି
ଜଗତେ ନାହିଁ ତାର ତୁଳନାକୁ ସମ୍ଭାର
ଦେବେ ଯା ନରେଖିଣ ସୁଖୀ
ରେ ପାପନେତ୍ର
ଚଳ ଭ୍ରୂ ନୀଳାଚଳେ ଦେଖି ଚପଳ ତୋଳେ
ସୃଷ୍ଟିକୁ କରିବୁ ପବିତ୍ର ରେ
ପାପ ନେତ୍ର ॥ ୧ ॥

ଖଗୋଳକୁ ଆବୋର ତ୍ରିମୂର୍ତ୍ତି ଶୋଭା ଘେର
ରହିଛ ଚନ୍ଦ୍ରାତପ ସାର
କ୍ଷେତ୍ରମାନେ ଯହିଁ ଚନ୍ଦ୍ରକ ରୂପ ବହି
ଦେଖାନ୍ତି ସ୍ୱଗୁଣ ବେଭାର
ରେ ପାପନେତ୍ର
ନରେଖ ତାର ତଳେ ସ୍ତବ୍ଧ ଚନ୍ଦ୍ରିକା ଢଳେ
କମ୍ପାଇ ଦିଏ ସର୍ବ ଗାତ୍ର
ରେ ପାପ ନେତ୍ର ॥ ୨ ॥

ତୁଳସୀ ବେଢ଼ ତାର ତଳେ ଜିବଲୀ ଘେର
ଯେସନେ ଜଳାନଳ ଶିଖ

ସହସ୍ର ଦିବ୍ୟ ଜ୍ୟୋତି ମଣିଏ ପ୍ରକାଶନ୍ତି
ସ୍ୱାଗ ଚିତାକୁ ଲକ୍ଷ୍ୟ ରଖ
ରେ ପାପ ନେତ୍ର
ଦୁଇ ପାବୁଣେ ଚୋର ଶୋଭା ରାଶି ଭଣ୍ଡାର
ଅଳକା ପନ୍ତିକ ବିଚିତ୍ର
ରେ ପାପନେତ୍ର ।। ୩ ।।

ଚୁମ୍ବିଛ ଚକା ଆଖି ଯାହା ନେତ୍ର ନିରେଖି
କୋଟିଏ ସିଦ୍ଧ ମୋକ୍ଷ ଲଭି
ପାପୀ ତାପ ହକାର ଯାଚ ମୁକତି ଭବ
ନରତେ ଅପଲକେ ସୁଖୀ
ରେ ପାପନେତ୍ର
ତାଂ ମଟରେ ଧବଳ ତଳକ ଇନ୍ଦୁ ତୁଲ
ବୀର୍‌କ ବେଷ୍ଟିତ ନକ୍ଷତ୍ର
ରେ ପାପନେତ୍ର ।। ୪ ।।

ନାସାବରରେ ଝୁମ୍ପା ବିକାଶେ ଅନୁକମ୍ପା
ଭକତେ ଭକ୍ତ ପରଶଇ
ବେଢ଼କୁ ସାତରଙ୍ଗ ବିଜୁଳିର ତରଙ୍ଗ
ମରୁଆ ଗନ୍ଧ ପ୍ରକଟଇ
ରେ ପାପନେତ୍ର
ଦୁଇ ନୟନ ମାଝେ ଜୀବ ବ୍ରହ୍ମ ସମାଜେ
ମାଳା ସ୍ୱରୂପ ଏହି ଚିତ୍ର
ରେ ପାପନେତ୍ର ।। ୫ ।।

ଶିର କପଡା ଧଡ଼ି ରହିଛି ତଥି ଜଡ଼ି
ପାଖେ କୁଣ୍ଡଳେ ବିରାଜନ୍ତି
ସିନ୍ଦୁ ସନ୍ଧରେ ଥିବା ଦୁଇ ମକର ଜିବା
ପାବୁଣେ ଚକିତେ ଗ୍ରହାନ୍ତି
ରେ ପାପନେତ୍ର

ରଙ୍ଗା ଅଧର ଶୋଭା ପଙ୍କ ଅନଳ ପ୍ରଭା
ବେଢ଼ିଛୁ ଅଧର ସୁଚନ୍ଦ
ରେ ପାପନେନ୍ଦ ॥ ୬ ॥

ବାମ ନାସାରେ ଗୁଣା ଶିଖି ନାଚକୁ ଜଣା
ଦମ୍ଭଣା ଝମ୍ପା ଝଲ ଝଲ
ଘନ ସାର ଢଳକ ଆବୋଶଛନ୍ତୁ ଦେଖ
ଯେସନେ ଧୀରଚଣ୍ଡ ଟମଳ
ରେ ପାପନେନ୍ଦ
ଧାମୀଙ୍କ ଚନ୍ଦ୍ରା ସାର ଏହୁ ଲପନ ସାର
ଭକତ ଜନଙ୍କର ଛନ୍ଦ
ରେ ପାପନେନ୍ଦ ॥ ୭ ॥

ଦୁଇ କର କମଳେ କର ପଲ୍ଲବ ବରେ
ପାଞ୍ଚ ସ୍ୱରଆ ଝୁଲୁ ଥାଇ
ପ୍ରପଞ୍ଚ ନାଶିବାକୁ ପାଞ୍ଚ ପାଞ୍ଚଣତାକୁ
ସିଂହାଗ୍ରୀ ଖଞ୍ଜଇ ନଠାଇ
ରେ ପାପନେନ୍ଦ
ଏହୁ ଶୋଭାକୁ ଲୋଭା ବିଲକ ସଙ୍ଗଦେବା
ଦେବାଧି ଦେବଗ୍ରାଜ ବନ୍ଦ
ରେ ପାପନେନ୍ଦ ॥ । ॥

ମଟ୍ଟି ତୁଳସୀ ଦଳ ଗଣ୍ଡ ମଣ୍ଡା ଅଧର
ଅଧର ନୀଳ ଗଣ୍ଡ ସ୍ଥଳେ
ସପତ ଋଷି ଯେହ୍ନେ ବସି ରତ୍ନକାସନେ
ଚକଢ ହ୍ଵବନ ବହ୍ନଳେ
ରେ ପାପନେନ୍ଦ
ଖଣ୍ଡ ଆଧାର କଶ ସଶକୁ ସଶ ସର
ଲମ୍ବିତ ମାଳା ସୁବିଚନ୍ଦ
ରେ ପାପନେନ୍ଦ ॥ ୯ ॥

ମହାବାହୁ ଭରସା କଶ ଏମନ୍ତ ଭୂଷା
ଭୁଜପସ୍ତର ତଳେ ଥାଇ

କହୁଛି ଧନ୍ୟ ମୁହିଁ  ଚରଣ ତଳ ଗୁହିଁ
ପ୍ରଭୁଙ୍କ କୋଳେ ଘେନଛଇଁ
ରେ ପାପନେନ୍ତ
ବାରହାଢଆ ଧଣ୍ଡା  ଲୁହେଁ ସେ ଧାର ଖଣ୍ଡା
ମାନ୍ତକ ପରେ ଅଘ ଗାନ୍ତ
ରେପାପନେନ୍ତ ।।୧୦ ।।

ହୃଦସ୍ଥ କଉସ୍ତୁଭ  ପ୍ରାପ୍ତୁ ପଦକ ଖବ
ବହ୍ନଣ ଗ୍ରୁଡକ ଫୁଲଇ
କହେ ମୁଁ ଶୋଭାସାର  ତୁଳନା ନାହିଁ ମୋର
ତଳକୁ ଜଡ଼ି ଝୁଲୁଥାଇ
ରେ ପାପନେନ୍ତ
ସୁନା କଷା ବସଣି  ଶୋଭାବଳୀକୁ ଜିଣି
କମାଣି କରଅଛୁ ଚନ୍ତ
ରେ ପାପନେନ୍ତ ।। ୧୧ ।।

ତା' ମଧ୍ୟେ ସ୍ବାମୀକର  ଝୋବା ଝୁଲ ନକର
କହନ୍ତ ଶୁଣ ପାପୀ ଜନେ
ଏହୁ ଚରଣ ସାର  ତଳକୁ ଆଶ୍ରା କର
ବଞ୍ଚିବ ଭବ ପ୍ରଭଞ୍ଜନେ
ରେ ପାପନେନ୍ତ
ନାହିଁ ଆନ ଭରସା  ନିଜଗତର ଏ ଆଶା
ତାରଣେ ସମର୍ଥ ବନ୍ଧନ୍ତ
ରେ ପାପନେନ୍ତ ।। ୧୨ ।।

କୁରୁବକ ନଆଲୀ  ମାଳତୀ ଚମ୍ପା କଳୀ
ଦମ୍ଭଣା ତଗର କେତକୀ
ଖଞ୍ଜିଣ ଯତନରେ  ଦ୍ୱାଦଶ ଅଳଂକାରେ
ବୋଲନ୍ତ ଜଗତେ ବିବେକୀ
ରେ ପାପନେନ୍ତ

ଅରେ ବଳୋକ ଦୂରୁ   ଅଚଳ ମହାମେରୁ
ନାହିଁ ନଥିବ ନିଜଗତ
ରେ ପାପନେତ୍ର ।। ୧୩ ।।

ରୁଷିଆ ରହୁ ଦୂରେ   ଚନ୍ତଇ ନେତ୍ର ସ୍ଥିରେ
ଯେହୁ ବେଶ ବଡ଼ ଶୃଙ୍ଗାରକୁ
ଚନ୍ଦ୍ରବା ମାନେ ମନେ   ଶୀତଳ ପ୍ରାଣ ଯେହ୍ନେ
ବରଷା ନାଶେ ଅନଳକୁ
ରେ ପାପନେତ୍ର
ରାଧାନାମ ଅଂକିତ   ମହାଭାବ ଜଡ଼ିତ
ରଚନା ଅଟେ ଅପ୍ରାକୃତ
ରେ ପାପନେତ୍ର ।।୧୪।।

ଖଣ୍ଡୁଆ ତଳେ ରଖି   ଏକୁ ଆରେକ ଦେଖି
ନୀଳାଦ୍ରି କେଶଗ୍ଧ ମଣ୍ଡନ୍ତି
ଶୟନ ସୁଖ ସାର   ଏ ବେଶ ମନୋହର
ପିନ୍ଧଣ ସୁଖେ ପହୁଡ଼ନ୍ତି
ରେ ପାପନେତ୍ର
ମୋ ନେତ୍ର ପଟେ ଲେଖି   ହେଉ ନିରତ ସୁଖୀ
ଚନ୍ଦନ ହୃଜୁସ୍ତ ଭଣିତ
ରେ ପାପନେତ୍ର ।। ୧୫ ।।

**

**

# ପ୍ରଭୁ ନୀଳାଦ୍ରି ବିହାରୀ

## ଦିବ୍ୟସିଂହ ଦେବ ମହାରାଜା

[ଊନବିଂଶ ଶତାବ୍ଦୀ]

(ରାଗ-ସାବେରୀ)

ପ୍ରଭୁ ନୀଳାଦ୍ରି ବିହାରୀ
କଷ୍ଟେ ଅଷ୍ଟେ ହେବାରୁ ମୋ ମନ
ସରୁ ନାହିଁ ଝୁରିଝୁରି ।। ଘୋଷା ।।

ମହା ବଳଆର ଭୁଜ ଦେବରାଜ
ସୁଦର୍ଶନ ଚକ୍ରଧାରୀ
ଏ ମହା ବିପଦୁଁ ଉଦ୍ଧରିଲ ନାହିଁ
ନ ଶୁଣିଲ ମୋ ଗୁହାରି ।।୧।।

କନ୍ଦରୁ ଅଣାଇ ବନ୍ଦୀ କରାଇଲ
ଶ୍ରୀ ନନ୍ଦଘୋଷ ବିହାରି
ଛନ୍ଦ କରଦ୍ୱୟ ଦେଖାଉଛୁ ଭୟ
ଦ୍ୱନ୍ଦୀ ବଳାଢ ପାହାରି ।।୨।।

କଳା ଶ୍ରୀ ବଦନ ଏ ଘୋର କଦନ
ବେଳକୁବେଳତ ଭାରି
ଧଳା ଅଶ୍ୱବାଗ ପାଉନାହିଁ କିବା
ଲେଉଡ଼ି ଲେଉଡ଼ି ଦଇତାରି ।।୩।।

କେତେ କାହାକୁ ସଙ୍କଟୁ ରଖିନାହଁ
କୃପାନିଧି ଦୁଃଖହାରୀ

ମୋହର ବେଳକୁ ଈର୍ଦ୍ଧ୍ୱ ହୃଦୟ
ହେଉଚ କଣ ବଗ୍ଭର ॥୪॥

ସିନ୍ଧୁ ସୂତା ପତି ! ଅବା ମୋ ବିପତ୍ତି
ପ୍ରତାପେ ହେଉଛ ଧାର
ଦିବ୍ୟସିଂହ ଦେବ କାହାକୁ କହିବ
* ଆପଣେ ନକଲେ ପାର ॥୫॥

**

* ବ୍ରିଟିଶ ଶାସକଙ୍କ କୋପରେ ପଡ଼ି କଳିଙ୍ଗରେ ଗଜପତି ମହାରାଜା ଦିବ୍ୟସିଂହ ଦେବଙ୍କୁ କଳାପାଣି ଯିବାକୁ ହୋଇଥିଲା । କଟକରେ ଅଟକ ହେଲା ବେଳେ ତାଙ୍କ ମନର ଭାବ ଏ ଗୀତଟିରେ ପ୍ରକାଶ ପାଇଛି ।

**

# ଜୟ ଜୟ ଜଗବନ୍ଧୁ

## (ଭଗୀରଥି ଦେବ)

[ଊନବିଂଶ ଶତାବ୍ଦୀ ]

(ରାଗ-ଶଙ୍କରାଭରଣ)

ଜୟ ଜୟ ଜଗବନ୍ଧୁ ଜଗତ-ଜୀବନ
ଜୟ ଜୟ ଅନାଦି ଅନନ୍ତ ନିରଞ୍ଜନ ହେ ॥୦॥

ପତିତପାବନ ଦୀନ- ଦୁଃଖହାରୀ ସନାତନ
ଯୋଗୀ-ଋଷି-ପୁଣ୍ୟଜନମାନଙ୍କ ବନ୍ଦନ ହେ ॥୧॥

ଏ ଭବସାଗର-କର୍ଣ୍ଣ- ଧାର କୃପା ନିକେତନ
କଞ୍ଚିତ କରୁଣା କର କଳୁଷ ନାଶନ ହେ ॥୨॥

ଭବଭୟ ବିନାଶନ ପ୍ରଭୁ ଗରୁଡ଼ ଆସନ
ନଳିନୀ ବାସିନୀ-ପ୍ରାଣ-ବନ୍ଧୁ ଜନାର୍ଦ୍ଦନ ହେ ॥୩॥

ନଭୁଲୁ ମାୟାରେ ମନ କରୁ ସୁପଥେ ଗମନ
ଭଣେ ଭଗୀରଥି ଦେବ ଏହି ନିବେଦନ ହେ ॥୪॥

**

**

# ଯତନେ ଜଗବନ୍ଧୁ

## ଗୌରଚନ୍ଦ୍ର ନରପଞ୍ଚ

[ ଊନବିଂଶ ଶତାବ୍ଦୀ ]

ଯତନେ ଜଗବନ୍ଧୁ ନାମ ଜପରୁ ମନୁଆଁ ରେ
ନନ୍ଦ ଉତ୍ତମାଙ୍ଗ ବନ୍ଦ କଲେକ ଚନ୍ଦଧାରେ ॥ ପଦ ॥

ଅମଳ କମଳ ବିକଚ ନେତ୍ର
ଦଳିତାଞ୍ଜନ ଲଳିତ ମାତ୍ର
କମଳା ମୁଖ କମଳ
ଭୃଙ୍ଗ ଚୁମ୍ବିତ ମଧୁ ଧାରେ ॥ ୧ ॥

ଅଶରଣ ଜନପୂର୍ଣ୍ଣ କାମ
ପୂର୍ଣ୍ଣ ବ୍ରହ୍ମ ନିଗମ ଧାମ
ଦୁଃଖୀ ଜନଙ୍କ ଦୁଃଖ ହରଣେ
(ଆଉ) ମହୀରେ ନଥିବେ ଗାଁରେ ॥ ୨ ॥

ଝଲକେ ମୋହ ବସଣି ନାସେ
ଲଳିତ କୋଟି ଚନ୍ଦ୍ର ହାସେ
କୋଟି ମଦନ ରୂପ ଅସମ
ଗୋଟିକ କଲ ତାରେ ॥ ୩ ॥

ରତନ ମୁକୁଟ କିରଟୀ ସାର
କଉସ୍ତୁଭ ମଣି ମୁକୁତାହାର
ଗଣ୍ଡ ଯୁଗଳେ କୁଣ୍ଡଳ ଲୁଳେ
ଶୋଭିତ ଉର ହାରେ ॥ ୪ ॥

ଯା' ଶ୍ରୀଚରଣ ରଜକୁ ପାଇ
ନୃତ୍ୟ ରସେ ଗଉରୀ ସାଇଁ
ଶୁକ ସନକ ଅନେକ ଯା' ସଦା
ଚରଣ ସେବାରେ ॥ ୫ ॥

**

**

# ଦୀନ ବନ୍ଧୁ

## ଭିକ୍ଷୋଚନ ପଟ୍ଟଯୋଷୀ

[ ଉନବିଂଶ ଶତାବ୍ଦୀ ]

ଦୀନବନ୍ଧୁ ! କେ କ ଦେଲ ମୁଁ ନ ଦେଲି ॥ ୦ ॥

କ ଦେଲ ହେ ଧ୍ରୁବ କ ଦେଲ ପ୍ରହ୍ଲାଦ
ଅହଲ୍ୟା କ ଦେଲ ମୁଁ ନ ଦେଲି ॥ ୧ ॥

ନନ୍ଦ ନନ୍ଦନ ବାଧା ହର ହରଲ
ବନ୍ଧ କର ଖେଳୁ ବାଲି ॥ ୨ ॥

ଉଦ୍ଧରଲ ନାହିଁ ଅଧମ ଦାସକୁ
ବନ୍ଧ ହେଲ ଭୁଲି ଭୁଲି ॥ ୩ ॥

ଚୋକା ଦନୁ ଡକା ପକାଇଲି ଯେତେ
ଫକା ହୁଅନ୍ତାଣି ନାଲି ॥ ୪ ॥

ତ୍ରିଲୋଚନ ବୋଲେ ଜାଣିଥିଲି ପ୍ରଭୁ
ଏତେ ଉକାଇଛ ବୋଲି ॥ ୫ ॥

**

**

# ହେ ଜଗନ୍ନାଥ

ପବନ ଦାସ

[ ଊନବିଂଶ ଶତାବ୍ଦୀ ]

( ରାଗ-ସାବେରୀ, ଆଠତାଳି )

ହେ ଜଗନ୍ନାଥ, ନଜାଣ କି ମୋହର ଆରତ ।। ଘୋଷା ।।

ଗଜ ପୁଣି ଯେ ମୃଗୁଣୀ          ତାଙ୍କ କର୍ଣ୍ଣେ ଅଛ ଶୁଣି
ପ୍ରହ୍ଲାଦ ଭକ୍ତ ଜାଣି          ସ୍ତମ୍ଭୁ ଜାତ ହେଲ ପୁଣି
ଶୁଣିଅଛୁ ଏଡ଼େ ପୁରୁଷାର୍ଥ ହେ ।। ୧ ।।

ଖାବକୁ ନିକଟ ହର          ସୁଗ୍ରୀବକୁ ମିତ୍ର କର
ଉଚ୍ଛିଷ୍ଟ ଦେଲା ଶବରୀ          ତାହା ଦେଲ ଗ୍ରାସ କର
ବାହୁଥିଲ ପରା ପାର୍ଥ ରଥ ହେ ।। ୨ ।।

ଶରଣ ଯେ ବିଭୀଷଣ          ଲଙ୍କେ କଲ ନୃପରାଣ
ସମୁଦ୍ରେ ବନ୍ଧ ବାନ୍ଧଣ          ସଙ୍ଗେ ଘେନି କପିଗଣ
କାଟି ପକାଇଲ ଦଶମାଥ ହେ ।। ୩ ।।

ଶ୍ରୀ ନୀଳ କନ୍ଦରେ ରହି          ତାଙ୍କ କର୍ଣ୍ଣେ ଶୁଭୁ ନାହିଁ
ଏଡ଼େ ନିଷ୍ଠୁର ସେ ଦେହି          ଦୀନ ପବନ କହଇ
ପଦ୍ମପାଦେ ରହୁ ମୋର ମାଥ ହେ ।। ୪ ।।

**

**

# ଜଗନ୍ନାଥ ହେ

## ମାନଗୋବିନ୍ଦ ହୋତା

[ଊନବିଂଶ ଶତାବ୍ଦୀ]

(ରାଗ-ସୁରଟ)

ଜଗନ୍ନାଥ ହେ ତୁମ୍ଭେ ଇନ୍ଦ୍ରାବରଜ
ଜଗବନ୍ଧୁ ମୋର ଘେନ ଅରଜ
ଜନ ଜନକ ହେ ଚତୁର ଭୁଜ
ଯଶ ଭଗତର ହୃତେ ଅରଜ ॥ ପଦ ॥

କୂଜନ ଶଙ୍ଖ ଚକ୍ର ଗଦାମ୍ବୁଜ
ଯତ୍ନେ ଧାରଣ କରି ଦେବରାଜ
ଜଲଶାୟୀ ହର ଯମ-ଦରଜ
ଜପୁଅଛୁ ମୁହିଁ ପଦ-ସରୋଜ ॥ ୧ ॥

ଗଢ ଦଅ ଯାଉ ପାପ ପରାଗ
ଗରୁଡାସନ ଦୁଃଖ ଘେନ ବେଗ
ଗରବ ଜଣାଣ ଘେନ ହେ ଆପଣ
ରଖ ରଖ ମୋହର ଏ ଗରଜ ॥୨॥

ନାଗ, ନର, ସୁର, ମୁନି ବନ୍ଦନା
ନାହିଁ ନାହିଁ ପାପ ହୁଡାଅ ବାନା
ନାରକୀ ନାଶନ ବିପଦ ଧ୍ୱଂସନ
ଜନକ ହୃଦରେ ଘେନ ବିରାଜ ॥ ୩ ॥

ଅଣ୍ଡା ମନେ ବୁଝ଼ି ଜଗତ ନାଥ
ଅକଳ ନାହିଁ ଆଉ ସାମରଥ
ଥରେ ହେଉ କାର୍ଯ୍ୟ ଦେବାଧି ରାଜ
ସର୍ବ ଶୁଭ କର ମୋହର କାର୍ଯ୍ୟ ॥ ୪ ॥

ଜଗନ୍ନାଥ ନାମ ଏ ଶ୍ଳୋକ ବୁଝ
ଜପନ୍ତେ ସବୁ ପ୍ରଭୁର କାର୍ଯ୍ୟ
ଦ୍ୱିଜ-ମାନ କବି ପଦ୍ମ ପାଦେ ସେବ
ଥରେ ସେବୁ ଥାଅ ମନ ମଉଜ ॥ ୫ ॥

**

**

# ପଙ୍କଜଡୋଳା ହେ

## ବାଇମୂର୍ଖ

[ ଊନବିଂଶ ଶତାବ୍ଦୀ]

ଜଗତ ଜନ ବନ୍ଧୁ ପଙ୍କଜ ଡୋଳା ହେ,
କରୁଣା ସିନ୍ଧୁ ବାଟରେ ଉଦ୍ଧର ଭେଳା ହେ ॥ ଘୋଷା ॥

ଆହେ ନୀଳାଦ୍ରି ପତି ଅଗତି ଜନ ଗତି
ମୁଁ ଯେ ପତିତ ଅତି କରମ କଳା ହେ ॥ ୧ ॥

ଆହେ ଜଗମୋହନ କର୍ମ ଲେଖନ ଆନ
କରିବାରେ ବହନ ନ କର ହେଳା ହେ ॥ ୨ ॥

ଅସତ୍ୟ କରମେ ପଡ଼ି ପଡ଼ି ମୁଁ ଗଲି ସଡ଼ି
ସୁବୁଦ୍ଧି କାଢ଼ି ଏଡ଼ି ସନ୍ତତ ଜ୍ୱାଳା ହେ ॥ ୩ ॥

ବାରମୂର୍ଖ ମାଗୁଣି ମୁଁ ପାପୀ ମୂଢ଼ ପ୍ରାଣୀ
ଧବା ରମ୍ଭଣୀ ମତି କାମିନୀ ଖେଳା ହେ ॥ ୪ ॥

**

**

# ହେ ନୀଳ ଅଚଳ ବିହାରୀ

## ପରମାନନ୍ଦ ଦ୍ୱିଜ

[ଊନବିଂଶ ଶତାବ୍ଦୀ]

ମହାପ୍ରଭୁ ମହା ଆର୍ତ୍ତି ହେଲି
ହେ ନୀଳ ଅଚଳ ବିହାରୀ
ଆରତ ତାରଣ ବୋଲାଇ ଆପଣ
ନ ଶୁଣ ଆରତେ କଲେ ଗୁହାରି ।। ଘୋଷା ।।

ଆହେ, ଆଶ୍ରେ କରି ତୁମ୍ଭେ ଅଭୟ ପାଦକୁ
ପ୍ରମାଦ ବୃଦ୍ଧି ହେଉଛି
ସନ୍ତାପ-ସରିତେ ପଡ଼ି ବୁଡ଼ିଗଲି
ଉତ୍ତରେ କୃପା ନୋହୁଛି ।। ୧ ।।

ଜଣାଇଲେ ଊଣା କରି ପରି ପ୍ରଭୁ
ମହା ବିପତ୍ତି ଭୟକୁ
କରୁଣା ନିଧାନ ହୋଇ ସାବଧାନ
ନୋହିଲ ମୋ ବିଷୟକୁ ।। ୨ ।।

ଦୁଃଖୀ ମୁଁ ଦୁଃଖ ନାଶନ ବୋଲି
ତୁମ୍ଭେ କରିଛି ହେ ଭରସା
ଚଉ ଗୃତକ ଆଶା ତୋଷ ନ କଲ
କରି କରୁଣା ବରଷା ।। ୩ ।।

ଦୀନ ବାନ୍ଧବ ନାମ ବହୁ
ପତିତପାବନ ବାନା ଉଡ଼ାଅ
ମୁଁ ଅତିହୀନ ପତିତ
ମୋହଠାରେ ଏ ମହିମା ନ ବୁଡ଼ାଅ ॥୪॥

ଯାହାକୁ ଯେତେ ଦୁର୍ଗତିରୁ ରଖିଛ
ମୋ ପରି କେହି ନୁହଁଇ
କର ମହାଘୋର ସଂକଟରୁ ପାର
ପରମାନନ୍ଦ କହଇ ॥ ୫ ॥
**

**

# ଜୟ ଜୟ ଜଗ ବନ୍ଦନ

## ସୋମନାଥ ସିଂହ ମର୍ଦ୍ଦରାଜ

(ଊନବିଂଶ ଶତାବ୍ଦୀ)

[ ରାଗ-ମାଳଶ୍ରୀ ]

ଜୟ ଜୟ ଜଗବନ୍ଦନ କେଶବ
ଜୟ ହେ ଯାମାଳ ଭଂଜ
ଗର୍ବୀ ଜନଗର୍ବ ତୁରିତେ ଭଂଜ ॥ ଘୋଷା ॥

ଚଉଦ ବ୍ରହ୍ମାଣ୍ଡେ ପ୍ରକାଶି ଅଛ
ଯେ ଯାହା କାମନା କଲେ ଦେଉଛ
ଏମନ୍ତ ମହିଁମା କେ କରେ ଅନ୍ତ
ଅନ୍ତର୍ଯ୍ୟାମୀ ନାଥ କମଳା କାନ୍ତ ॥ ୧ ॥

ଦୁଃଖୀ ଜନ ଦୁଃଖ ଦେଖି ନ ସହ
ପତିତ ଜନ ପାବନ ବୋଲାଅ
ଶଙ୍ଖ ଚକ୍ର ଗଦା ପଦ୍ମକୁ ବହ
ଦାନବଙ୍କୁ କାଳ ଦେବତା ହୁଅ ॥ ୨ ॥

ଦ୍ୱାରେ ଆଇ ନୋହୁ କରେ ଗୁହାର
ରଖିବ ବୋଲି କର୍ଣ୍ଣେ ଥାଅ ଡେର
ତ୍ୱରିତେ ମାନସ ପୂର୍ଣ୍ଣ କରି
ଚନ୍ଦେ ବିନାଶ କର ସାହୁ ପରି ॥ ୩ ॥

ଶରଣ ଜନଙ୍କୁ ଅମର କର
କରୁଣା ସାଗର ନାମ ତୁମର
କହ ଶେଷ ନୁହେଁ କାରତ ଯା'ର
ଧୀରତ କର ଲଙ୍କେଶ ପ୍ରକାର ॥ ୪ ॥

ଚନ୍ଦ୍ରାରେ ଯା'ର ବୁଦ୍ଧି ନ ଦଶଇ
ଚନ୍ଦ୍ରାମଣି ବୁଦ୍ଧି ଚଢୋଇ ଦେଇ
ଭାରତେ ଅର୍ଜୁନ ଯେସନେ କହ
କୌରବଙ୍କୁ ନାଶିଲ ସାହା ଦେଇ ॥ ୫ ॥

ନୃପତ କୁଳେ ପଦ୍ମ ଦନମଣି
ବୀରାଧୀ ବର ବୀରଙ୍କ ଅଗ୍ରଣୀ
ରାଜା ଶ୍ରୀ ସୋମନାଥ ସିଂହ ଭଣି
କହୁତେ କୃପା କର କମ୍ବୁପାଣି ॥ ୬ ॥
**

**

# ରମାପତି ହେ

## କାହ୍ନୁଚରଣ

(ସାବେରି-ଆଠତାଳି)

(ଊନବିଂଶ ଶତାବ୍ଦୀ)

ରମାପତି ହେ
କ୍ଷମାକର କ୍ଷମାକର ମୋ ସନ୍ତୁଷ୍ଟ ଚିତ୍ତ ।। ଘୋଷା ।।

ଭ୍ରମାତ୍ମରେ କରିଅଛୁ ଦୋଷ
ଧର୍ମାଧର୍ମକୁ ନ ମାନି ଲେଶ
ଶର୍ମୀ ଅଜମିଳକୁ ରଖ ଯଶ
ପରମାର୍ଥରେ ଥିଲେ ନିମଜାଇ ମୋ କୁମତି ।। ୧ ।।

ସିତାମ୍ବୁଜ ନେତ୍ର ଏହୁ ଧ୍ୟାନ
ଗୀତା ପଠନେ ନାହିଁ ମୋ ମନ
ତ୍ରିତାପ ଯେ ମୋ କର୍ମ ଲିଖନ
କି ତାପରୁ କଢ଼ାଇବ ମୋତେ ଜନ୍ନୁପତି ।। ୨ ।।

ଶିବଗ୍ରାହ୍ୟ ସର୍ବ ମୂଳାଧାର
ନାବ ଭବାର୍ଣ୍ଣବ କର୍ଣ୍ଣଧାର
ଯାବତ ଦେବ ମଣି ଉଙ୍କର
ଠାବ ଦେବ ଅନ୍ତେ ମୋତେ ବୈକୁଣ୍ଠ ବସତି ।। ୩ ।।

ବ୍ୟାପ୍ତ ଗୁଣ ସର୍ବ ଚରାଚର
ପାପ ପୁଣ୍ୟତ ତବ ଗୋଚରିଁ
ଆପଣ କର୍ତ୍ତା ଉଚ୍ଚ-ନୀଚର
ଆପଦରେ ପ୍ରାଣୀଙ୍କି କେ ହୁଏ ସଦ୍‌ଗତି ।। ୪ ।।

ମାନୁଅଛୁ ମୋର ଦୋଷମାନ
ଧ୍ୟାନ ଚରଣୁ ନ ଜାଣେ ଆନ
ଭାନୁକର ପ୍ରଚଣ୍ଡ ସମାନ
କାହ୍ନୁ ଚରଣର ନାଶ ପାପପଙ୍କ ଗତି ।। ୫ ।।

**

**

# ଦୀନବନ୍ଧୁ ନାମ

## କମଳଲୋଚନ

(ଊନବିଂଶ ଶତାବ୍ଦୀ)

ଦୀନବଂଧୁ ନାମ ବହନ ହେ
ତେଜ ଶ୍ରୀ ମଦନମୋହନ ॥ ୦ ॥

କରି ତୁମ୍ଭ ପଦ୍ମ ପାଦକୁ ଆଶ
କହୁଁ କହୁଁ ଦୀନ ଯାଉଛୁ ନାଶ
କୃପାସିନ୍ଧୁ କୃପା ଦିନେ ହେଁ ନ କଲ
କେଉଁ ହେତୁ କଲ ଏତେ ନିରାଶ ॥ ୧ ॥

କଷ୍ଟ ଡାକିଲ ପ୍ରସନ୍ନ ହୋଇଛ
କରି ଅଭୟ ସୁଖକୁ ଦେଇଛ
କ୍ଲେଶ ନିବାରଣ ଆରତ ତାରଣ
ସେ ମହିମା ଏବେ କାହିଁ ଥୋଇଛ ॥ ୨ ॥

ସର୍ବୋପରି ହରି ତୁମ୍ଭ ଚରଣ
ଶରଣ ପଶିଲି ହେବ କାରଣ
ତାରଣ ନ କଲ ଦାରୁଣ ହୋଇଲ
କେ ମୋର କଷ୍ଟ କରିବ ବାରଣ ॥ ୩ ॥

ଶ୍ରବଣ କରି ତୁମ୍ଭ ଚରିତରେ
ଭବୁ ତରିବି ହେଲେ ଦୁସ୍ଥିତରେ
କରିଥାଇ ଏ ଭରସା ପ୍ରଭୁ ମୋତେ
ଭସାଇ ଦେଲ ଚିନ୍ତା ସରିତରେ ॥ ୪ ॥

ଶୁଣି ସେ ନାମ ମହିମା ବଳକୁ
ସଂଶୟୁ ମୋର ନ ଥାଇ ଢାଳକୁ
ବେଳକୁ ଏ ସବୁ ମିଥ୍ୟା ହେଉଅଛୁ
କଥା ରହୁଛୁ ଅପାର କାଳକୁ ॥ ୫ ॥

ପ୍ରଭୁ ଥାଇ ପୀଡ଼ା ପାଉଛୁ ଯାହା
ପଦ୍ମଲୋଚନ କି ନ ଜାଣ ତାହା
ପରିତ୍ରାଣ ଏଥୁଁ ନ କଲେ କମଳ-
ଲୋଚନର ଆଉ ଅଛୁ କେ ସାହା ॥ ୬ ॥

**

✳✳

# ଦୀନବନ୍ଧୁ କୃପାସିନ୍ଧୁ

## ଅଢକନ୍ଦ ଦାସ

(ଊନବିଂଶ ଶତାବ୍ଦୀ)

ଦୀନବନ୍ଧୁ କୃପାସିନ୍ଧୁ
ଦୁଃଖି ଦୁଃଖ ନିବାରଣ ହେ ॥ ଘୋଷା ॥

ସଙ୍କଟ ସାଗରେ
ଭାସି ଯାଉଛୁ ହେ ବ୍ରହ୍ମସଖି
ଆହେ ମହାପ୍ରଭୁ ଦେବାଧିରାଜ
ହେଲେ ନିବାରିଲ ଦ୍ରୌପଦୀ ଲଜ
ଆର୍ତ୍ତେ ଡାକିଲା ରଖିଲ ଗଜ
ସେ ଆର୍ତ୍ତତ୍ରାଣ ହେ ॥ ୧ ॥

ଧ୍ରୁବଙ୍କୁ ଧ୍ରୁବ ଲୋକେ ନେଇ
ରଖିଲ ହେ ଭବଗ୍ରାହୀ
ପ୍ରହ୍ଲାଦ ଲାଗି ନୃସିଂହ ରୂପ
ହୋଇ ହିରଣ୍ୟର ହରିଲ ଦର୍ପ
ଜରାସନ୍ଧ ବନ୍ଦୀ ମନ୍ଦିରେ ନୃପ ସେ
ସଙ୍କଟ ହରଣ ହେ ॥ ୨ ॥

ଚନ୍ଦ୍ରବାକ ଚନ୍ଦ୍ରା କଲି
କାଠ ପେଡ଼ା ଫାଟିଗଲା
ବିପ୍ର ପାଦଚିହ୍ନ ହୃଦରେ ଧରି
ମୃଗୁଣୀ ସଙ୍କଟୁ ଫେଡ଼ିଲ ହରି
ଅହଲ୍ୟା ପାଷାଣୁ ମୁକତ କରି ସେ
କଲ ଯେ କାରଣ ହେ ॥୩॥

ଦ୍ୱିଜ ମିଶ୍ର ଦାମୋଦର
ଦୁଃଖ ଦେଖି କଲ ଦୂର
ଭରଢିଆକୁ ଯୋଡ଼ାଇଲ ଘଣ୍ଟେ
ମାନଗୋବିନ୍ଦଙ୍କୁ ମାଇଲ କୁଟେ
ଟିଙ୍କୀପଟକୁ ବସାଇଲ ପାଟେ ସେ
ପଶିଲି ଶରଣ ହେ ॥୪॥

ମୋପରି ପତିତ ଜନ
ନଥିବ ଏ ତ୍ରିଭୁବନ
ଛାଡ଼ିଲି ଭାଇ-ବନ୍ଧୁ ପ୍ରତି ଆଶ
ଝଟିଲି ସନ୍ଧ୍ୟାପରେ ପୀତବାସ
ଭରସା ଏକା ଆପଣଙ୍କ ବାସ୍ତ ସେ
ପଙ୍କଜ ଚରଣ ହେ ॥୫॥
** ।

**

# ଧନ୍ୟ ପ୍ରଭୁ

## ଦାମୋଦର ପଟ୍ଟନାୟକ

[ଊନବିଂଶ ଶତାବ୍ଦୀ]

(ରାଗ-କୁମ୍ଭକାମୋଦୀ)

[ନୂଆନଟ ପଟଲୀ ମୁକୁଟ-ବୃତ୍ତରେ]

ଧନ୍ୟ ପ୍ରଭୁ କାହିଁ ଲୁଚିଅଛ ହେ
ଦେଖାଅ ରୂପ ମୋହନ
ନିକଟରେ ଥାଇ ଅନ୍ତର କରାଇ
ଦହୁଛ କିପାଁ ଜୀବନ ହେ ।। ପଦ ।।

ମଳିନ ପଙ୍କିଲ ମନ-ଦରପଣେ
ନ ପଡ଼ଇ ତୁମ୍ଭ ଜ୍ୟୋତି
ପାପୀ ବୋଲି ଯେବେ ଦୂର କରି ଦେବ
ସରିଯିବ ମୋ ସଂପତ୍ତି ।।୧।।

ତୁମ୍ଭ ସୁଖ ସଙ୍ଗ ବରଜିଲି ଦିନୁ
ଅରଜିଛୁ ଯେଉଁ ଗୁଣ
ତୁମ୍ଭରେ କି ତାହା ଜଣା ହୋଇନାହିଁ
କହିବି ମୁଁ କିସ ପୁଣ ।।୨।।

କି ଏବା ଶୁଣିବ କା ଆଗେ କହିବି
ହରିବ ମୋର ଦୁର୍ଗତି
ନଷ୍ଟ ପୁଣ୍ୟ ମାନ ଫେରାଇ କେ ଦେବ
କହ କହ ବିଶ୍ୱପତି ।।୩।।

ପତିତପାବନ ବାନା ଜଗତରେ
ଉଡ଼ାଇବା ବ୍ୟର୍ଥ ହେବ
ଯେବେ ଅନାଥରେ ନାଥ ଅନାଥରେ
କିଞ୍ଚିତ ମାନେ ନୋହିବ ।।୪।।

**

# ଡାକଇ ପାପ ଭୁବନୁ

## ଦାମୋଦର ପଟ୍ଟନାୟକ

[ଊନବିଂଶ ଶତାବ୍ଦୀ]

ରଖ ରଖ ରଖ ରଖ ଦୀନଜନ ପ୍ରାଣବନ୍ଧୁ
ପତିତ ଡାକଇ ବାରେ କୃପାକର କୃପାସିନ୍ଧୁ ।।ପଦ।।

ସୁଖମୟ ଏ ସଂସାର ଦିଶଇ ଦୁଃଖ ଆଗାର
ତୁମ୍ଭର କରୁଣା ବିନା ହେ ନାଥ କରୁଣା କର ।।୧।।

ବିପଦ ବୈରୀ ଦଳେ ଘେର ରହୁଛି ପ୍ରାଣ ଆବୋର
ହେଲେ ତୁମ୍ଭ କୃପାନାଥ ହଳାହଳ ସୁଧା ପରି ।।୨।।

ଅସହାୟ ସନ୍ତାନର ତୁମ୍ଭେ ହେ ପିତା ସମ୍ବଳ
କାହାକୁ କହିବ ପ୍ରଭୁ ହୋଇଛି ଅତି ଆକୁଳ ।।୩।।

ଦେଇଛ ଜନମ ଯେଣୁ ରଖିବାକୁ ହେବ ତେଣୁ
ଏହି ବାକ୍ୟ ଅନୁସରି ଡାକଇ ପାପ ଭୁବନୁ ।।୪।।

**

✳✳

## ହେ ପ୍ରଭୁ କଳାଶ୍ରୀ ମୁଖ

**ହାଡ଼ି ଦାସ**

[ଊନବିଂଶ ଶତାବ୍ଦୀ]

(ରାଗ-ବଙ୍ଗଳାଶ୍ରୀ ତାଳ-ପହପଟ)

ହେ ପ୍ରଭୁ କଳଶ୍ରୀ ମୁଖ !
ତୁମ୍ଭ ରଥ ଯାତ ଦେଖି ନପାରିଲି
ଦେବାରୁ ଦାରୁଣ ଦୁଃଖ ॥ ଘୋଷା ॥

କେତେ କେତେ ମହା ଭକତ ମାନଙ୍କୁ
କଢ଼ାଇ ନେଇଛ ପଥ
ମୋତେ ଏତେ ବେଳେ ଏକା କରାଇଲ
ଦେଖିବାକୁ ଅସମର୍ଥ ॥୧॥

ଯେବେ ନିକଟକୁ ନ ନେଲ ଗୋସାଇଁ
ମନେ କେଉଁ କଥା ପାଞ୍ଚି
ଏଇଠାରେ ତୁମ ରଥ ମୁଁ କରିବି
ଆସିବନା ତୁମେ ଘୁଞ୍ଚି ॥୨॥

ଦେଖା ଯାଉ ଭଲ ହଟିଆ ନାଗର
କେତେ ଲଗାଇବୁ ହଟ
ନିଶ୍ଚୟ କରିବି ଛଡଆ ଗ୍ରାମରେ
ତୋହର କଳପ ବଟ ॥୩॥

କାଳିକାଳକୁ ଏ କଥା ବୁଝାଇବି
ଦେଖିବେ ସଂସାର ଜନେ
ହାଡ଼ିଆ କମାର ଥାଣ୍ଟ କ ସଜବ
ଶ୍ରୀହରି ବୋଲ ବଦନେ ||୪||

**

**

## ରତ୍ନ ସିହାସନ ମଉଡମଣିକ

**ହାଡ଼ି ଦାସ**

[ଊନବିଂଶ ଶତାବ୍ଦୀ]

(ତାଳ-ଏକତାଳି)

ରତ୍ନ ସିଂହାସନ ମଉଡ ମଣିକ କହୁଛି କଥାଏ
ମହୋଦଧି କୂଳେ କଳ୍ପ ବଟ ମୂଳେ କରିଛନ୍ତି ବିଜୟେ ||ଘୋଷା||

ସେ ସ୍ବନ୍ଦ ବଦନ ପଙ୍କଜ ଲୋଚନ
ଆଉ କପାଁ ଏତେ ଭେସ୍ତୁ
ଘୃତ ନ ମିଳଇ ତୂଣ ନ ମିଳଇ
ଲୁଣ ବିନା ବଡ ଭୟେ ||୧||

ଅଧିଲା ଭିତରେ ଟଙ୍କା ଗୁପ୍ତ ଅଛୁ
ସଂସାର ଅଂଧାରମୟେ
ମୋହ ପାଇଁ କଛୁ ଧନ ମାଗୁଅଛୁ
ନଶୁଣ ଦେବାଧି ରାୟେ ||୨||

କପଟ ଦ୍ରୌପଦୀ ଲଜ୍ଜାକୁ ରଖିଲ
ଏବେକ ପାଶୋର ଯାଏ

ତୁମ୍ଭଙ୍କୁ ତୁମ୍ଭ ଭକ୍ତ ଗଣ ଅଛଇ
ଯେବେ ନୋହୁବଚି ନାସ୍ତେ ॥୩॥

ଛତିଆ ଗ୍ରାମରେ ରହୁ ସ୍ଥାନ ହାଡି
ଜଣାଉଛୁ ପଦ୍ମ ପାଏ
ମୋହ କର୍ମକୁ ଯେ ବଧିର ହେଲକ
ନ ଶୁଣ ହେ ଦୟାମୟେ ॥୪॥
**

**

## ଆହେ ପ୍ରଭୁ ମହାବାହୁ

### ହାଡ଼ି ଦାସ

[ ଊନବିଂଶ ଶତାବ୍ଦୀ]

(ତାଳ-ଆଠତାଳି)

ଆହେ ପ୍ରଭୁ ମହାବାହୁ
ଶରଣ ଯୋଦର ନୋହୁଲେ ଆଉ
ଦିନୁଦିନୁ ଦୁଃଖ ହେଲା ଅତିରେକ
ବହୁତ ଜଂଜାଳ କଲେଣି ସାହୁ
ଅନ୍ନ ଜଳ ଥିଲେ ଉଦ୍ଧରଣ ନମିଳେ
ଜାଲ ବନା ଘଡ଼ି କ ବୁପେ ପାଉ ॥୧॥

ଆସନ ନ ଥାଇ ଶୟନ କରୁଛୁ
ତୈଳ ବିନା ତନୁ ଖରସି ଥାଉ
ପେଜ ଯେଣ ଅନ୍ନ ଗର୍ଭକୁ କ୍ଷେପିଲେ
ସନ୍ଧ୍ୟା କାଳେ ସଂଧ୍ୟା ନଲଗେ ଆଉ ॥୨॥

ଯେତେ ଯେତେ କଥା କଲ ହେ ବ୍ୟବସ୍ଥା
ଅନ୍ୟ ଜାଣିବାକୁ କେ ଅଛୁ ଆଉ
ଦେଖ ଦେଖ ହର କଲ ଏତେ ସର
ପାଦ ପଙ୍କଜରେ ଜୀବ ମିଳାଉ ।।୩।।

ଛଢଆ ଗ୍ରାମରେ ପଡ଼ି ରହୁଅଛୁ
ତୁମ୍ଭ ମନରେ ଆଉକି ନ ଥାଉ
ପାମର ହାଡ଼ିଆ ଭାସି ଯାଉଅଛୁ
ସାଆନ୍ତ ବିନା କେ କୂଳେ ଲଗାଉ ।।୪।।

**

**

# ଚକା ଆଖି

## ଭଗବାନ

[ ଊନବିଂଶ ଶତାବ୍ଦୀ ]

ଚକା ଆଖି, ଅକ୍‌କା ହୋଇଲଣି ଏବେ
ବକ ଚରି ପ୍ରଭୁ ଡକ୍‌କା ବଜାଇ ମୁଁ
ଡାକୁଛି ନିର୍ଗୁଣ ଲବେ ।

ଧକ୍‌କା ମାରି ମୋତେ ଟେବଲ୍‌ବେଲ ଦୁଃଖ
ରଖାଇ ନ ଦେବ ଠାବେ…
ଭିକାରୀ ପରାଏ ବୁଲାଇ ମାରୁଛ
ଶିକାରୀ ହୋଇ ଗରବେ ॥୧॥

ସଖା ସହୋଦର କେହି ନାହିଁ ମୋର
ଠେକା ବାନ୍ଧି ଦେଖା ଦେବେ
ଏକା ତୁମ୍ଭ ନାମ ଭରସା କରିଛି
ଟେକ ନାଥ ଦୟା ନାବେ ॥୨॥

ଖାତ ବକା ପ୍ରଭୁ ନଦକେ ବସିଲେ
ନିନ୍ଦା କରିବେ ସରବେ
ତକା ଗୁଣ୍ଡେ ଧାନ ଭଗବାନ
ଆଶ୍ରା ଶୂନ୍ୟ ହୋଇ ଭବେ

**

# କି ଶୋଭା କଲା ଶ୍ରୀମୁଖ

## ବାମନ ଦାସ

[ଊନବିଂଶ ଶତାବ୍ଦୀ]

ଆଲଟବେଳ ବଡ ଦେଉଳେ
କି ଶୋଭା କଲା ଶ୍ରୀ ମୁଖ

ପାଞ୍ଚ ମନକୁ ଏକ କରଣ
ଚାହିଁଲେ ହରବେ ଦୁଃଖ (ମନରେ)
ବାଦ୍ୟ ଗହଳ ଶୁଭେ ଚହଳ
ବାଜୁଅଛି ଜୟ ଶଙ୍ଖ ॥ ॥

ଘଣ୍ଟା ନାଦରେ ଚଉ ଭେଦରେ
ମନକୁ ହରଣ ଲକ୍ଷ୍ୟ
ବ୍ରହ୍ମାଦି ମୁନି କରନ୍ତି ଧ୍ୱନି
ଡାକ ଶୁଭେ ଲକ୍ଷ ଲକ୍ଷ ॥୨॥

ଭକ୍ତେ ଡାକନ୍ତି ଆହେ ଶ୍ରୀପତି
ଏ ଭବ ମାୟାରୁ ରଖ
ବାମନ ଦାସ କରଣ ଆଶ
ପଡ଼ିଣ ଅଛି ନଟରେଖ ॥୩॥

**

**

# ଅହେ ଚକାଡୋଳା

## ବହ୍ନାରୀ

(ତାଳ-ଦକ୍ଷିଣୀ)

ଅହେ ଚକାଡୋଳା।
ଭକ୍ତ ଷ୍ଟବକୁ ବାନ୍ଧିଛ ଶୂନ୍ୟେ ଭେଳା। ।।ପଦ।।
ଆସୁଥିଲୁ କପାଁ ନ ଆସିଲୁ ମହାନାଟ ପରେ ନମଙ୍କିଲୁ
ଢଳଶ୍ଳେପା ପ୍ରାସ୍ତେ କବାଟ ଲଗିଛୁ
ତହିଁ ମତ୍ତଗଜ ଚଳିଗଲୁ ।।୧ ।।

ଏକଚନ୍ଦେ ରଥ ଚଳୁଥିଲୁ
ବେଣ୍ଡ ଚକେ ରଥ ନ ଚଳିଲୁ
ମହାନାଟ ପରେ ଅନଳ ଜଳୁଛୁ
ତଇଲ ପଡ଼ନ୍ତେ ଲିଭିଗଲୁ ।।୨।।

ମୂଳବଟଠାରୁ ଢନକଳା। ଷୋଳ ଗୁମ୍ଫାରେ ବଢଣ ଜଳା।
ମହାନାଟ ପରେ ଅମୃତ ଯୋଗାଡ଼ ଧାଇଁ ଧାଇଁ କପାଁ ନ ରହିଲୁ ।।୩।।

ବନ୍ଧ ନଥିବାରୁ ପାଣି ଥିଲୁ, ବନ୍ଧ ହେଲୁ ପାଣି ବହିଗଲୁ
ସେ ବନ୍ଧ ହାଣନ୍ତେ ତଳକୁ ଖସନ୍ତେ ଉପରକୁ ପାଣି ବହିଗଲୁ ।।୪।।

ରାନ୍ଧ ପାହିଣ ଦିବସ ହେଲୁ
ନଜପଥ ଆଉ ନ ଦଶିଲୁ
ବହ୍ନାଶ୍ରି କହଇ ସେ ପାଦକୁ ଧ୍ୟାୟୀ
ଅଧରସେ ରସ ପାନ କଲୁ

**

**

# ନଶି ଅବଶେଷେ ଦେବାଧିଶ୍ରଏ

## ଶ୍ରୀମତୀ କୁଞ୍ଜଲତା

(ରାଗ-ରସକୋଇଲ)

ନଶି ଅବଶେଷେ ଦେବାଧି ଶ୍ରଏ
ପ୍ରଥମେ ମଙ୍ଗଳ ଆଳତି ହୋଏ
ଧନ ଲୋକେ ଟେକ ଧନ ଆଳତି
କ ଶୋଭା ଦଶନ୍ତ ମାଳାଦ୍ରି ପନ୍ତି ସେ
କ କହିବ ମୁଖ ଶୋଭା ହେ
କୋଟିଏ ଅରୁଣ ତେଜକୁ ଗଞ୍ଜଇ
ଦଶଇ ଶ୍ରୀମୁଖ ପ୍ରଭା ହେ ॥ ୧ ॥

କପୋଳରେ ସ୍ୱର୍ଣ୍ଣ ଚିତା ପ୍ରକାଶି
ଆକାଶରେ ଯେହ୍ନେ ନକ୍ଷତ୍ର ଦିଶି
ନାନା ଫୁଲେ ନାକୁ ଆସି ଶୋହଇ
ଝଟ ଝଟ ରାହୁରେଖା ଦିଶଇ ସେ
ବିମ୍ବାଧରେ ମନ୍ଦ ହାସ ହେ
ଚତୁର୍ଦ୍ଦଶ ଲୋକେ ଦର୍ଶନ କରନ୍ତି
ଦେଖି ସେ ସମସ୍ତ ବେଶ ହେ ॥ ୨ ॥

ଆଳତି ଦେଖିଣ ଯେ ସର୍ବଲୋକ
କଏ କେତେ ରୂପେ କରନ୍ତି ଡାକ
କେହୁ ହରି କେହୁ ହେ ଗୋପୀନାଥ
କେ ବୋଲେ ମୋ ଜନ୍ମ ହୋଇଲା ସାର୍ଥ ହେ
ଶୁଣନ୍ତି ଶ୍ରୀ ଜଗନ୍ନାଥ ହେ
ଶୁଣିଣ ଭାବ ଅନୁରୂପେ ସିଦ୍ଧିକି
କହନ୍ତି କମଳା କାନ୍ତ ହେ ॥ ୩ ॥

ଆଲଟ ସାରଣ ବେଶ ଉଲଗି
ସ୍ନାନକୁ ଯେ ପ୍ରଭୁ ତତପ ଲାଗି
ଅବକାଶ ବେଳେ ନୀଳାଦ୍ରୀ ରାଏ
ରତ୍ନ ସିଂହାସନେ କର ବିଜୟେ ହେ
ଛତଆ ନିଯୋଗ ଆସି ହେ
ଯେ ଯାହା ସେବାରେ ନିଯୁକ୍ତ ହୁଅନ୍ତ
ବାଳ ବୃଦ୍ଧ ଯୁବା ମିଶି ହେ ॥ ୪ ॥

ଅବକାଶ ସାର ହୋଇ ସୁବେଶ
ବହ୍ଲଭ ରୋଗ ଭୁଞ୍ଜ ପୀତବାସ
ଖଇ କୋରା ଦଧି ଲବଣ ସର
ଏପର ବହୁ ପ୍ରକାରେ ସମ୍ଭାର ହେ
ଭୁଞ୍ଜନ୍ତ ଶ୍ରୀ ଯଁଦୁପତ ହେ
ବଲ୍ଲଭ ସାର ଧୂପକୁ ଉଦ୍‌ଯୋଗ
କରନ୍ତ ସର୍ବେ ତତ୍ପର ହେ ॥ ୫ ॥

ଧୂପରେ ଶ୍ରୀପ୍ରଭୁଙ୍କର ଭୋଜନ
ଷଡ଼ରସ ଚଉଷଠି ବ୍ୟଞ୍ଜନ
କ୍ଷୀରଖେଚଡ଼ି ନାନା ପିଠାମାନ
କେ କହି ପାରବ ତାହାଙ୍କ ନାମ ହେ
ଭୁଞ୍ଜନ୍ତ ଶ୍ରୀ ବାସୁଦେବ ହେ
ଟେରା ଫିଟାଇଣ ଆଲଟ ହୁଅନ୍ତ
ଦେଖନ୍ତ ସକଳ ଦେବ ହେ ॥ ୬ ॥

ଶ୍ରୀମହାପ୍ରସାଦ ଭିତରୁ ଆଣି
ଯେ ଯାହା ଇଚ୍ଛାରେ ନିଅନ୍ତ କିଣି
ମହାପ୍ରସାଦ ମହିମା ଅପାର
ଯାହା ନ ଲଭନ୍ତ ବ୍ରହ୍ମାଣଙ୍କର
ସେ ମହାପ୍ରସାଦ ପାଇ ହେ
ହରିଙ୍କ ବେଶରେ ନାରଦ ସେବିଲେ
ଶ୍ରୀଲକ୍ଷ୍ମୀଙ୍କ ପୁରେ ଯାଇ ହେ ॥୭ ॥

ସେ ମହାପ୍ରସାଦ ଏଠାରେ ଜ୍ଵର
ଭୁଞ୍ଜିଲେକ ପକ୍ଷୀ ଜନ୍ତୁ ହିଁ ନର
ବ୍ରାହ୍ମଣ କ୍ଷତ୍ରିୟ ଶୂଦ୍ର ଚ୍ଣ୍ଡାଳ
ଭୁଞ୍ଜନ୍ତ ହୋଇ ସର୍ବେ ଏକ ମେଳ ହେ
ସେ ମହାପ୍ରସାଦରେ ମୋ ଭକ୍ତି ହେ
ଏତକ ଅନୁଗ୍ରହ କର ମୋ ଠାରେ
ଆହେ ଶ୍ରୀ କମଳାପତି ହେ ॥ ୮ ॥

ପ୍ରତିଜ୍ଞା କରିଲେ ଶ୍ରୀ ଶାକମ୍ଭରୀ
ଭୁଞ୍ଜିବେ କୀଟ ପତଙ୍ଗାଦ୍ଦ କରି
ଶ୍ରୀମହାପ୍ରସାଦ ମହିମା ଭାବି
ସଦାଶିବ ହୋଇ ଅଛନ୍ତି ଯୋଗୀ
ସେ ମହାପ୍ରସାଦରେ ବିଶ୍ୱାସ ହେ
ବେନି କର ଯୋଡ଼ି ପଦ୍ମପାଦେ ପଡ଼ି
ମାଗୁଛି ନ ଭାଙ୍ଗେ ଆଶ ହେ ॥ ୯ ॥

ଧୂପ ସାରି ବେଶ ଉଲଗି କରି
ଭୋଗ ମଣ୍ଡପରେ ଶ୍ରୀ ଗିରିଧାରୀ
ଛପନ ପ୍ରକାରେ ଯେ ଭୋଗ ମାନ
ତହିଁରୁ ଶ୍ରୀହରି କଲେ ଭୋଜନ ହେ
କର୍ପୂର ବଡ଼ିଆ ଦେଇ ହେ
ଛତ୍ର ଭୋଗ ସାରି ମଧ୍ୟାହ୍ନ ଧୂପକୁ
ଆରମ୍ଭ କଲେକ ଯାଇ ହେ ॥୧୦॥

ମଧ୍ୟାହ୍ନ ଧୂପରେ ଶ୍ରୀ ଗୋପୀକାନ୍ତ
ଅନ୍ନ ବ୍ୟଞ୍ଜନ ଭୁଞ୍ଜନ୍ତ ବହୁତ
ଟେରା ଫିଟାଇ ହୁଅଇ ଆଳତି
ତାମ୍ବୁଳ ବଡ଼ିଆ ଲାଗି ହୁଅନ୍ତ ସେ
ନିଦ୍ରାରେ ଅଳସ ଦେହ ହେ
ମଧ୍ୟାହ୍ନ ସମୟେ ପ୍ରଭୁ ପହଡ଼ିଲେ
ପହୁଡ଼ ଆଳତି ହୋଇ ହେ ॥୧୧॥

ଧବା ଅନ୍ତେ ସନ୍ଧ୍ୟା ହେଲା ପ୍ରକଟ
ସକଳ ସେବକ ମଧ୍ୟରେ ଭେଟ
ଇନ୍ଦ୍ରା ତେଜ ଲୋକ ତ୍ରୈଲୋକ୍ୟ ମଣି
ସିଂହାସନ ବଜେ ଚକ୍ରପାଣି
ଶଙ୍ଖଚକ୍ର ବେନହସ୍ତ ହେ
ସନ୍ଧ୍ୟା ସମସ୍ତରେ ଆଳତ ହୁଅନ୍ତି
ଦେଖନ୍ତି ସକଳେ ଭୃତ୍ୟ ହେ ॥୧୨॥

ସନ୍ଧ୍ୟା ଧୂପରେ ଶ୍ରୀ ନନ୍ଦନନ୍ଦନ
ଭୋଜନ କଲେ ଯେ ସାମଗ୍ରୀମାନ
ପିଠା ପଖାଳ ନାନା ବଡ଼ାମାନ
ଭୋଜନ କଲେ ଶ୍ରୀ ମଧୁସୂଦନ
ଶେଷ ଫିଟାଇ ଆଳତ ହେ
ତାମ୍ବୁଳ ବଡ଼ଆ ଲାଗୁ ହୋଇ ପ୍ରଭୁ
ଚନ୍ଦନ ଲାଗି ହୁଅନ୍ତି ହେ ॥୧୩॥

କର୍ପୂର ଚନ୍ଦନ ଚୂଆ କସ୍ତୁରୀ
କେଶର ଆଦ ବଲେପନ କର
ବଳଭଦ୍ର ଦେବ ସୁଦରଶନ
ସମସ୍ତେ ଲାଗି ହୋଇଲେ ଚନ୍ଦନ
ମଣିମା ଶ୍ରୀ ଚିନ୍ତାମଣି ହେ
ଚତୁର୍ଦ୍ଦଶ ଲୋକ ଦର୍ଶନ କରନ୍ତି
ଯୋଡ଼କର ବେନ ପାଣି ହେ ॥୧୪॥

ତେତିଶ କୋଟି ଦେବେ ଯୋଡ଼କର
ସ୍ତୁତି କରୁଛନ୍ତି ବ୍ରହ୍ମାଶଙ୍କର
ଯୋଗୀ ବ୍ରହ୍ମଋଷି ଯେ ମୁନି ଋଷି
ବ୍ରହ୍ମଜ୍ଞାନୀ ବ୍ରହ୍ମଭେଦୀ ସନ୍ନ୍ୟାସୀ ହେ
ଜଗମୋହନରେ ରହି ହେ
ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରନ୍ତି
ଯେ ଯାହା ଭାବକୁ ଧାୟୀ ହେ ॥୧୫॥

ଚନ୍ଦନ ଲାଗିଲେ ହେ ହୃଷୀକେଶ
ଭକ୍ତ ଅନୁରୂପେ ହୋଇଲେ ଦୃଶ୍ୟ
ଭକ୍ତ ଯେଉଁ ରୂପେ ଭାବନା କରି
ସେହି ରୂପେ ଦୃଶ୍ୟ ହୋଇଲେ ହରି ହେ
ଭକ୍ତ ବତ୍ସଳ ଶ୍ରୀପତି ଯେ
ଲକ୍ଷ୍ମୀ ଯେ ଅନେକ ତପସ୍ୟା କରିଲେ
ଗୋପୀ ହେଲେ ପ୍ରିୟବନ୍ତୀ ହେ ।।୧୬।।

ଗରୁଡ଼ ପୃଷ୍ଠରେ ରହିଣ ଘନ
ସଦା ଧ୍ୟାନ କର ନନ୍ଦନନ୍ଦନ
ତ୍ରିଭଙ୍ଗୀ ଛନ୍ଦରେ ହୋଇଣ ଥିଆ
ପଦ୍ମରେ ନୂପୁର ପାଉଛି ଶୋଭା ହେ
କଟୀରେ ପୀତଦୁକୂଳ ହେ
ହୃଦରେ ସୁବର୍ଣ୍ଣ ପଦକ ଲମ୍ବିଛି
ତଥି ପରେ ବନମାଳ ହେ ।।୧୭।।

କରରେ କଙ୍କଣ ହସ୍ତରେ ମୁଦି
କର୍ଣ୍ଣରେ କୁଣ୍ଡଳ ଅରୁଣ ନିନ୍ଦି
କଣ୍ଠରେ ମୁକୁତା ମାଳ ଲମ୍ବଇ
ନାସାରେ ଶ୍ରୀଫଳ ମୁକୁତା ଶୋଭି ହେ
କସ୍ତୁରୀ ତିଳକ ଠାଣି ହେ
ତଥି ମଧ୍ୟରେ ଯେ ଗୋରଚନା ଟିକା
ନୀଳମେଘେ ଜଣାମଣି ହେ ।। ୧୮ ।।

ଚୂଳରେ ଚନ୍ଦ୍ରିକା ବଙ୍କିମ ଚୂଡ଼ା
କେତକୀ କୁଙ୍କୁମ ଚହିଁରେ ବେଢ଼ା
ଚରନ୍ତ ଗୁହାଣୀ ନୂପୁର ହାସ
ଚରଣେ ଚିହ୍ନ ଧ୍ୱଜ ବଜ୍ରାଙ୍କୁଶ ହେ
ମୋହନ ମୁରଲୀ ହସ୍ତେ ହେ
ହରିଚନ୍ଦନ ସର୍ବାଙ୍ଗେ ସୁଲେପିତ
ଏହି ରୂପେ ମୋର ଚିତ୍ତେ ହେ ।। ୧୯ ।।

ଏହି ରୂପେ ମୋତେ ହୋଇବ ଦୃଶ୍ୟ
ଚରଣରେ ଦେଖା ତୁଳସୀ ପୁଷ୍ପ
ବାମରେ ଶ୍ରୀମତୀ ରାଧା ସୁନ୍ଦରୀ
ତାଙ୍କ ଚରଣେ ମୁଁ ଅନୁସର ହେ
କରାଅ ରାଧିକା ଦାସ ହେ
ମୋତେ କୃପାମୃତ ସିଞ୍ଚିବା ଉଚିତ
ନକର ମୋତେ ନିରାଶ ହେ ॥୧୦॥

ଛଳେ ମୋ କପଟ ଭାବକୁ ଦହି
ତୁମ ପ୍ରିୟା ପାଦ ସେବା କରାଅ
ତୁମ୍ଭ ନିଜ ଧାମେ କରାଅ ଜନ୍ମ
ତୁମ୍ଭ ଦୁହିଁଙ୍କଠାରେ ହେଉ ପ୍ରେମ ହେ
ଏହି ବାଞ୍ଛା ପୂର୍ଣ୍ଣ କର ହେ
ବ୍ରହ୍ମା-ରୁଦ୍ରାଦି ଯେଉଁରେ କଷ୍ଟ ନାହିଁ
ନ ରୁଚେ ବୈକୁଣ୍ଠପୁର ହେ ॥୧୧॥

ଜନ୍ମ ମରଣ କେତେ ପଥ ଶ୍ରମେ
ଦୁଃଖ ଭୁଞ୍ଜାଇଲ ନାନା ଆଶ୍ରମେ
କେତେକ କଷ୍ଟରେ ମନୁଷ୍ୟ ଦେହ
ତୁମ୍ଭ ଯୁଗଳ ସେବାକୁ ଇଛଇ ହେ
ଶ୍ରୀ ଗୁରୁ କୃପାରୁ ଜଣ ହେ
କର ଇଚ୍ଛାରେ କି ଭୋଜନ କାମନା
ପୂରାଅ ମୁରଲୀଧାରୀ ହେ ॥୧୨॥

ବଡସିଂହାର ବେଶରେ ମାଧବ
ଲାଗି ହୋଇଲେ ଶ୍ରୀ କର ପଲ୍ଲବ
ମାଳ ଲମ୍ବିଅଛୁ ପାଦ ତଳକୁ
ତୁଳସୀ କେତକୀ ଶୋଭା ଚୂଳକୁ ହେ
ନାନା ଫୁଲେ ହୋଇ ସଜ ହେ
ବେଶ ସାର ପ୍ରଭୁ ମଣୋହି କରନ୍ତି
ଅଖିଳ ବ୍ରହ୍ମାଣ୍ଡ ରାଜ ହେ ॥୧୩॥

ଭୋଗ ସାର ପ୍ରଭୁ ହୋଇ ଆଳତି
କର୍ପୂର ବଢ଼ିଆ ଲାଗି ହୁଅନ୍ତି
ପୁଷ୍ପ ଆଞ୍ଜୁଳିରେ କଲା ଶ୍ରୀ ମୁଖ
ଦେଖିଲେ ମନରେ ନ ଥାଇ ଦୁଃଖ ହେ
ରତ୍ନ ପଲଙ୍କଙ୍କୁ ଆଣି ହେ
ବଢ଼ିଆ ପଇଡ ଲାଗି ହୋଇ ପ୍ରଭୁ
ପହୁଡ଼ିଲେ ଚକ୍ରପାଣି ହେ ॥୨୪॥

ଜଗନ୍ନାଥଙ୍କର ଯେ ଲୀଳାମାନ
କହି ନ ପାରିବେ ଦେବତା ଗଣ
ନୀଳାଚଳ ଲୀଳା ଶ୍ରୀ ପ୍ରଭୁଙ୍କର
କେ କହି ପାରିବ ମନୁଷ୍ୟ ଛାର ହେ
ଜଗନ୍ନାଥ କୃପା କର ହେ
ସହସ୍ର ମୁଖରେ ଅନନ୍ତ କହିବେ
ଯଦି ଲେଖେ ଗଣେଶ୍ୱର ହେ ॥୨୫॥

ତିନି ଭୁବନରେ ମୁଁ ବଡ଼ ନୀଚ
ହୋଇଅଛି ପାପୀ ମାନଙ୍କ ଉଚ୍ଚ
ଜଗତ ଭିତରେ ମୁଁ ବଡ଼ଦୁଃଖୀ
ସେବା ବୃତ୍ତି ଦେଇ କରାଅ ସୁଖୀ ହେ
କୃଷ୍ଣଚନ୍ଦ୍ର କୃପା କର ହେ
ଦନ୍ତରେ ତରଣ ଧରି ମୁଁ ଶରଣ
ପଶୁଅଛି ଶ୍ରୀ ପଦ୍ମର ହେ ॥ ୨୬॥

କୁଂଜବହ୍ବାସୀ ହେ ତୁମ୍ଭ ଚରଣ
ଜଂଜାଳ ଯାଉ ଦଅ ଦାସୀ ପଣ
ଲଭିବ ଭକ୍ତି କ ସଂପଦ ବଧି
ତାରିତ ଏ ଭବ ଜଳ ବାରିଧି ହେ
ଦାବାନଳେ ମୋର ଦୋଷ ହେ
ଶୀଘ୍ର ନାଶ କର ଆହେ ମହାପ୍ରଭୁ
ରଖ ନେଇ ତୁମ୍ଭ ପାଶ ହେ ॥୨୭॥

କୁଞ୍ଜଲତା ଏହୁ ଗୀତରେ ଗାଇ
କର ଯୋଡ଼ି କୁଞ୍ଜେ ସେବା ମାଗଇ,
କରୁଣାକର ଶ୍ରୀ ଗୋପୀନାଥ
ବ୍ରଜେ ଗୋପୀଙ୍କର ହୋଇବ ଭୃତ୍ୟ ହେ
କୃପାସିନ୍ଧୁ ନାମ ଧର ହେ
ଶୁଣିଣ ହୃଦେ ମୁଁ ଭରସା କରୁଛି
ହୋଇବ ବୋଲି କିଂକରୀ ହେ ॥୨୮॥

**

**

# ପ୍ରଭୁ ହେ

## ସୋମନାଥ ସିଂହ ଜଗଦେବ

(ଊନବିଂଶ ଶତାବ୍ଦୀ)

ପ୍ରଭୁ ହେ ବହୁତ ଦୁଃଖ ହୋଇଲା
ସିନ୍ଧୁ ନନ୍ଦନୀ ବଲ୍ଲଭ ପଦ୍ମ ପାଦ
କୃପାତ ମୋହରେ ନୋହିଲା ॥ଘୋଷା॥

ଜଣାଇବ ଶ୍ରୀ ଗୁମୁରେ ବୋଲି କର
କରଥାଏ ମନେ ଭାଳେଣି
ଚଉଦ ବ୍ରହ୍ମାଣ୍ଡ ପ୍ରଭୁ ଆଉ ଆଉ
ଚନ୍ତା ହେବ କାହିଁକ ପୁଣି ॥୧॥

ଶ୍ରୀ ଗୁମୁରେ ସେବ.ବଡ ଭରସା ମୋ
ଅଭୟା ହେଲା ଚଉରେ
ଗୁହାର ନ ଶୁଣି ମୋର ମହାମେରୁ
ପ୍ରଭୁ କରୁଣା କ ଚଉରେ ॥୨॥

ଯାହାର ଶ୍ରୀ ମୁଖ ଦର୍ଶନ ମାତ୍ରକେ
ଅନ୍ଧ ପାଇଲା ଚକ୍ଷୁଦାନ
ସେହୁ ଶମ୍ଭୁକୁ ସେବା କର କର
ହୋଇଲ ଏବେ ହୀନ ମାନ ॥୩॥

କହା ଯେ ବହୁବ ଭୃତ୍ୟ ନାଶ ହେବ
ଉମ୍ଭର ଦେଖିଣ କପଟ
ଅକାଟ ନୋହୁ ଶ୍ରୀ ମୁଖେ ଆଜ୍ଞା ହେଉ
ଯାଉ ଏବେ ମୋର ସଙ୍କଟ ॥୪॥

ହାସ୍ୟ ହୋଇଲଣି ବେଳକୁ ବେଳକୁ
ଦେଖି ନ ଶୁଣି ମୋର ଦୁଃଖ
କେତେଦୂରେ କରିବର ଡାକଲାରୁ
ରଖିଲ ତାକୁ ପଦ୍ମ ମୁଖ ।।୫।।

ଯାହା ମହିମାତ ଅପାରୁ ଅପାର
ଶୁଣିଣ ପଶିଲି ଶରଣ
ଶରଣ ରକ୍ଷଣ ଦ୍ରୌପଦୀ-ତାରଣ
ତୁମ୍ଭ ଆଜ୍ଞା ମୋର କାରଣ ।।୬।।

ଯେତୁ ଦେଖିଥାଇ ସେ ଯିନା ଜାଣଇ
ଆଉ କେ ଜାଣିବ କହତ ?
ମାରକଣ୍ଡ ଋଷି ଭସି ଯାଉଥିଲେ
ରଖିଲେ ପତ୍ର ଯେ ତାହାନ୍ତୁ ।।୭।।

ଦୟାସାଗର ଖଳଲେ ଲୋକେ ଶୁଣି
ହୋଇବେ ବଡ ଆଚମ୍ବିତ
ଅଚନ୍ତା ପୁରୁଷ ଚନ୍ତା ଯାଉ ନାହିଁ
ବେଦ ପୁର ମଧ୍ୟତ ।। ୮ ।।

ମଣିମା ମୁଁ ଯାହା କହୁଛୁ ଶୁଣିମା
ଆସୁ ଦ୍ୱଦ୍ୟ ଅବଧାନକୁ
ଲଲାଟ ପଟେ ନ ଥିବ ଯାହା ଲେଖା
ବର୍ତ୍ତିଲେ ହେବ ତାହାକୁ ।। ୯ ।।

ଅବ ଧାନକୁ ଆସୁ ଯା' ଜଣାଉଛୁ
ଚିତ୍ତରେ କରିବା ବିଚାର
ଚନ୍ଦ୍ରେ ସୋମନାଥ ଜଗଦେବ ବୀର
କର ରାଧାକୃଷ୍ଣ ପସୁର ।। ୧୦ ।।

**

**

# ଦେଖ ଦେଖ ପଦ୍ମମୁଖ

## ସୋମନାଥ ସିଂହ ଜଗଦେବ

(ମାଳଶ୍ରୀ)

[ଊନବିଂଶ ଶତାବ୍ଦୀ]

ଦେଖ ଦେଖ ପଦ୍ମମୁଖ ମହାମେରୁ
କ୍ଷୟ ହୁଏ କୋଟି ଜନ୍ମର ଦୁଃଖ ||ଘୋଷା||

ଶିର ଶୋଭିବନ ସେବତୀ ପୁଷ୍ପ
ଶ୍ରୀ ରଙ୍ଗା ଅଧରେ ଲାବଣ୍ୟ ହସ
କରୁଛନ୍ତି ପ୍ରଭୁ ଜଗତେ ବାସ
ଚକା ନୟନେ ମୋହନ୍ତି ବିଦଶ || ୧ ||

ଠେକ ନାସାକୁ ଶୋଭଇ ବସଣୀ
କର୍ଣ୍ଣେ କୁଣ୍ଡଳ କଣ୍ଠେ ନାନା ମଣି
ହୃଦେ କଉସ୍ତୁଭ ବସନେ ପୁଣି
ତେଜ ପ୍ରକାଶ ଦିନମଣି ଯେହ୍ନ || ୨ ||

କପୋଳେ ଜମ୍ବୁନଦ ଠିଆ ଚକା
ଏଥିପରେ ଅଛି ଗଜ ମୁକୁତା
ଭୁଜ ଟେକିଛନ୍ତି ଜଗତକର୍ତ୍ତା
ଭକତ ବାନ୍ଧବ ତ୍ରୈଲୋକ୍ୟ ପିତା ||୩ ||

ସିଂହ କଟିରେ ଶୋହେ ପିତାମ୍ବର
ତହିଁ ଭିଡିଛନ୍ତି କିଙ୍କିଣୀ ସାର || ୪ ||

ରତ୍ନ ସିଂହାସନ ଚକା ଉପରେ
ବିଜେ କରିଛନ୍ତି ନୀଳ କନ୍ଦରେ ॥ ୫ ॥

କରୁଣା କଟାକ୍ଷ ହେଉ ମୋ ଠାରେ
ସୋମନାଥ ସିଂହ ରାଜା ବସ୍ତୁରେ ॥ ୬ ॥
**

**

# କାହିଁ ତେ ଦୟା ନୋହିଲା

## ସୋମନାଥ ସିଂହ ଜଗଦେବ

[ଊନବିଂଶ ଶତାବ୍ଦୀ]

କାହିଁତେ ଦୟା ନୋହିଲା
କମଳ ଲୋଚନ ପ୍ରଭୁ ଆଉ ଆଉ
ମୋ କର୍ମ ବିଫଳ ହୋଇଲା ହେ ॥ ଘୋଷା ॥

ନୀଳାଚଳେ ଥାଇ ଡାକିଲେ ନ ଶୁଣ
ଏ କଥା ସନ୍ଦେହ ଲାଗିଲା
କେତେ ଦୂରେ ଗଜରାଜ ସୁମରନ୍ତେ
ସେ କଥା କର୍ଣ୍ଣକୁ ଶୁଭିଲା ହେ ॥

ମହା ଘୋର କଷ୍ଟ ଗାନ୍ଧାରୀ ନନ୍ଦନ
ସଭାରୁ ଦ୍ରୌପଦୀ ଟାଣିଲା
କୋଟି ବସ୍ତ୍ର ପାଇ ଖଳମତି ପଣ
ବଦନେ କାଳି ଲଗାଇଲା ହେ ॥

ଆହୁର କଥାଏ ଶୁଣି ଅଛୁ କର୍ଣ୍ଣେ
ପାଷାଣ ଯୁବତୀ ହୋଇଲା

ଶ୍ରୀ ରଘୁ ନନ୍ଦନ ଚରଣ ଲାଗିଣ
ପଦଭକ୍ତେ ଲେଖା ହୋଇଲା ।।

ଘୋର ବନେ ପଶି କୁରଙ୍ଗୀ ନନ୍ଦନ
କୁରଙ୍ଗୀ କ ଦଶା ପଡିଲା
ଦୀନବନ୍ଧୁ ନାମ ହୃଦରେ ଧରନ୍ତେ
କେଡ଼େ ବପତ୍ତିତା ଛାଡ଼ିଲା

କମଳାକାନ୍ତକୁ ଭରସା କରଣ
ଲୋକ ହସା ଏବେ ହୋଇଲା
ଭଣେ ସୋମନାଥ ଅନୁକୂଳ ପଥ
ଏ ନିନ୍ଦା କାହାକୁ ହେ ଇଲା
**

**

## ଛାଡ଼ ମାଡ଼ଖିଆ ବୁଦ୍ଧି ହେ

### ବୈଷ୍ଣବ ପାଣି

[ ବିଂଶ ଶତାବ୍ଦୀ ]

ଛାଡ଼ ମାଡଖିଆ ବୁଦ୍ଧି ହେ
ବଡ଼ ଦେଉଳ ବଡ଼ ଗୋସାଇଁ
ଯେ ମାଇଲା ମାଡ଼ ସେ ହୋଇଲା ବଡ
ବାଡ଼ ହେଲୁ ତାକୁ ବୁଦ୍ଧ ॥ ଘୋଷା ॥

ମାଡ଼ଦେଲା ଗୋପେ ଗଉଡୁଣୀ ରାଧା
ତା' ଗୋଡ଼ ଧଇଲୁ ବୁଦ୍ଧ
ନନ୍ଦ ଖୁଡ ଗୁଣ୍ଟ ଆଣ୍ଠେ ପିଟିବାରୁ
ଦେଲୁ ବଇକୁଣ୍ଠ ଭୂଇଁ ॥ ୧ ॥

କାମୁଡ଼ିଲା କାଳୀ ପାଦେ ବନମାଳୀ
କାଳନ୍ଦୀ ହ୍ରଦରେ ଆଇଁ
କଠାଉର ଚହ୍ନ ତା'ଶିରେ ମୋହନ
ଦେଲୁ କାହିଁ ଅଛୁ ରଦ୍ଧ ॥ ୨ ॥

ଉଗ୍ରପଣେ ଉଗ୍ରସେନ ଉଗାଳିଲା
ଲଉଡ଼ି କରେ ଉଞ୍ଚାଇ
ତାର ଶିରେ ପାଟ ଦେଲୁ ନନ୍ଦସୁଟ
କହଣ ମଥୁରା ସାଇଁ ॥ ୩ ॥

ପାଣ୍ଡବଙ୍କ ପାଇଁ ପଡ଼ା ମାଗି
ମାଡ଼ଖାଇ କଲୁ ରଣଜୟୀ
ପାଦ ପ୍ରହାରନ୍ତେ ଶ୍ରୀବତ୍ସ ବ୍ରାହ୍ମଣ
ତା' ପାଦକୁ ଅଛୁ ବହି ॥ ୪ ॥

ମାଙ୍କୁଆ ମୋହନ ମାଡ଼ ବନ୍ଲୁ ଆନ
ଯୋଗ ତୋ' କରମେ ନାହିଁ
ବଇଷ୍ଣବ ଭକ୍ତ କଣ୍ଢଆ ଧଣ୍ଡଛୁ
କରେ ଲଗାଇବା ପାଇଁ ॥ ୫ ॥
✱✱

✱✱

# ଦଗାଦଆ ରଙ୍ଗାଧର

## ବୈଷ୍ଣବ ପାଣି

(୧୯ଂଶ ଶତାବ୍ଦୀ)

ଦଗାଦଆ ରଙ୍ଗାଧର
ଅଘା ତାଳୁ ଭଙ୍ଗା ଗାଈ ଜଗା
ଦହ୍ନ ମ୍ଭେଖ ହେ ॥ ପଦ ॥

ନାହିଁ ଲଗା ପଘା ତୋତେ
ବାନ୍ଧିବେ ରଖିବ ହାତେ
ଯୋଗେ ଜାଗି ଯୋଗୀ ଜନେ
ନୋହିଲେ ପାଉର ହେ ॥ ୧ ॥

ଜଗା ଜଗା ଡାକ ଡାକ
ଜୀବନ ଘିବ ଏଣିକ

ଝଘା ନ ରଖିଲେ ଜାଗା
ନାହିଁ ଏଥି ମୋର ହେ ॥ ୨ ॥

ଗଙ୍ଗା ସ୍ନାନ ଜପତପ
ଭୋଗାଭୋଗ ଏ ମୋ ଲୋପ
ଡଙ୍ଗାବୁଢ଼ା ରଙ୍ଗାପଦ
କଣଅଛୁ ସାର ହେ ॥୩॥

ସେ ବଡ ସିଂହାର ବେଶ
ଦେଖୁଥିବ ପୀତବାସ
ବଇଷ୍ଣବ ଖାସ
ରତ୍ନସିଂହାସନ ଚୋର ହେ ॥୪॥

**

**

# ମିଛେ ନୀଳାଚଳ ନାଥ

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

ମିଛେ ନୀଳାଚଳନାଥ, ବସିଅଛୁ ନୀଳାଚଳେ
ପଣ୍ଡା ରନ୍ଧାଭାତ ଡାଲି ଗିଳଣ ବଡ ଦେଉଳେ ॥ପଦ॥

ଗଣ୍ଡାଗଣ୍ଡା ହଣ୍ଡାହଣ୍ଡା କାକରା ଆଣସା ମୁଣ୍ଡା
ଥଣ୍ଡା ହୋଇ ଦୁଇଭାଇ ଭଣ୍ଡି ଖାଇ ପାଞ୍ଚବେଳେ ॥୧॥

ଅସ୍ତ ହେଲା ସନ୍ତୁଁ ଭୋକ କପାଁ ଶୁଣିବ କା' ଡାକ
ଅରଜିଲ ମହାସୁଖ ମଣ୍ଡି ଧଣ୍ଡା ବଢ଼ଚୁଲେ ॥୨॥

ମୁଣ୍ଡାମୁଣ୍ଡା କୁଣ୍ଡାପିଠା     ଶେଷରେ ଗୁଣ୍ଡକୁ ମିଠା
ଭକତ ବଚନ ଖଣ୍ଡା     ଲାଗିଯାଏ ଭୂ-ମଣ୍ଡଳେ ।।୩।।

କାଣ୍ଡି କେ ଭକତ ଯେତେ     ତାହାଙ୍କ ଫାଣ୍ଡିରେ ତୋତେ
ଭକ୍ତ ବେଢ଼ି ଦେଇ ହାତେ     ଥୋଇ ହୃଦ ବନ୍ଦୀଶାଳେ ।।୪।।

ବଗଡ଼ା ହୁଅ ଚଣ୍ଡୁଳ     ଭୁଞ୍ଜି କପାଳ ହଣ୍ଡାଳ
ଖଣ୍ଡ ବଇର ଭଞ୍ଜନ     ପଣ୍ଡ ନୋହୁ କାଳେକାଳେ ।।୫।।

**

**

# ହାତୀ ମୁହାଁ ଜଗବନ୍ଧୁ

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

ହାତୀ ମୁହାଁ ଜଗବନ୍ଧୁ
        ଜାତି ନାହିଁ ତୋହର ହେ
ଜାତି ଜ୍ଞାନ ଥିଲେ ଛତି
        କରନ୍ତୁ କି ମୋହର ହେ ।।ପଦ।।

ନାହିଁ ଉଚ୍ଚ ନୀଚ ତୋର
        କେ ଦ୍ୱିଜ କେ ବା ଚମାର
ଖାଇଲୁ ଅଇଣ୍ଠା ପାଣେ
        ଯେ କରିଲା ଗୁହାରି ହେ ।।୧।।

ପୋଇଲି ପୁଅ ବିଦୁର
        ଭଲ ସେ ତୋତେ ଆଦର

ଶାକ ଅନ୍ନ ଭୁଞ୍ଜି
ଖୁସି ମନେ ଗଲୁ ବାହାର ହେ ॥୨॥

ଗୋପାଳ ଝୋକାଏ କୋଳ
ଘୁଞ୍ଚି ଦେଲେ ବନମାଳୀ
ତା' ଗର୍ଭକୁ ଦେଲୁ ଗିଳ
ବୃନ୍ଦାବନ ବହ୍ନାସ୍ତି ହେ ॥୩॥

ଦନ୍ତ କ୍ଷତ ଚୁତ ଫଳ
ହରଷେ କଲୁ କବଳ
ହେଲା ଶବଷ୍ଠି ନବସ୍ଥି
ବର ଦେଲୁ ତାହାର ହେ ॥୭॥

ମୁଁ ବିପ୍ର ଡାକୁଛୁ ଏତେ
ବ୍ରୀଡ଼ା ମାଡ଼ୁଛୁ କେମନ୍ତେ
ବଇ ବୋଲେ ଫଳେ ଭୁଂଜ
ଅଙ୍ଗ ଉଠୁ ଶୀହସ୍ତି ହେ ॥୫॥

**

**

# ବଡ଼ ପ୍ରଭୁ ବୋଲ

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

ବଡ଼ ପ୍ରଭୁ ବୋଲ ଯେତେ ମୁଁ ଡାକଇ
ଜଡ଼ ପରି ହେଲୁ ତୋତେ
ଅଜ ହେଲେ ଏ କାଳରେ କମ୍ପୁପାଣି
କେ ବଡ଼ କହିବ ତୋତେ

ଝାଡ଼ ବହାଗ୍ରି ହେ
ଯେବେ ରଖିବ ସେବକ ପଣ
କେଡ଼ା ତା ଉତ୍ତର ଆହେ ରମାବର
ନ ହୁଅ କେବେ କୃପଣ ॥୧॥

ବଡ ତୋ ଦେଉଳ ବଡ ଧଣ୍ଡାମାଳ
ସେବକ ତୋ ବଡପଣ୍ଡା
ବଡ଼ଚୂଲ ମାଳ ଚନ୍ଦପରେ ତେଳ
ପକାଇ ହୋଇଛୁ ମଣ୍ଡା
ମୂଢ ତାରଣ ହେ
ପୁଣି ବଡ଼ ଖଣ୍ଡା ତୋ ଭଣ୍ଡାରେ
ବଡ଼ ଛତା ବଡ଼ ଦାଣ୍ଡ ବୋଲି ହୁର
ପଡ଼ୁଅଛୁ ବ୍ରହ୍ମାଣ୍ଡରେ ॥୨॥

ବଡ଼ଧୂପ ବଡ଼ ସିଂହାର ଗୁଳଛୁ
ଯେତେ କଥା ବଡ଼ ସବୁ
ଏକା ବୁଦ୍ଧି ଶ୍ରେଷ୍ଠ ନନ୍ଦରାଜା ଶୁଷ୍ଠ
କାହାକୁ କି କପଟ ଦେବୁ
ଜଗମୋହନ ହେ
ଛଳେ ଠିକଣା ତୋ' କଛୁ ନାହିଁ
ଦୁଃଖ ପରେ ଦୁଃଖ ଦେଇ ଆଉ ଟାଳି
ଯେ ସେବା ତୋର କରଇ ॥୩॥

ପ୍ରଭୁ ଯେବେ ନିଜ ଭୃତ୍ୟକୁ ଦଣ୍ଡିବ
କେ ଆଉ କରିବ କ୍ଷମା
ଧରିବ କାହାକୁ ହରିବ କିଏ ସେ
ରୋଗ ଶୋକ ଦୁଃଖ ସୀମା
ରମାରମଣ ହେ
ସବୁ ତୋର ବିପରୀତ
ବଳିଷ୍ଠବ କହ ପରକୁ ବଞ୍ଚାଇ
ମରାଇଲୁ ନିଜ ସୁତ ॥୪॥

**

**

# ଘର ବୁଢ଼ା ଜଗବଂଧୁ

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

ଘରବୁଢ଼ା ଜଗବଂଧୁ ପର କଲୁ କାହିଁକି
ଶଙ୍ଖଚକ୍ର ଗଦାପଦ୍ମ ଧରି ଭୁଜେ ନାହିଁକି ।।ପଦ।।

କାହାର ତୋଳାଇ ଦେଉ ସୁନା ଉଆସ
ନ ଦେଉ କାହାକୁ କୁଟା କାଠ ବାଉଁଶ
କାର କଷ୍ଟଦନ୍ତ ଖଟେ କେ ଭଜଇ ମନ୍ଦିର ।।୧।।

ବାଂଶବନ ପରି ବଂଶ ବାଢ଼ଇ କାହିଁ
କାହାକୋଳେ ଏକ ଗୋଟି ସନ୍ତାନ ନାହିଁ
ଯଦ୍ର ମାଗି ଆଣେ ବଳେ ଦେଉ ଜନ୍ମ ସାଇଁକି ।।୨।।

ସ୍ୱର୍ଣ୍ଣ ସିଂହାସନେ କାକୁ ଧରାଉ ଛତା
ଅନ୍ନ ଅନ୍ନ ଭଜକାର ହଜଇ ଚେତା
କେ ଜୀଅଇ ପୂର୍ଣ୍ଣ ଭୋଗେ କେ ରୋଗକୁ ବନ୍ଧକି ।।୩।।

ମୂରୁଖ ପଣେ କେ ପାଏ ଧନ ଅସଂଖ୍ୟ
ଜ୍ଞାନ ଅରଜନ କରି ମାଗେ କେ ଭିକ
ଶୋକେ ପଡ଼ି କେହୁ ମରେ ନାନା ଦୁଃଖ ସହିକି ।।୪।।

ହସି ହସି ହବା କିଣି ଯାଉଛୁ କାଁର
କାହା ଚକ୍ଷୁରୁ ନ ଛାଡ଼େ ଚନ୍ଦ୍ରା ଜଳର
ନ ଦେବୁ ଆଉ କପଣ ତୋ ସେବକ ବଇକି ।।୫।।

**

**

## ଚକ୍ରଧର ହେ

### ବୈଷ୍ଣବପାଣି

(ବିଂଶ ଶତାବ୍ଦୀ)

ଚକ୍ରଧର ହେ, ତୋର ଠିକଣା ନାହିଁ
ଖଣାରେ ପକାଇ ବଣା କରୁଅଛୁ
କଣା ପଣ ଜୀବ ମରୁଛି ଧାଇଁ

ଝଣାଝଣି ମିଛେ ଲଗାଇ ଦେଇଛୁ
କେ କାହା ଭଉଣୀ କେ କାହା ଭାଇ
କେ କାହାର ଶଳା, କେ କାହା ମଉଳା
କେ କାହାର ଝିଅ, କେ କାହା ଜ୍ୱାଇଁ ॥୧॥

ଗୋଟା ଦାଉଣୀର ଯୋଚଣ ଏହାକୁ
ମରୁଛି ମଝିରେ ଲହୁଣୀ ଖାଇ
ଏକା ଗଉଣୀରେ ଦାନେ ପୁରାଇବୁ
ଚିହ୍ନି ନ ପାରବ ଅଜାଙ୍କୁ ଆଇ ॥୨॥

ମିଛେ କଣା ବକା ତୋହର ଜୀବିକା
ମିଛେ ହଣାହଣି ଦେଖୁଛୁ ରହି
ଘଣା ପଣ ସ୍ୱପ୍ନ ଦିବସ ସ୍ୱଳଛି
ଅଠ୍ ମିଛୁଆଙ୍କ ଗୁରୁ ଗୋସାଇଁ ॥୩॥

ତୋ ବିନା ଏ ଦେହ କି କହିବ କହ
ଘୋଷାର ଗଳାରେ ପଘା ଲଗାଇ
ବେନକଣ୍ଠି ସତ ଥୋଇଛୁ ଜଗତ
ଦଇ ବୋଲେ ତୋତେ ଜାଣିଛୁ ସେହି ॥୪॥

**

**

# ଚଢ଼ି ରେଲ ଗାଡ଼ିରେ

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

ଚଢ଼ି ରେଲ ଗାଡ଼ିରେ, ଚାଲ ମନ ନୀଳାଚଳକୁ
ଓହ୍ଲାଇଣ ଷ୍ଟେଣ୍ଟେ ମିଳି ବଡ ଦାଣ୍ଡେ
ବୋଲ ମୁଣ୍ଡେ ରଙ୍ଗଧୂଳକୁ ।।ପଦ।।

ମଶାକୁ ନ ଡର ବସା ଖର୍ଚ୍ଚେ କର
ଘୂଲ ଯା' ବଡ ଦେଉଳକୁ
ରତ୍ନ ସିଂହାସନେ ଯତ୍ନେ ଛୁଇଁ ଶିର
ବେଢା ବୁଲି ଆସ ତଳକୁ ।।୧।।

ଯେବେ ହୁଏ ମନ କରୁ ଦେଇ ଧନ
କିଣ ଅରୁଆ ପଖାଳକୁ
ବଗଡ଼ା ଅଭଡା ଗିଳ ଥୋଡା ଥୋଡା
ବଳିଲେ ରଖ ସକାଳକୁ ।। ୨ ।।

ନରେନ୍ଦ୍ର ମାର୍କଣ୍ଡ ଚନ୍ଦ ତୀର୍ଥେ ବୁଡି
ଯାଅ ମହୋଦଧି କୂଳକୁ
ଇନ୍ଦ୍ରଦ୍ୟୁମ୍ନ ତହିଁରେ ସ୍ନାହ୍ନାନ
ସାର ଲଭ ବାଞ୍ଛା ଫଳକୁ ।। ୩ ।।

ଗୁଣ୍ଡିଚ୍ଚ ମନ୍ଦର ଲୋକ ନାଥେଶ୍ୱର
ଦେଖି ନ ଯା' ଯମ ଆଳକୁ
ନାହିଁ ତାର ମୂଲ୍ୟ କଣି ନଣମାଲ୍ୟ
କୈବଲ୍ୟ ଫେରବା ବେଳକୁ ।।୪।।

ମାଳପାଠ ଫୁଲ୍ ନ ଯା' କେବେ ଭୁଲ
ସେ କୋଉ ଖଇର ଚୂଲକୁ
ଗାଆ ରେ ପହଞ୍ଚ ବାହ୍ୱାରେ ବାଣ୍ଟରୁ
ନ ଭଙ୍ଗ ବଇଆ ଖେଳକୁ ॥ ୫ ॥

**

**

## ଭାତ ବିକା ଜଗନ୍ନାଥ

### ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

ଭାତ ବିକା ଜଗନ୍ନାଥ ଘୃତର ସଶବ ହେ
କାତରେ ଡାକ ଖାତରେ ପଡନ୍ତେ ଗଶବ ହେ ॥ପଦ॥

ଇତର କଶବେ ଅଠା ହେବୁ କେତେ ହଠ ହଠ।
ଉଦର ତୁଣ୍ଡରୁ ତେତେବେଳେ ନଷ୍ଟ ଶବ ହେ ॥୧॥

ଗୋତର ମରି ଗୋବନ୍ଦ ଭିତରେ ତୋ ବଡ଼ମନ
ଭୁଞ୍ଜିବା ପତରେ ଧୂଳି କେ ନେଇ ଭଶବ ହେ ॥୨॥

ଶୁଣିଛୁ ସୃଷ୍ଟିଭିତରେ ତାରନ୍ତୁ କେତେ ପାତରେ
ମିଛ ବୋଲ୍ ମୋ ଅନ୍ତରେ ମଣଇ ସରବ ହେ ॥୩॥

ମାତର ତାହେଲେ ସତ ହାତରେ କି ରଖନ୍ତୁ
ସତର ଦେବଙ୍କୁ ବଇଷ୍ଣବ କି ବଶବ ହେ ॥୪॥

**

**

# ହେଲା କରନା ହେ

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

ହେଲା କରନା ହେ, ନୀଳାଚଳ ନାଥ ଆଉ
ବଳାଇଲୁ ଦୁଃଖ କଳାକର ମୁଖ
ତୋ ପଦ୍ମ ସ୍ଥଳକ ଆଉଁ ॥ପଦ॥

ମିଳାଇଲୁ ଦେହ ଜଳେ ଲୁଣ ପରି
ପଳାଇ ଯିବ ଏ ଜୀବ
ଟଳାଟଳ କଲେ ଲୀଳା ବିନୋଦିଆ
କେ କପାଁ ତୋତେ ଭଜିବ ॥୧॥

ଲୋକଟା ଛଟା କା'ଠାରୁ ଶିଖିଲୁ
ଭୁଲବୁଡ଼ା ନନ୍ଦବଳା
ଦୁରୁବଳେ ବଧି କି ଫଳ ପାଇବୁ
କୁରୁବଳ ଦମ୍ଭଟଳା ॥୨॥

ଭୁଲାପଟ ପରି ଶଇଳ ତୋଳିଲୁ
ଗୋକୁଳ ଆକୁଳ ଦେଖି
ମୋ ବେଳକୁ ଏବେ ପଛକୁ ଘଞ୍ଚୁଛୁ
ଲାଞ୍ଚ ଦେଇଥିଲେ ସେକି ॥୩॥

ଅରଜୁନେ ଶଳା ହୋଇ ନନ୍ଦଘୋଷ
ଚଳାଇଲୁ ଭାରତରେ
ଦେଲେ କି ଫୁଲାଏ କୋନ୍ତ ପାଞ୍ଚ ପୋଏ
ହାର୍ ନୀଳା ତୋ ହାତରେ ॥୪॥

ନିଜଗୋଇ ନଜେ ନ ଖୋଲା ସହଲେ
ଜଳଧି ଜେମା ବଲ୍ଲଭ
ବଇଷ୍ଣବ ଖଲେ ଖପେ ଶୋକଢଲେ
ବଢ଼ା ଚୋ କର ପଲ୍ଲବ ॥୫॥

**

**

# ଛୁଡ଼ା ହୋଇ ଜଗମୋହନ

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

ଛୁଡ଼ା ହୋଇ ଜଗମୋହନ
ଗରୁଡ଼ ପଛରେ ବହନ ଅନାରେ
ଧଳା ହଳଦିଆ କାଳିଆ ବଦନ
ଦେଖି ଦମ୍ଭକର ଚୂନାରେ ॥ପଦ॥

ରତ୍ନ ସିଂହାସନେ ବଜେ ଚନମୂର୍ତ୍ତି
କେ କାହାକୁ ଊଣା ଅଧିକା ନୁହନ୍ତି
ଝଟକଇ ଖାଗ୍ ମଣ୍ଡଳ ଉପରେ
ଅଟକଇ ନେତ୍ର ସିନାରେ ॥୧॥

ତା'ପରେ ସାଜଇ ଦସ୍ତେଣାର ଚୂଳ
ବାହାରେ ଦୋଳଇ ତୁଳସୀର ମାଳ
ନୀଳପୀତପଟ ଶୋଭେ କଟୀତଟ
ଭୁଜେ ଭିଡ଼ାଅଛୁ ବାନାରେ ॥୨॥

ମାଣିକ୍ୟର ଦୀପ ଆଗରେ ଜଳଇ
କଳାମେଘେ କ ସେ ବିଜୁଳି ଖେଳଇ

ଗ୍ରୀଷ୍ମର ଆଲଟ ପଡ଼େ ବେଦପଟେ
ବେଣ୍ଟ ଲଗିଅଛୁ ସୁନାରେ ॥୩॥

ମାଗି ଯେନ ମନ ଚଉବର୍ଗ ଫଳ
ନଷ୍ଟେ ତୋ କାମନା କରବେ ସଫଳ
ଗୁଡ଼ିଲେ ଏ ବେଳ ବଇଆ ପାଗଳ
ବନ୍ଦୀ ହେବୁ ଯମ ଥାନାରେ ॥୪॥
**

**

# ଦେଖ ବଉଳ ଗୋ

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

ଦେଖ ବଉଳ ଗୋ,
ବଡ ଦେଉଳ ଭିତର ବେଢ଼ା
ଅରୁଣ ଖମ୍ବକୁ ପାର ହୋଇ
ହୁଅ ପତିତପାବନେ ଛିଡ଼ା ॥ପଦ॥

ଏହାପରେ ଭୋଗ ମଣ୍ଡପରେ ମୁଣ୍ଡ
ମାର ଦେଖ ଗଣେଶଙ୍କୁ
କଳ୍ପ ବଟ ତଳେ ଅଳପ ରହିଗଲ
ରୋହଣୀ କୁଣ୍ଡ ପାଶକୁ ॥୧॥

ସ୍ବର ଭୁଜ ଧର ଭୁଷଣ୍ଡ ପଡ଼ିଛୁ
ସିଞ୍ଚ ଶିରେ ସେହୁ ଜଳ
ସେ କୁଣ୍ଡ ପଛରେ ନରେଖ ସ୍ୱଚ୍ଛରେ
ଦର୍ଶେ ବିମଳାଙ୍କ ଆଳ ॥୨॥

ଅଶେଷ କ୍ଷମତା ଧରିଛନ୍ତି ମାତା
ମନକଥା ତାଙ୍କୁ ଜଣା
ସେ କରୁଣା ଦୃଷ୍ଟି ପଡ଼ନ୍ତେ ତୋ'ପରେ
କିଛିହେଁ ନ ହେବ ଊଣା ।।୩।।

ଯମ ମାଆ ସାତ ଭଉଣୀ ତା' ବାମେ
ତା' ବାମେ ଗାବ ଦୋହନ
ଯେଉଁ ଶିକାଛନ୍ଦ ଗୋରୁଙ୍କୁ ଛନ୍ଦନ୍ତି
ଆନନ୍ଦେ ମନମୋହନ ।।୪।।

ଲକ୍ଷ୍ମୀ ଦେବୀଙ୍କର ଅଚିନ୍ତା ମଣ୍ଡପ
ତା' ବାମେ ଦିଶେ ସୁନ୍ଦର
ସର୍ବ ଜୀବେପଡ଼ି ଦେଉଛନ୍ତି ରଡ଼ି
ଲାଗିଛି ନାନା ହୁନ୍ଦର ।।୫।।

କୋଇଲି ବୈକୁଣ୍ଠ କଇବଲ୍ୟ ହାଟ
ସ୍ନାହାନ ଆସ୍ଥାନେ ଦେଖି
ଏହାପରେ ବଡ଼ ଦେଉଳେ ପଶିଣ
ବଇ ବୋଲେ ହେବା ସୁଖୀ ।।୬।।

**

**

# କି ମଧୁର ତନୁ ମୂରତି

## ବୈଷ୍ଣବ ପାଣି

[ବିଂଶ ଶତାବ୍ଦୀ]

(ରାଧାଗୋବିନ୍ଦ-ବୃନ୍ଦେ)

କି ମଧୁର ତନୁ ମୂରତି, ଆହା ଭୁଲି ମନରେ
ଅଟକି ଯାଉଛି ନୟନ ମନ ଭୁଲି ମନରେ
ଛଟକେ ସେ ସୁଧା କରଣ ପାନ ଭୁଲି ମନରେ ॥ ୧ ॥

ନୀଳ ପୀତପଟ ବେଶ କି ସାଜେ ଭୁଲି ମନରେ
କଳ୍ପ କଳ୍ପାନ୍ତର ଦୁରିତ ଗଞ୍ଜେ ଭୁଲି ମନରେ ॥ ୨ ॥

ଜଲପି ହେଉଛି ବିଷୟୀ ବିଷ, ଭୁଲି ମନରେ
କାଲେ ଜାଲେ ଭସ୍ମ କାଲର ବିଷ ଭୁଲି ମନରେ ॥ ୩ ॥

ହୃଦେ କଉସ୍ତୁଭ ବିଦ୍ୟୁଝ୍ଲକେ, ଭୁଲି ମନରେ
ପକାଇ ନ ଦିଏ ନେତ୍ର ପଲକେ, ଭୁଲି ମନରେ ॥୪ ॥

ଆଗେ ଜଳେ ଚାରୁ ମାଣିକ୍ୟ ଦୀପ, ଭୁଲି ମନରେ
ଜାଳିଦିଏ ଯେତେ ଯାବତ ପାପ ଭୁଲି ମନରେ ॥୫ ॥

କନକ ଆଲଟ ଚାମର ପଡ଼େ ଭୁଲି ମନରେ
କବି ବୈଷ୍ଣବ କରକୁ ଯୋଡ଼େ, ଭୁଲି ମନରେ ॥ ୬ ॥

**

**

# ଚନ୍ଦ୍ରଧର ଚଉବାହା

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

[କେଶର କୁଂଜେ-ବୃତ୍ତେ]

ଚନ୍ଦ୍ରଧର ଚଉବାହା
ଚରଣ କମଳେ ନ ଦେଲେ ଥାହା
ଜଗବଂଧୁ ହେ
ମୋତେ ଚରମେ କେ ହେବ ସାହା, ଜଗବଂଧୁ ହେ ॥୧॥

ତୁ ମୋତେ ଛାଡ଼ିଲେ ଛାଡ଼
ମୁଁ ତ ନ ଛାଡ଼ିବ କଣରୁ ପୀଢ଼
ଜଗବଂଧୁ ହେ
ବନ୍ଧ ହେଲଣି କି ଚନ୍ଦ୍ରଦାଢ଼ ॥ ୨ ॥

ପତିତ ତାରଣ ହରି
ପତିତପାବନ ନାମ ତୋହରି
ଜଗବଂଧୁ ହେ
ଏବେ ମୋ ପାପେ ନପଳା ଡରି ॥ ୩ ॥

ଯେବେ ଏତେ ମାଡ଼େ ଡର
ଲିଭାଇ ଦଅ ସେ ଷଡ଼ ଅକ୍ଷର
ଜଗବଂଧୁ ହେ
ଦେଖିବ ସେ ଯାମ ଗଡ଼ଦ୍ୱାର ॥ ୪ ॥

ପୁଣ୍ୟ କଲେ ଅରଜନ
ତରିଯିବ ସେହ୍ନ ବଳେ ସେ ଜନ
ଜଗବଂଧୁ ହେ
ତୋ' ଠାରେ କି ତାର ପ୍ରୟୋଜନ ॥୫॥

ତୋଳିଲୁ ବ୍ରଜେ ମନ୍ଦର
ତହୁଁ ହରିକ ମୋ ପାପ ଭାର
ଜଗବନ୍ଧୁ ହେ
ତରି ଲୁଚୁ ନୀଳାଦ୍ରି କନ୍ଦର ॥୬॥

ଯେ ଭଜିଲା ତୋର ନାମ
ତୁ ତାହାର ପୂର୍ଣ୍ଣ କରିଲୁ କାମ
ଜଗବନ୍ଧୁ ହେ
ଏତ ସ୍ୱାର୍ଥପରଙ୍କର କାମ ॥୭॥

ବିନା ଭଜନେ ପୂଜନେ
ଯେବେ ତାରିବୁ ଏ ପାତକୀ ଜନେ
ଜଗବନ୍ଧୁ ହେ
ଭଲ ଭଲ ବୋଲିବେ ଭୁବନେ ॥। ॥

ବଇଷ୍ଣବ ଏହା ଜାଣି
ବସିଅଛୁ ମଙ୍ଗ ଦଉଡ଼ି ଟାଣି
ଜଗବନ୍ଧୁ ହେ
କେଣେ ନାବ ନେବୁ ଚନ୍ତାମଣି ॥୯॥

**

**

# ଶରଧା ବାଲିକି ଗୃହାଁରେ

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

(କନାମ ବୋଇଲୁ-ବୃତ୍ତେ)

ଶରଧା ବାଲିକ ଗୃହାଁରେ ସଲଖି
ଶରଧା ବାଲିକ ଗୃହାଁ
ଚକ୍ରରଥେ ଚକ୍ରଧ୍ୱଜା ଉଡ଼ୁଅଛି
କେମନ୍ତ ସଧୀରେ ଆହା ।।ପଦ।।

ଶରଧା ବଳୁଛି ମୋର ଦେଖିବାକୁ
ଶରଧା ବଳୁଛି ମୋର
କଳାଧଳା ହଳଦିଆ ବଦନ ଏ
ଦୀନଜନଙ୍କ ସୋଦର ।।୧।।

ଗୁଣ୍ଡିଚା ଯାତକୁ ବଳେ କରିଛନ୍ତି
ଗୁଣ୍ଡିଚା ଯାତକୁ ବଳେ
କେବଳ ପଣ୍ଡିତେ ଭାଗବା ମାନସେ
ଦରଶନ ଦେଲେ ନିଜେ ।।୨।।

ପଡ଼େ ଟିପି ଟିପି ପାଣି କି ସୁନ୍ଦର
ପଡ଼େ ଟିପି ଟିପି ପାଣି
ପାଣି ନୁହେଁ ଇନ୍ଦ୍ର ସୁଧା ବରଷଇ
ବସୁଧାରେ ଦେଲା ଜାଣି ।।୩।।

ବିସ୍ଫାଳଣ ଚକ ନାଦ ଏ ନୁହଇଁ
ବିସ୍ଫାଳଣ ଚକ ନାଦ
ଯିବା ଆସିବାରେ ବୈତରଣୀ ଥରକେ
ଯେ ଧୂ ଧୂ ଶବଦ ॥୪॥

ବୈତରଣୀ ନରକ ପାପିକୁ ଡାକୁଛି
ବୈତରଣୀ ନରକ ପାପୀ
ଡରଯା ଡରଯା କାନେ ଶୁଣି ଘନେ
ନ ହୁଅ ଆଉ ସନ୍ତାପି ॥୫॥

ଧନ୍ୟ ସେ ଗୁଣ୍ଡିଚ୍ଚ ଘଣୀ ଏ ଜଗତେ
ଧନ୍ୟ ସେ ଗୁଣ୍ଡିଚ୍ଚ ଘଣୀ
ନାମ ଗୁଣେ ଜାତ ଖଣ୍ଡିଗଲେ ସେତ
ପଢ଼ତ ତାରବା ଜାଣି ॥୬॥

ସତେ କି ବଇଆ ରଥେ ରହୁଥିବ
ସତେ କି ବଇଆ ରଥେ
ଗୀତ ଗାଇଦେଲେ ପଥ ବନ୍ଦ୍ହୁଯିବ
ପଦକେ ହଜାର ହାତେ ॥୭॥

**

✳✳

# ସେ କଳା ଲପନକୁ ଅନା

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

[ଜଣା ପଡ଼ିଲାରେ ବଣା-ବୃନ୍ଦେ]

ସେ କଳା ଲପନକୁ ଅନା
ତପନ କୁମର ଅମାପ କୋପକୁ
ଅମୋଘ କୁଳଶ ସିନା ॥ ପଦ ॥

ତପ ଜପ କର ସ୍ୱଫଳ ପାଇବୁ
କି ହେଲା ଗୋପେ ପୂତନା
କୋପ କରି କେତେ ଖାପରୁ ଟାଣନ୍ତି
ବୈକୁଣ୍ଠ ନୋହିଲା ମନା ॥ ୧ ॥

ବାଇଶି ପାବଚ୍ଛେ ଖଡ୍ଗ ବଜାଉଛୁ
ବଉଁଶୀ ଛାଡ଼ି ସେ କହ୍ନା
ଆଟିକାକୁ ସୃଷ୍ଟି ଟିକାଏ ପାଇଲେ
ଯମଡାଟି କରେ ଚୂନା ॥ ୨ ॥

କମଳା ବିମଳା ବାମ ଦକ୍ଷିଣରେ
ପୁରନ୍ତ ପ୍ରାଣୀ ବାସନା
ବଡଦେଉଳ ଚକ୍ର ଚୂଳ ଦିଶିଲେ
ପଳାଇବେ କାଳ ସେନା ॥ ୩ ॥

ବୈତ ମାଡ଼ରେ ନ ତରଣ ପାତକି
ଛଡ଼ାଇ ହୁଅନ୍ତୁ ସୁନା
ବଇଷ୍ଣବ ଲେଖି ସେ ଗୁଣ ଗଣକୁ
ଉଡ଼ାଏ ବିଷୟ ବାନା ॥ ୪ ॥

**

**

# ହେ ବଉଦ୍ଧ ରୂପ

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

[କୃପା ପାରାବାର ତୁମ୍ଭେ ପରା-ବୃତ୍ତେ]

ହେ ବଉଦ୍ଧ ରୂପ ଚଉଦ ଭୁବନେ
ତୋ ପରି ସାମନ୍ତ ନାହିଁ କେ ଆଉ
ଜୟ ଜୟ ଜୟ ବାଜଇ ବାଇଦ
ଟେକ ଅଛୁ ଭୃତ୍ୟ ତାରଣ ବାହୁ ॥ ପଦ ॥

ମୃଗୁଣୀକି ଦାବାନଳରୁ ତାରିଲ
ଗଜକୁ କୁମ୍ଭୀର ମୁଖୁଁ ଉଦ୍ଧରିଲ
ହିରଣ୍ୟ ବିଦାରି ପ୍ରହ୍ଲାଦ ମାନ
ରକ୍ଷା କଲ କେବା ନ ଜାଣେ ଆଉ ॥ ୧ ॥

ମହା ପ୍ରଳୟରେ ମାରକଣ୍ଡ ଋଷି
ଜଳ ଗହ୍ୱରରେ ଯାଉଥିଲେ ଭାସି
ସେ ବିଶ୍ୱ ଉଦରେ ସ୍ଥାନ ଦେଲ ବାରେ
ବଟ ପୁଟେ ଥାଇ ବଞ୍ଚିଲେ ସେହୁ ॥ ୨ ॥

ସାତ ବର୍ଷ ସନ୍ତାନ ଧ୍ରୁବ ଦଶା
ଫେଡ଼ିଛ ଏ ମିଛ ନୁହଁଇ ସହସା
ନନ୍ଦେ ଆନନ୍ଦେ ଅଜଗର କବଳୁଁ
ବଞ୍ଚେଲେ ପ୍ରାଣ ନେଲ ନ ସାଧ୍ୱ ଦାଉ ॥ ୩ ॥

ହେ କରୁଣାକର ମୋ ଠା'ରେ କରୁଣା
କେଉଁ ଦୋଷେ ହେ କରଅଛ ଊଣା
ଏବେ କି ବସ୍ତୁର ହୁଅ ପଥବଣା
ଅଣାକାର ଭଲ୍ଲ ଗାରମା ଆଉ ॥ ୪ ॥

**

**

# ଡାକି ଡାକି କଣ୍ଠ ଗଲା ଶୁଖି

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

[ଏତେ ହଟ ହଟା ମୋତେ-ବୃଥେ]

ଡାକ ଡାକ କଣ୍ଠ ଗଲା ଶୁଖି
ଆଉ ନ ପାରବ ଡାକ ଏଣିକ
ଚକା ଆଖିକ ଦେଖାଇ ଚକାଇଲେ
ପଲାଇ ନ ଯିବ କେଉଁ କେଣିକ ॥ଘୋଷା॥

ଟକା ଟକ ବେଳ ପଡ଼ିଛ
ଠକା ଠକ କଲ କ ଘୁଞ୍ଚ
ଯିବ ମୁଁ ପଛକୁ ପାଞ୍ଚିଛ ଚଉଦେ
ବକା ବକ ମାନ ହେବ ପୁଣିକ ॥ ୧ ॥

ପକାପକ ହେବା ହେ ଘ୍ରାଣ
କେ କାହାର ରଖିବ ତ୍ରାଣ
ଶିଖାଣିଛି ଭାବ ଭୁଲି ପଦ୍ମଲଭ
ଦେଖା ଦେଖା ଥିଲେ ବଙ୍କା ଠାଣିକି ॥ ୨ ॥

ଟେକାଟେକ କରିଲି ଯେତେ
ଫୁଙ୍କା ଫୁଙ୍କି କଲି ହେ ତୋତେ
କରି ଝିଙ୍କାଝିଙ୍କ ହୃଦେ ଦେବ ଯାକି
ହଇଲେକ ଭକ୍ତ ଚନ୍ଦ୍ରାମଣି କି ॥ ୩ ॥

ଫୁଙ୍କାଫୁଙ୍କି ମୁରଲି କରି
ଭୁଲାଇଲୁ ବରଜ ନାରୀ
ଲେଖା ଲେଖି କଲେ ସେ ଗୁଣ ନ ସରେ
ଲକ୍ଷ୍ମୀ କରିଆଅ ପାଣି ବାଣୀକି ॥ ୪ ॥

**

**

# ହେ କଳା କାଇଁଚ ମାଳିଆ

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

[କହ କୃପାନିଧି କେତେ ନୀରବଧି-ବୃତ୍ତେ]

ହେ କଳା କାଇଁଚ ମାଳିଆ ନାହିଁକି
ନୀଳ କନ୍ଦରରେ ଆଉ ହେ
ଥିଲେ କି ମରନ୍ତା ଡାକ ଡାକ ଭୃତ୍ୟ
ନ ଶୁଣନ୍ତ ମହାବାହୁ ହେ ॥ ପଦ ॥

ତୋ ବଡ ଦେଉଳ ପଡ଼ିଛି ଶୂନ୍ୟ
ଶୂନ୍ୟ ଅଛି ପଡ଼ି ରତ୍ନ ସିଂହାସନ
ଦାରୁମୂର୍ତ୍ତି ଦେହେ ନାହିଁକି ଜୀବନ
କି ହୋଇଲା ଗୃହୁଁ ଗୃହୁଁ ହେ ॥ ୧ ॥

ଦଣ୍ଡା ଧଣ୍ଡାମାଳ ଦେଇ କି ନାହାନ୍ତି
ଦ୍ୱାରଗରେ ଥାଇ ରଜନୀ ପାହାନ୍ତି
ଭକ୍ତେ କି ମଙ୍ଗଳ ଗୀତ ନ ଗାଆନ୍ତି
ମଙ୍ଗଳ ଆଳତି ହେଉଁ ହେ ॥ ୨ ॥

ସେ କଳପ ବଟ ଗଲାକି ଉପୁଡ଼ି
ବିମଳା ଭବନ ପଡ଼ିଲାକି ଝଡ଼ି
ସେ ରୋହିଣୀ କୁଣ୍ଡ ସେ କାକ ଭୂଷଣ୍ଡି
ନାହିଁ କି କୈବଲ୍ୟ ଖାଉ ହେ ॥ ୩ ॥

ଜାଣିଛି ମୁଁ ଜାଣି ଘୋର କଳିଗତି
ଛାଡ଼ି ପଳାଇଲ ଅକଳିତ ଭୂତି
ଟିକ ଟିକ ପାପେ ହେଲା ବସୁମତି
ଖାତକେ ଡାଉଲେ ସାନ୍ତ ହେ ॥ ୪ ॥

ଯହିଁ ତହିଁ ଥାଇ ମୋତେ ଦିଅ ଚିହ୍ନା
ତୁ ମୋ ଅରଜିଲା ଗଣ୍ଠି ଧନ ସିନା
କେଉଁ ମରଜିରେ ବରଜି ଦେଉଛ
ବଇଷ୍ଣବେ ସାଧି ଦାଉ ହେ ॥ ୫ ॥
✳✳

**

# କମଳାପତି କଷ୍ଟହର

## ବୈଷ୍ଣବ ପାଣି

( ବିଂଶ ଶତାବ୍ଦୀ )

[ କୃପାସିନ୍ଧୁ ବଦନ-ବୃନ୍ଦେ ]

କଉସ୍ତୁଭ ଧାରଣ          କଉଣପ ଦାରଣ
କମଳାପତି କଷ୍ଟହର
କମ୍ବୁ ଅମ୍ବୁଜ ଚକ୍ର          ଗଦା ଯେ କରେ ସଦା
ବିରାଜୁଥାଇ ମନୋହର
ହେ ଜଗନ୍ନାଥ
କଇବଲ୍ୟ ମୁକୁଳା ନାଥ
କର୍ଣ୍ଣେ ଶୁଣି ଦୁଃଖି ଆରତ
କଷଣ ସହୁ କେତେ          ରହିବ ମହୀଗତେ
କଣ୍ଠ ଶୁଖିଚ୍ଛି ଅବିରତ ହେ ॥ ୧ ॥

ଖଳ ଖଣ୍ଡ ଶମନ          ଶୋଷେ ହିନଙ୍କୁ ହିନ
ଖରେ ଦେହୁଁ ଉକତ ସ୍ୱଣି
ଖର ବରଷା ବେଗି          ହୋଇଲି ମହା ରୋଗୀ
ଖର୍ପର ହେଲା ଦେହ ଆସି
ହେ ଜଗନ୍ନାଥ
କ୍ଷିତିରେ ନତ ହେଡ଼େ ବାନା
ଖଣ୍ଡ ଦୁର୍ଗନ୍ଧ ବୋଲି ସିନା
ଖସି ପଡ଼ିଲା କିସେ          କେତନ ଖଗପତି
ଖୋଲିଣ କହ ନନ୍ଦ କହ୍ନା ହେ । ୨ ॥

ଗଣୁଛୁ ବସି ଦିନ          ଗୁଣୁ ଛୁ ଅନଶନ
ତୋ' ନାମ ଗଳେ କରି ମାଳ
ଗଙ୍ଗା ଗୟା ଗୋମତି          ଗଣ୍ଡକୀ ସରସ୍ୱତୀ
ଭୂମି ଦ୍ୱକବା ନୀଳା:ଚଳ
ହେ ଜଗନ୍ନାଥ
ଗରୁଡ଼ ଆ· ନ ଏ ତୀର୍ଥ
ସବୁ ତୋ ସେବା ବିନା ବ୍ୟର୍ଥ
ଗୋବରଧନ ଧରି          ଗୀତା କହୁଛୁ ପରି
ସାକ୍ଷୀ ତାହାର ବୀର ପାର୍ଥ ହେ ॥ ୩ ॥

ଘନେ ଚାତକ ଆଶା          କଲା ପରି ଭରସା ।
କରିଥିଲି ଯାହାକୁ ସଦା
ଘଡ଼ିଏ ମାତ୍ର ଘଟ          ମଧ୍ୟେ ତା ନନ୍ଦ ଗୃଟ
ନିରଖି କରିଦେଲୁ ବିଦା
ହେ ଜଗନ୍ନାଥ
ଘରୁ ଦେଲୁ ବାହାର କରି
ଘୋଟିଗଲା ଶୋକ ତିମିର
ଘୋର ଚକ୍କାର ଭିଡ଼          କାନ୍ଦିଲି ମୁଣ୍ଡ କୋଡ଼ି
ଆଉ ତ ନ ପାଇଲି ଫେରି ॥ ୪ ॥

ଉଇଁଲା କାଳେ ରବି          ଦେଖାଇ ରଙ୍ଗ ଛବି
ଯେସନେ ରାହୁ ଗ୍ରାସ କରେ
ଉପଗତ ମୋ କର୍ମେ          ହେଲା ଯେ ସେହି ଭ୍ରମେ
ଉପାୟ ନ କହିଲୁ ଅରେ
ହେ ଜଗନ୍ନାଥ
ଉପାଡ଼ି ଦେଲୁ ଦନ୍ତ ଦ୍ରୁମ
ଉଦଯୋଗେ ନ ମେଣ୍ଟିଲା ଶ୍ରମ
ଉପଲକ୍ଷ ମାତ୍ରକ          ହେଲା ରୋଗ ପାମର
ଜାଣିଲି ନିଷ୍ଠସ୍ଥ ତୁ ଯମ ॥ ୫ ॥

ଚରଣ ବାଜ ନିଲା ବନେ ହେଲ ଅବଲା
ଚରାଚରରେ ଅଛନ୍ତ ଜାଣି
ଚରିଲୁ ପ୍ରହ୍ଲାଦ ଛଳେ ହିରଣ୍ୟ ହୃଦ
ସ୍ତମ୍ଭରୁ ବାହାର ତକ୍ଷଣି
ହେ ଜଗନ୍ନାଥ
ଚନ୍ଦ ଗୁପ୍ତର କସ ସାଧ
ଚୂରନ୍ତା ମୋହର ସଂପଦ
ଘୃରବାହା ବସ୍ତ୍ର କହନ୍ତୁ ମୋତେ ଏହା
ନଜାଣୁ କେଉଁ ଭେଦାଭେଦ ॥ ୬ ॥

ଛନ୍ଦ ନନ୍ଦର ନନ୍ଦ- ସୁତ ମୋଠାରେ ମନ୍ଦ-
ପଣେ ମାଇଲ ଅଂଧ ସୂତ
ସହି ତାହା ଗୋବିନ୍ଦ ଭକତ ଭାବେ ଜନ୍ମ
ଅନ୍ଧକୁ ଦାନ କଲୁ ନେତ୍ର
ହେ ଜଗନ୍ନାଥ
ଛଳେ ଘୃଣେ ମାରନ୍ତେ ପିତା
ଛପାଇଲୁ ପୁ ଛନ୍ତେ ମାତା
ଛପି ଗଲୁ ମୋ ଦୁଃଖ ଦେଖି ଛଳକେ ମାତ୍ର
ଛି ଛି ଏହା ଭଲ କଥା ହେ ॥ ୭ ॥

ଜଞ୍ଜାଳ କଲ ଗୁରୁ ସୁତ ଶୟନ ପୁରୁ
ଯାଇଣ ଦେଲ ତାର କୋଳେ
ଜାଣିଅଛୁ ଆୟୁଷ ନଥିଲ ତା'ର ଲେଶ
କେହୁ ଲେଖିଲ ତା' କପାଳେ
ହେ ଜଗନ୍ନାଥ
ଜୀବ ମାନଙ୍କେ ତୋର ବଶ
ଯୁଗେ ଯୁଗେ ହେ ଶ୍ରୀନିବାସ
ଜୀଇ ବା ମରିବା ତୋ ଜୁଆଖେଳ ପରାୟେ
ଏ ଜୀବେ କର୍ମ ଏତେ ରେଖ ॥ ୮ ॥

ଝଡ଼ି ଯାଉଛି ଦେହ ଝିମିଟେ ନାଥ କହ
ଝଡ଼ିଲା ବୃକ୍ଷ ପତ୍ର ସମ
ଝୋଲ ମାରୁଛି ବେଳୁଁ ବେଳ ହେ ନନ୍ଦବାଳ
ଝାଳ ବହୁଛି ଦମ ଦମ
ହେ ଜଗନ୍ନାଥ
ଝିଙ୍କୁଛି ମୋତେ ପଞ୍ଚ କାଳ
ଝଟଢ ବାରେ କର କୋଳ
ଝରେ ନୟନୁ ନୀର ଯେସନେ ଜଳଝର
ପୋଛୁବୁ ଧର ତୋ ଅଞ୍ଚଳ ॥ ୯ ॥

ଇନ୍ଦ୍ର ମରୁତ ଶିବ ବ୍ରହ୍ମାଦି ସ୍ୱର୍ଗ ଦେବ
ନୁହନ୍ତି ଯା' ସେବାକୁ ସର
ଇହ ଧାମରେ ଦ୍ୱିଜ କୁଳେ ଜନମି ହେଜ
ସେ ପଦଯୋଗ୍ୟ ମୁଁ କି ହେଶ
ହେ ଜଗନ୍ନାଥ
ଇସିତେ ଶୁଣିଛି କର୍ଣ୍ଣରେ
ଉଦ୍ଧରିଛ ଅଧମ ନରେ
ଉଦ୍ଧବ ଅଜାମିଳ ଅନ୍ଧ ବିଲ୍ୱମଙ୍ଗଳ
ଚଣ୍ଡାଳ ଶବର ଜାଢରେ ॥ ୧୦ ॥

ଟେକ ରଖିବ ଯେବେ ଟୋପେ ନ ପକା କେଭେଁ
ଟେକାପରି ତୋ ସେବକକୁ
ଟୋକାଙ୍କ ପରି ଭଣ୍ଡି ନ ଦିଅ ହେ କୋଦଣ୍ଡି
ଟେକି ଅନାଅ ଶ୍ରୀ ମୁଖକୁ
ହେ ଜଗନ୍ନାଥ
ଟିକଏ ମାତ୍ର ରହୁଁ ଥିଲେ
ଟଳଥାନ୍ତା କି ଜୀବ ଭଲେ
ଟମକ ଝଣ୍ଡା ବାଜା ଜଗତରେ ନ ବଜା
ଟାଣି ନ ପକା କଲ୍‌ବଲେ ॥ ୧୧ ॥

ଠାବ ଧଅଁ ବଡାଇ          କାହିଁ ରହିବ ଯାଇଁ
ନାହିଁ ନଥିବ ରୋଗ ଶୋକ
ଠକା ଠକି ନକର          ଠିକ ବାଣୀ ଏ ମୋର
ଠଉରାଇଛୁ ପଦ୍ମ ମୁଖ
ହେ ଜଗନ୍ନାଥ
ସେବା ବାଣୀ ତେଜ ଦୂରେ
ଠିକେ କହୁଛୁ ରଖ ବାରେ
ଠେଲ ଦୂରେ ନ ପକା          ଗରବର ଟେକା
ଠିକେ ରଖ ତୋ ଚରଣରେ ॥ ୧୨ ॥

ଡାକ କହୁଛୁ ଡର          ମାଡ଼ଇ ନିରନ୍ତର
କାଲ କରାଳ ମୁଖ ଦେଖି
ଡାହାଣ ବାମ୍ଭୁ ବାମ          ହେଲା ବେଳେ ହେ ରାମ
ଆସ୍ର ବସିବ କୋଳେ ଯାକ
ହେ ଜଂଗନ୍ନାଥ
ଡର ପଳାଇଯିବ ଯଣା
ଡଂଶି ନପାର କର ଆଣା
ଡିଣ୍ଡିମ ଯିବ ବାଜି          ଦ୍ଵ ସପ୍ତ ଲୋକ ରାଜି
ଶୁଣି କରିବେ ପରଶଂସା ॥ ୧୩ ॥

ଢ଼ମାଳି ପଣ ଛାଡ଼          ଢାଳେଣ ଚନ୍ଦ ଦାଢ଼
ବଜ୍ର ନ ହେଉ ଏତେବେଳେ
ଢ଼ୁଲିଇଲା ସମାନ          ମୁଦ୍ଧ ବେନି ନୟନ
କସ ଖବୁଛୁ ନୀଳାଚଳେ
ହେ ଜଗନ୍ନାଥ
ଢୋକ ଦେଲୁ ଅନଳ ଗୋପେ
ଢାଳେ ଗୋପାଳଙ୍କ ସନ୍ତାପେ
ଢୋଲ ନ ଗଲୁ ପୋଡ଼ି          ମୋ ଶୋକ ଅଗ୍ନି ଏଢ଼ି
ପଳାଇଗଲୁ କେଉଁ ରୂପେ ॥୧୪॥

ଅଣଆୟତ୍ତ ହୋଇ          ଏଣେ ସେଣେ ନଯାଇଁ
ଧରିଲି ତୋର ଶ୍ରୀଚରଣ
ଅଣାକାର କରୁଣା          ଯଦ ହେଉଛ ଊଣା
ମରଣେ କରିବି ବରଣ
ହେ ଜଗନ୍ନାଥ
ଅନ୍ତର ବାହାରେ ତୁ ଥାଉ
ଅନ୍ତେ ପ୍ରାଣୀଙ୍କି ତାରିନେଉ
ଅନ୍ୱେଷଣ ବହନ୍ତେ          ଆସି ତୋଳିବୁ ମୋତେ
ଗୁଞ୍ଜି ନ ଦେବୁ ଦେଖି ଦାଉ ।।୧୫।।

ତପନ ସୁତ ବାଘୀ          ହୋଇଲା ଜରବଧି
ହେ ଦୟାନିଧି ରକ୍ଷାକର
ତୋଷାନ ପାଣି ଯେନ          ଆସି ହେ ନୀଳମଣି
ତେତେବେଳେ ମୋଡ଼ିଲି ଶିର
ହେ ଜଗନ୍ନାଥ
ତରତର ହେଲିଣି ମୁହିଁ
ତାହା ଯେନ ହେ ରମା ସାଇଁ
ଜପତପ ସାଧନା          ଜାଣିଥିଲେ ମୁଁ ସିନା
ଦିଅନ୍ତି ତାକୁ ଘଉଡାଇ ।।୧୬।।

ଆଉଁ ତୁମ୍ଭ ସମାନ          ପ୍ରଭୁ ହେ ବଦ୍ୟମାନ
ହେଲିଣି ଏତେସର ଆସି
ଥିଲି ଭରସା କରି          ଯାକୁ ହେ ଦଇତାରି
ତାହାରି ଗଳେ ଦେଲୁ ଫାଶି
ହେ ଜଗନ୍ନାଥ
ଥିଲେ କି ହେବ ଏ ଜୀବନ
ଅପ୍ତୁ ନୋହିଲା ଯେବେ ମନ
ଅଳ ନପାଇ ବାଟ          ହେଉଛି ଛଟପଟ
ଅରେ ନ କରୁ ଅନୁମାନ ।।୧୭।।

ଦରିଦ୍ର ଜନ ବଂଧୁ		ବୋଲି ହେ କୃପାସିନ୍ଧୁ
ନାମ ବହୁଛୁ ଶୁନ ଲୋକେ
ଦେଖୁତ ନାହୁଁ ସେହି		ଗୁଣ ହେ କାହିଁପାଇଁ
ସେ ନାମ ମହିମା ପ୍ରତ୍ୟକ୍ଷେ
ହେ ଜଗନାଥ
ଦୁର୍ଦ୍ଦଶା ସହୁ ଘୋଟିଅଛୁ
ଦସ୍ୟାଚକ୍ର ପେଶ ଶ୍ରୀବସ୍ତି
ଦଅ କରି ଦ୍ୱିଖଣ୍ଡ		ଚଣ୍ଡ ଦାଢ଼େ ତା' ମୁଣ୍ଡ
ଭୁଣ୍ଡ ବିସ୍ତାର ଅନାଉଛୁ ॥୧୮॥

ଧନ୍ଦ ହେଉଛୁ ପଡ଼ି		ଧନ୍ଦାରେ ହରଘଡ଼ି
ଫନ୍ଦା ବତାଅ ଅଛୁ ଯେବେ
ନନ୍ଦାହେବ କାହାକୁ		ଆଣ ଥରେ ମନକୁ
ବୃନ୍ଦାବନ ବିହାରୀ ଭବେ
ହେ ଜଗନ୍ନାଥ
ଧରିବ ନାହିଁ. ମୋର ଗାଳି
ଧୀରେ କହୁଛୁ ବନମାଳି
ଧରାପଡ଼ୁଛୁ ଚୋରି		ଏବେ ହେ ବଂଶୀଧାରୀ
କି ହେବୁ ନରଖ ସମ୍ଭାଳି ॥୧୯॥

ନୟନ ନେଲୁ ଛାଡ଼ି		ଅଂଧ ସମାନ ଲୋଡ଼ି
ମରୁଛୁ ନ ପାଇଣ ବାଟ
ନର ନରକ ତ୍ରାଣ		ଅଟ ହେ ନାରାୟଣ
ଦେଉଛ ବିଷମ ସଙ୍କେଟ
ହେ ଜଗନ୍ନାଥ
ନାହିଁ ନ କଲୁ ଚେତେବେଳେ
ନ ମାନିଥିଲେ କଥା ଢେଲେ
ନେଇଥାନ୍ତୁ ଛଡ଼ାଇ		ନରଖି ମୋ ବଢ଼ାଇ
ବୁଡ଼ାଇ ଦେଇ ଶୋକ ଜଳେ ॥୨୦॥

ପଡ଼ି ବିପଦ କାଳେ          ମରଇ କଳବଳରେ
ପରାପର ନଦିଅ ଠେଲି
ପରମାନନ୍ଦ ନାମ          ଥାଉଁଥାଉଁ ମୋହର
ପଥରେ ମୁଣ୍ଡକୋଡ଼ି ମଲି
ହେ ଜଗନାଥ
ପିଣ୍ଡ ମୋ ପଡ଼ିଯିବ ଢଳି
ପୀତବସନ ବନମାଳୀ
ପୀୟୂଷ ମଣିବିଷ          ପିଛନ୍ତୁ ଜାଣିଯେବେ
ଅମୃତ କର ବାରେ କଳି ॥୨୧॥

ଫାଙ୍କିଦେଲେ କି ସତେ          ଛାଡ଼ିବି ପ୍ରଭୁ ତୋତେ
ବାଞ୍ଛାଫଳ ନହେବା ଯାଏ
ଫୁଟିଗଲା କି ଆଜି          ସେ ଶତପତ୍ର ନେତ୍ର
ଏ ଭାବ ଟଭେ କରି ଲହ୍ନେ
ହେ ଜଗନ୍ନାଥ
ଫୁରୁଣା ମନ କରି ଭୁଲି
ଫନ୍ଦା ଫିକର କରୁଥିଲି
ଫୁଲ ଫହାର ହାର          ପରିହୃଦୟ ମୋର
ଝଡ଼ିଲା ଫୁଟିଗଲୁ ଭୁଲି ॥ ୨୨ ॥

ବାନ୍ଧିଥିଲା ଯଶୋଦା          ଦଧି ମନ୍ଥନେ ସାଧା
ନାଥ ଜାମଳାର୍ଜ୍ଜୁନ ଗଛେ
ବାନ୍ଧିଲେ ବ୍ରଜନାରୀ          ଭକତ ଡୋରେ ଯେନ
ଲବଣୀ ଚୋରି ଦୋଷ ପଛେ
ହେ ଜଗନ୍ନାଥ
ବ୍ରଜବାଳକ ପ୍ରେମେ ବନ୍ଧା
ବଳି ଦୁଆରେ ବନ୍ଧା ସଦା
ବନ୍ଧନ ଏତେ ଲୋକେ          କରି ରଖିଲ ପାଖେ
ବନ୍ଧା ନ ଦେଲେ ହେବ ନିନ୍ଦା ॥ ୨୩ ॥

ଘୀବ ହେଉଛୁ ବେଳ          ବେଳୁ ମୋ କଷ୍ଟମାଳ-
କନ୍ଦରେ ବସିଛୁ କାହିଁକି ?
ଘାବଲ୍ଲ ମାନେ ଭକ୍ତ          ନକଟ ଉପଗତ
ହେଉ ତା ଶୁଣି ମୁଁ ନାହିଁକି
ହେ ଜଗନ୍ନାଥ
ଘାବେ ଧୋଇଲୁ ଭକ୍ତ ପାଦ
ଲ୍ବବକୁ ନିକଟ ଗୋବିନ୍ଦ
ଘାର୍ଙ୍ଗି ଗଲ୍ଲ କ ହାତ          ଗୋଡ ହେ ଗୋପୀନାଥ
ଆସି ନ ପାରୁ ଦେଖି ଖେଦ ॥ ୨୪ ॥

ମରଇ ନଷ୍ଟେ ଜୀବ          ମହୀ ମଣ୍ଡଳେ ଦେବ
ତା' ଘାବ ଭଆଣ ତୋହର
ମଧ୍ୟେ ହରୁ ଆୟୁଷ          କପାଁ ହେ ନନ୍ଦ ଶିଷ୍ୟ
ବଂଶ ଗତ ନ ହେଉ ତାର
ହେ ଜଗନ୍ନାଥ
ମାରୁ ବାଳକ ବାଳିକାଙ୍କୁ
ମିଛେ ଏ ଜଗତକୁ ଠକୁ
ମଞ୍ଚରେ କେଉଁ ପାପ          କଲେ ଅଜ୍ଞାନ ରୂପ
ଧରି ସେ ଦଣ୍ଡ ଦେଲୁ ତାଙ୍କୁ ॥ ୨୫ ॥

ଜଣା ପଡ଼ିଲା ମନ୍ଦ          ସ୍ୱାଡ ତୋ ଆଦ୍ଦକନ୍ଦ
ବିବେକ ଢଳେ ଆତ୍ମା ଯେବେ
ଯାକୁ ତାକୁ ଅକାଳେ          ବିନାଶନ୍ତୁ କ ହେଲେ
ଏ ଘୋର ସଂସାର ଅର୍ଣ୍ଣବେ
ହେ ଜଗନ୍ନାଥ
ଯେବେ ତୋ ଆଆତ୍ମା ବସ୍ତ୍ରର
ଜୀଅନ୍ତେ ବାଳ ଯୁବା ନର
ଯୋଗା ଯୋଗ ଠିକଣା          ନାହିଁ ତୋ ନିକଟରେ
ପ ଲା ପଣ କାରବାର ॥ ୨୬ ॥

ରାଗ ବନ୍ଧରୁ ନାହିଁ          ରହୁଛୁ ପାଶେ ମୁହିଁ
ଛଇ ପରା ଫଗେ ତୋହର
ଶେଷ ରଖିଲେ ଦାସ          ପରେ କ ପଉରସ
ପାଇବୁ କଷ୍ଟ ତା ଉଦ୍ଧାର
ହେ ଜଗନ୍ନାଥ
ଶପୁ ନୁହଁଇ ମୁଁ ତୋହର
ରୁପିଲ ବୃକ୍ଷ କାଟି ହର ॥ ୧୬ ॥
ଭକ୍ଷଣ ଶୀଳ ବାନା          ଛୁଡ଼ ପଢ଼ବ ସିନା
ଭୁତେ୍ୱ ବଧିଲେ ଚକ୍ର ଧର ॥ ୧୭ ॥

ଲଟିଲ ମୋର ଚିନ୍ତା          ଏବେ ହେ ଜଗକ୍ତିତା
ଲେଖି ଦେଲ ସରବ ତୋତେ
ଲବେ ହେ ଅଧିକାର          ନାହିଁ କାହିଁରେ ମୋର
ଏ ଧନ ଦାସ ସୁତା ସୁତେ
ହେ ଜଗନ୍ନାଥ
ଲାଗିବ ନାହିଁ ଏ ବଚନ
କଷ୍ଟସ୍ଥ କମଳ ଲୋଚନ
ଲକ୍ଷ୍ମୀ ଦେବୀଙ୍କ ରାଣ          ଦେଲି ହେ ନାରାୟଣ
ଚିନ୍ତା ଜ୍ୱରକୁ ଏ ପାଚନ ॥ ୧୮ ॥

ବରନରାଜ ଆଜ          ଅରଜ ନ ବରଜ
ଚରଣ ରଜ ଦିଅ ମୋତେ
ବିରଜ ହୃଦେ ଆସି          ସଦା ବିରଜ ବାସୀ
କର ସରଜେ ଧର ତତେ
ହେ ଜଗନ୍ନାଥ
ବାନର ରାଜ ମିତ୍ରବର
ବିନାଶିଲୁ ଅଗ୍ରଜେ ତାର
ବଂଶ କର ସଂହାର          ସେତୁ ସାଗରେ କର
ବିଜେ କଲୁ ଅଯୋଧ୍ୟା ପୁର ॥ ୧୯ ॥

ଶିଶିର ପଙ୍କ ଜର ଦଶା ହେଲା ମୋହର
ଶିଶ ଲୁଟିଲା ଶିଖିପଢ
ଶୀର ଭ୍ରମର ନଢ ଦେଖଇ ସଦା ସ୍ୱାଢ
ସରତ ଗଲା ସବୁ ଗଢ
ହେ ଜଗନ୍ନାଥ
ଶୁଭୁ ନାହିଁକ ତୋ ଶ୍ରୁଢକ
ସାର ଯା' ଦେଲୁ ମୋ ଧୃଢକ
ଶ୍ୟାମସୁନ୍ଦର କଣ୍ଠି ରୁନ୍ଧିଲା କେଉଁଜନ
ବନ୍ଧିଲୁ ବଧୀର ସ୍ୱାଢକ ॥ ୩୦ ॥

ଷଣ୍ଢା ଶକଟା ହନ୍ତା ନ ରଖିଲେ ମୋ କଥା
ବସ ଭକ୍ଷିବ ନଷ୍ଟେ ଜାଣ
ପଣ ଫୁଲ ବସନ ହେଲେ ଅପଦୂଷଣ
ଚହ୍ନିବ ନାହିଁ କେଭେ ଟାଣ
ହେ ଜଗନ୍ନାଥ
ସଂସାରେ ବନ୍ଧୁ ନାହିଁ ମୋର
ଶମ୍ବରାର ତାତ ବସ୍ତ୍ରର
ସବୁ ଶଙ୍ଖାଳ ଉଦ୍ଧ ଜାଣିଛୁ ନାଥ ମୁହିଁ
ସକଳ ଜୀବ ମୂଳାଧାର ॥ ୩୧ ॥

ସତ କହନ୍ତ ମୋତେ ସଂଶୟ ଯେବେ ଚତ୍ତେ
ସବୁ ତେଜବ ଆଜଠାରୁ
ଶର୍ବସନ ମଣ୍ଡନ ସର୍ପ ଦର୍ପ ଖଣ୍ଡନ
ସହ ନପାରେ ଶୋକ ଗରୁ
ହେ ଜଗନ୍ନାଥ
ଶୁକ ସନକ ସନାତନ
ସପତ ଋଷିଙ୍କ ବନ୍ଦନ
ସର୍ବ ପାପ ହାରଣୀ ତୋ ପାଦୁଁ ଗଙ୍ଗା ପାଣି
ଜାତ ସେ ପଦେ ମୋର ମନ ॥ ୩୨ ॥

ହରବର ନ କର        ଖରେ ଦୂରନ୍ତ ହର
ହସିବେ ଜଗତେ ଯା' ଶୁଣି
ହଂସା ମୋ ଗଲା ଉଡ଼ି        ହଂସା ଚଉରୁ ଗୁଡ଼ି
ଏ ଦୀନଜନେ ରଖ ଟାଣି
ହେ ଜଗନ୍ନାଥ
ହାର ହୋଇ କାଟନ୍ତେ ବେଳ
ହୁରି ପଡ଼ିବ ଦିନ ଶେଷ
ହୁଅ ବେଳହୁଁ ସାବଧାନ        ହେ ଜନାର୍ଦ୍ଦନ
ରହିବ ଯେବେ ନିଜ ଟେକ ॥ ୩୩ ॥

କ୍ଷର ଯାଉ ଏ କଥା        କ୍ଷମେ ରଚ କବିତା
ଜନମି ଦୀନ ଦ୍ଵିଜକୁଳେ
କ୍ଷମା କରିବା ଦୋଷ        କ୍ଷମା ସାଗର ଦାସ
ଜନକୁ ରଖ ପଦ ତଳେ
ହେ ନୀଳାଚଳ
କ୍ଷମା ଦିଅ ବଇଷ୍ଣବଙ୍କୁ
କ୍ଷୋଭରେ ଡାକୁଛି ତୁମ୍ଭଙ୍କୁ
ଖ୍ୟାତ ରହୁ କ୍ଷିତିରେ        ଖଣ୍ଡ ମୋ ଦୁର୍ଗତିରେ
ଉଦ୍ଧର ଧର ସେବକକୁ ॥ ୩୪ ॥

**

**

# ଜଗନ୍ନାଥ

## ବେଣୁଧର

(ବିଂଶ ଶତାବ୍ଦୀ)

ଜଗନ୍ନାଥ ମୋ ଆରତ କାହିଁ ପାଉନ ନଶୁଣ
କାହାକୁ ନ ତାରଅଛ ମୋ ବେଳକୁ ନଦାରୁଣ ॥ ଘୋଷା ॥

ଲକ୍ଷେ ଯୋଜନରେ ଜଳେ ଡାକ ଦେଲା ସେ ବାରଣ
ଭୂରତରେ ଚକ୍ର ପେଶି ପ୍ରଭୁ ନେଇ ନକ୍ର ପ୍ରାଣ ॥ ୧ ॥

ବନେ ଚଳିଲା ମୃଗୁଣୀ ତା'ଜାଣିଲ ଅନ୍ତର୍ଯ୍ୟାମୀ
ବନେ ଘୋର ସଂକଟରୁ ତାକୁ କଲ ପରିତ୍ରାଣ ॥ ୨ ॥

ଆର୍ତ୍ତେ ଡାକଲା ଦ୍ରୌପଦୀ କୁରୁ ସଭା ତଳେଣ
କୋଟି ବସ୍ତ୍ର ଦେଇ କଲ ତାର ଲଜ୍ୟା ନିବାରଣ ॥ ୩ ॥

ପ୍ରହ୍ଲାଦ ଛଳେ ହିରଣ୍ୟକୁ କଲ ବିଦାରଣ
ସ୍ୱର୍ଗେ ଇନ୍ଦ୍ର ପଦ ଦେଇ ଫେଡ଼ି ଅଛ ତା' କଷଣ ॥ ୪ ॥

ସାବତ ଜନନୀ ଛଳେ ଧ୍ରୁବ ଚଳିଲା କରନ୍ତେଣ
ଶୂନ୍ୟ ମଣ୍ଡଳରେ ତାକୁ ଦେଇ ଅଛ ଦିବ୍ୟ ସ୍ଥାନ ॥ ୫ ॥

ଅଜାମିଳ ନାମେ ଥିଲା ମହା ପାତକୀ ବ୍ରାହ୍ମଣ
ଅନ୍ତକାଳେ ତବ ନାମ ଧରି ଗଲା ସ୍ୱର୍ଗସ୍ଥାନ ॥ ୬ ॥

ସୁଦାମା ଦାରିଦ୍ର୍ୟ ଦ୍ୱିଜ ଚଳିଲା ହେ ନାରାୟଣ
ଐଶ୍ୱର୍ଯ୍ୟ ସଂପଦେ ତାକୁ କରିଦେଲ ପରିପୂର୍ଣ୍ଣ ॥ ୭ ॥

ସୁଗ୍ରୀ ସଙ୍ଗେ ମିତ୍ର ହୋଇ ବାଳି ବଧିଲ ଆପଣ
କିଷ୍କିନ୍ଧ୍ୟାରେ ରାଜା କରାଇଲ ତତକ୍ଷଣ ॥ ୮ ॥

ଲଙ୍କାଗଡ଼ରେ ଶରଣ ପଶିଲାକ ବିଭୀଷଣ
ଭୁଞ୍ଜିଲା ଲଙ୍କା ବିଭୂତି ପ୍ରଭୁ ତବ ପ୍ରସାଦେଣ ॥ ୯ ॥

ମୁଁ ଅଧମ ମୂଢ଼ମତି ପ୍ରଭୁ ତୁମ୍ଭେ କି ନ ଜାଣ
ହାରୁନାହିଁ ଯେଣୁ ସରୁଅଛି ବେଣୁଧର ଟାଣ ॥ ୧୦ ॥

**

**

## ଦୀନବାନ୍ଧବ

### ବେଣୁଧର

(ବିଂଶ ଶତାବ୍ଦୀ)

[ଆଦ୍ୟ-ତାଳ]

ଦୀନ ବାନ୍ଧବ ହର ହେ କର କାରଣ
ଏ ଅଧମ ଜନେ ପ୍ରଭୁ ନୁହ କୃପଣ ॥ ଘୋଷା ॥

ଯେନ ଭକତ ମୋହର        ଆହେ ବୈକୁଣ୍ଠ କେଶରୀ
ବିଦାରଣ କର ମୋ ବିପତ୍ତି ବାରଣ ॥ ୧ ॥

ହେ ନୀଳାଚଳ ବିହାରୀ        ନ ରଖିଲେ ଗଲି ସରି
ତୁମ୍ଭ ବିନା କେହୁ ନାହିଁ ରମାରମଣ ॥ ୨ ॥

ଆହେ ପ୍ରଭୁ ମହା ବାହୁ        ଘୋଟିଛି ବିପଦ ରାହୁ
ଗ୍ରାସୁଅଛି ବାହୁଁ ରାହୁଁ ଯେନ ଶରଣ ॥ ୩ ॥

ଚିନ୍ତ କହେ ବେଣୁଧର ଶ୍ରୀ ଗ୍ରୁମୂରେ ଯୋଡ଼ି କର
ଚକ୍ର ପେଶି ଦୁଃଖ ହର ଆରତ ତ୍ରାଣ ॥ ୪ ॥

**

**

# ଅହେ ଚକା ଆଖି

## ବେଣୁଧର

( ବିଂଶ ଶତାବ୍ଦୀ )

[ରାଗ-ଏକତାଳି]

ଆହେ ଚକା ଆଖି
ଶଙ୍କା କଲ କି ଏ ମୋ ବିପତ୍ତି ଦେଖି ॥ ପଦ ॥

ତକାଇ ଗ୍ରୁମ୍ମୁରେ ଜଣି ଦନ
ଥକା ହୋଇଲଣି କରି ଧ୍ୟାନ
ଡକାଇତ ଏଡ଼େ ବୋଲି ଜାଣିଥିଲେ
ଆଶ୍ରେ କରିଥାନ୍ତି ମୁଁ କାହିଁକି ॥ ୧ ॥

ଦକା ମାନସରୁ ନ ହରିଲ
ପକାଇ ବିପଦେ ସାରି ଦେଲ
ଡକା ବାଜୁଅଛି ବ୍ରହ୍ମାଣ୍ଡେ ଯା'କରେ
ଏକା ଆରତତ୍ରାଣ ବୋଲିକି ॥ ୨ ॥

ବକାରି ଟିକିଏ ନ ଶୁଣୁଛ
ଡକା ପକାଉଛି ହେ ଶ୍ରୀବତ୍ସ
ବଙ୍କା ହେଲଣିକି ଚକ୍ରାୟୁଧ
ତୀକ୍ଷଣ ଦାନ୍ତ ନ ରଖିଅଛ ସଲଖି ॥ ୩ ॥

କା କାରଣେ ହରି ନ ଶୁଣିଲ
ଫିକା ସୁଦାମ୍ବାକୁ କରି ଦେଲ
ବିକା ହୋଇବାକୁ ଶ୍ରୀଚରଣ ତଳେ
ନକାଣିବା ପାଇଁ ପାଶୋରିଛକ ॥୪॥

ଠକାଠକ ପଣ ଗୋଟି ଛାଡ଼ି
ଧକ୍‌କା ଦେଇ ବିପତ୍ତିକ ତଡ଼ି
ଅକାରଣ ନୋହୁ ଦୀନ ବେଣୁଧର
ଜଣାଣ ମାଗୁଛି ମୁଁ ଏଥକ ॥୫॥
**

**

# ରମାରମଣ ହେ

## ବେଣୁଧର

(ତାଳ–ଏକତାଳ)

[ବିଂଶ ଶତାବ୍ଦୀ]

ରମାରମଣ ହେ
କ୍ଷମାକର ମୋ ବିପତ୍ତି ଭାର
ତୁମ୍ଭେ ନ ରଖିଲେ ଆହେ ଦୀନବନ୍ଧୁ
ଏ ଭୃତ୍ୟ ହୋଇବଟି କାହାର ,॥ ଘୋଷା ॥

ଆଉ କେ ମୋ ସାହା ଅଛି ଚଉବାହା
ଏ କଷ୍ଟରୁ କରିବ ଉଦ୍ଧାର
ସଙ୍କଟ ଭଞ୍ଜନ ଗରବ ଗଞ୍ଜନ
ଏ ଭବାର୍ଣ୍ଣବରୁ କର ପାର ॥ ୧ ॥

ସୁଦର୍ଶନ ଚକ୍ର ଘୋଡ଼ାଇ ରଖିଲେ
କି କରି ପାରେ ଗ୍ରହ ଭ୍ରମର
ତବ ବିନା ଦୁଃଖ ହରିବାକୁ ଏ ସଂସାରେ
କାହାକୁ ନ କଲେ ସାର ॥ ୨ ॥

ଆରତେ ଡାକୁଛି ଆର୍ତ୍ତି ଧ୍ୱଂସନକୁ
କିପାଇଁ କରୁଣ ନ ବିଚାର
ଯେବେ କିଛି ଅପରାଧ ଅଛି ପ୍ରଭୁ
ନିଜ କରାୟୁଧରେ ସଂହାର ॥ ୩ ॥

ଏ ଦୁଇ କଥାରୁ କଥାଏ କି ହେତୁ
ନ କରୁଛ କଉସ୍ତୁଭ ହାର
କହେ ବେଣୁଧର ମୋହ ପର ଜଣେ
ଖୋଜିଲେ ନ ଥିବେ ଦୁରାଗ୍ରହ ॥ ୪ ॥
**

**

## ଆହେ ପ୍ରଭୁ ପଙ୍କଜମୁଖ

### ବେଣୁଧର

(ବିଂଶ ଶତାବ୍ଦୀ)

[ତାଳ-ଏକତାଳ]

ଆହେ ପ୍ରଭୁ ପଙ୍କଜ ମୁଖ
କି ହେତୁରୁ ମୋର ନ ହର ଦୁଃଖ ।
କେଉଁ ଦୋଷ ଅବା କଲି ବୋଲି, ମୋହଠାରେ,
ଏ ନିନ୍ଦ୍ୟ ଭାବକୁ ରଖ ॥ ଘୋଷା ॥

ଏ ଭବ ମଣ୍ଡଳେ ମୋହ ସମାନରେ
ନ ଥିବ ଜଣେ ନରେଖ
ଚନ୍ଦ ଦାଢ ଅବା ବନ୍ଦ ହୋଇବାରୁ
ମୋର ବାଙ୍କ କର୍ମ ନୋହେ ସଲଖ ॥୧॥

ମାୟା ଜଂଜାଳରେ ନିତ୍ୟ ଘାଣ୍ଟି ହେଲି
ଦିନେ ନ ପାଇଲି ସୁଖ
ତୁମ୍ଭ ପଦ୍ମ ପ୍ରଭୁ ଥାଉଁ ଥାଉଁ ଏବେ୍ୟ
ଝୁରି ଯାଉଅଛୁ ଦୀନ ଅରକ୍ଷ ॥ ୨ ॥

ବଢାଇବା ଚକା ନେତ୍ର ବନ୍ଧୁବାରୁ
ମୋ କଷ୍ଟ ଥରେ ନ ଦେଖ
ବଳ ପଡୁଅଛୁ ବେଳୁ ବେଳ ମୋର
ବିପଦର ଦାଉ ହେ ନଳିନାକ୍ଷ ॥ ୩ ॥

ଯେତେ ମୋ ଜଣାଣ ଆହେ ନାରାୟଣ
କେହି ଦାସ ହିଁ ଆଉ ସାକ୍ଷ
ଦୀନ ହୀନ ବେଣୁଧର ଅଧମକୁ
ସୁଦର୍ଶନ ଚକ୍ରତଳରେ ରଖ ॥ ୪ ॥
**

**

# ମୂଢ ମନରେ

## ବେଣୁଧର

(ବିଂଶ ଶତାବ୍ଦୀ)

[ତାଳ-ଝୁଲ]

ମୂଢ ମନରେ, ଚନ୍ଦ୍ର ଜଗନ୍ନାଥଙ୍କୁ
ଲଭିବୁ ସୁଗତ ମୁକ୍ତି ପଥକୁ ॥ ଘୋଷା ॥

ଅଶେଷ ପାତକ କ୍ଷୟ ହୋଇଯିବ
ଟେକୁ ଆଶ୍ରେ କଲେ ରମାକାନ୍ତଙ୍କୁ
ଏ ଭବ ସାଗରୁ ପାରି ହେବୁ ଯେବେ
ଡାକ କର୍ଣ୍ଣଧାର ଚକ୍ର ହାତଙ୍କୁ ॥ ୧ ॥

ଆଜନ୍ମରୁ ପାପ ଯେ ଥିବ ଅମାପ
ଖଣ୍ଡିବେ ଦେଖି ତୋ ଭକ୍ତ ମତଙ୍କୁ
ନିଶ୍ଚିନ୍ତରେ ବଇକୁଣ୍ଠରେ ବସିବୁ
ପୂର୍ଣ୍ଣ କରି ତୋର ମନ ରଥଙ୍କୁ ॥ ୨ ॥

ସାଧୁସଙ୍ଗ ଲୋଡ଼ ମାୟାରେ ନ ପଡ଼
ଇଚ୍ଛା ନ କର କେଭେ ଅଦ୍ଭୁତକୁ
ଲକ୍ଷ୍ୟ କରିଆଥ ଅନ୍ତରେ ନିର୍ଭୟ
ହୋଇ ଶ୍ରୀ କମଳ ପଦ୍ମ ନେତ୍ରଙ୍କୁ ॥ ୩ ॥

ମାୟା ମୋହ ହିଂସା ରାଗ ଅହଂକାର
ତେଜ ନିର୍ମଳ କର ଚିତ୍ତକୁ
କହେ ଦୀନ ବେଣୁ କିଂପା ଜାଣୁ ଜାଣୁ
ଅଜଣା ହେଉଛ ଲିଂଘି ମର୍ତ୍ତ୍ୟକୁ ॥ ୪ ॥

**

**

# ଆହେ ମହାବାହୁ

## ବେଣୁଧର

(ବିଂଶ ଶତାବ୍ଦୀ)

[ତାଳ-ଏକତାଳି]

ଆହେ ମହାବାହୁ
ଭାସିଗଲି ଭବ ଜଳେ ଧୃହୁଁ ଧୃହୁଁ ॥ ଘୋଷା ॥

ଭକତ ବତ୍ସଳ ଭାବଗ୍ରାହୀ
ପାର କର କୃପା ନାବ ଦେଇ
ଏ ଘୋର ସଙ୍କଟ ଗଭୀର ସାଗରୁ
କେ ରକ୍ଷା କରିବ ତୁମ୍ଭେ ଆଉଁ ॥ ୧ ॥

ଶରଣ ରକ୍ଷକ ଦୀନ ବନ୍ଧୁ
ଆରତ ଭଂଜନ କୃପାସିନ୍ଧୁ
ତୁମ୍ଭ ଅକଳଙ୍କ ମହିମା ଚନ୍ଦ୍ରକୁ
ଗ୍ରାସୁଛି ଏବେ ବିପଦ ରାହୁ ॥ ୨ ॥

ଚକ୍ର ଦାଢ଼ କିବା ବକ୍ର ହେଲା
ଅରି ଛେଦନକୁ ନ ଭେଦିଲା
ଗରୁଡ଼ ଗ୍ରହ ବଳିଷ୍ଠ ହେବାରୁ
ହାରିଗଲି ତାର ଦେଖି ଦାଉ ॥ ୩ ॥

ଆହେ ପ୍ରଭୁ ଶଙ୍ଖ ଚକ୍ରଧାରୀ
ନ ଦେଖିଲେ ନଷ୍ଟେ ଗଲି ସରି
ବୋଲେ ବେଣୁଧର ଏ ଦୁର୍ଦ୍ଦଶା ହର
ତବ ପାଦେ ସଦା ଧ୍ୟାନ ଥାଉ ॥ ୪ ॥

**

***

# ମହାବାହୁ ! କେବେ ଦେବ ଦରଶନ ହେ

**ବେଣୁଧର**

(ବିଂଶ ଶତାବ୍ଦୀ)

[ତାଳ-ଆଠତାଳି]

ମହାବାହୁ ! କେବେ ଦେବ ଦରଶନ ହେ ?
ତବ ନାମ ବଳେ ନ ଗୁଡ଼ିବ ହେଲେ
ଏ ପାମର ଦୀନ ହୀନ ହେ ॥ ଘୋଷା ॥

ଏ ବିଷୟୀ ବିଷ ରଜନୀ ଦିବସ ଘାରୁଅଛି ମୋର ମନ ହେ
ଦିଅ ସଦବୁଦ୍ଧି ଆହେ ଦୟାନିଧି ନାଶ ଯାଉ ମୋ କୁଜ୍ଞାନ ହେ ॥ ୧ ॥

ସାଧୁ ସଙ୍ଗ ଦିନେ କଲିନାହିଁ ପ୍ରଭୁ ନ କଲି ନାମ ଭଜନ ହେ
ମାୟା ମୋହେ ପଡ଼ି ଧନ୍ଦା ହେଉଅଛି ଲୋଭ ଗ୍ରସ୍ତେ ଗଲାଦିନ ହେ ॥୨॥

ଜପ ତପ ଦାନ ଧ୍ୟାନ କରିବାକୁ ଅଟଇ ମୁଁ କର୍ମହୀନ ହେ
ଏ ଭବାର୍ଣ୍ଣବରୁ କିପରି ତରିବି କହ ଆରତ ଭଂଜନ ହେ ॥ ୩ ॥

ମାଗୁ ଅଛି ଏତେ ଶ୍ରୀ ପଦ ପଙ୍କଜେ ତବ ପଦେ ରହୁ ଧ୍ୟାନ ହେ
ବୋଲେ ବେଣୁଧର ତବ ନାମ ଧରି ଯାଉ ଏ ଛାର ଜୀବନ ହେ ॥ ୪ ॥

**

**

# ଚ୍ହାଁ ସଖୀ ଗଜ ଉଦ୍ଧାରଣ ବେଶକୁ

## ବେଣୁଧର

(ବିଂଶ ଶତାବ୍ଦୀ)

[ପ୍ରାଣବନ୍ଧୁ ଆସ କେଳିପୁରେ-ବୃନ୍ଦେ]

ଚ୍ହାଁ ସଖୀ ଗଜ ଉଦ୍ଧାରଣ ବେଶକୁ ଆଜ ॥ ପଦ ॥

ଆହା ସେ ନବ ଲାବଣ୍ୟ ରୂପ କେଡ଼େ ଶୋଭାବନ
ଦରଶନେ ବଶ ନୋହିବ କା ନେତ୍ର ସରୋଜ ॥ ୧ ॥

ହୋଇଣ ଦିବ୍ୟ ଭୂଷଣ ଭ୍ରାତା ପତ୍ନୀ ସହିତେଣ
ବିଜେ ରତ୍ନ ସିଂହାସନେ ପ୍ରଭୁ ଶ୍ରୀ ଦେବରାଜ ॥ ୨ ॥

ନାନା ପୁଷ୍ପ ହାରମାନ ଗଳାରେ ଦିଶେ ଶୋଭନ
ରତ୍ନ ମୁକୁଟାଦି ଅଳଙ୍କାରେ ହୋଇ ସଜ ॥ ୩ ॥

ଆହା ସେ ମୂରତି ଛବି ବର୍ଣ୍ଣିବ କି ଶୁର କବି
ଦୀନ ବେଣୁଧର ଜଣାଏ ସେ ପଦ ସରୋଜ ॥ ୪ ॥

**

**

# ଜୟ ଜଗଜ୍ଜନ ହିତକାରୀ

## ବେଣୁଧର

(ବିଂଶ ଶତାବ୍ଦୀ)

[ ରାଗ-ଗୁର୍ଜରୀ । ତାଳ-ଏକତାଳି ]

ଜୟ ଜଗଜ୍ଜନ ହିତକାରୀ (ହେ ପ୍ରଭୁ)
ଶ୍ରୀ ନୀଳାଚଳ ବିହାରୀ ।।ଘୋଷା।।

ଦୈତ୍ୟକୁଳ ବିନାଶନକାରୀ
ନାମ ବହିଅଛ ଦଇତ୍ୟାରି
ଶଙ୍ଖାସୁରକୁ ହେଲେ ସଂହାରି, (ହେ ପ୍ରଭୁ)
ବେଦ ଆଣିଲ ଉଦ୍ଧାରି ।।୧।।

ପୁଣି କଚ୍ଛପ ରୂପେ ଶ୍ରୀହରି
ଚକ୍ରାକାରେ ଅବନୀକି ଧରି
ହୋଇ ବରାହ ରୂପ ମୁରାରି, (ହେ ପ୍ରଭୁ)
ଦନ୍ତେ ମହୀ ରକ୍ଷା କରି ।।୨।।

ନରସିଂହ ମୂର୍ତ୍ତି ହୋଇ କରି
ଭକ୍ତ ଛଳେ ହିରଣ୍ୟ ବିଦାରି
ପ୍ରହ୍ଲାଦକୁ ସ୍ୱର୍ଗେ ଇନ୍ଦ୍ର କରି, (ହେ ପ୍ରଭୁ)
ଭୁଞ୍ଜାଇଲ ସୁଖ ଶିରୀ ।।୩।।

ଦିବ୍ୟ ବାମନ ମୂରତି ଧରି
ବଳି ଦ୍ୱାରେ ହୋଇଲ ଭିଖାରୀ
ତିନି ପାଦ ଦାନ ମାଗି କରି, (ହେ ପ୍ରଭୁ)
ରୁପିଲ ପାତାଳ ପୁରୀ ।।୪।।

ପର୍ଶୁରାମ ରୂପେ ପର୍ଶୁ ଧର
କ୍ଷତ୍ରିୟଙ୍କୁ ରଣେ ଜିଣିକର
ରାମ ରୂପେ ଲଙ୍କା ଧ୍ୱଂସ କରି, (ହେ ପ୍ରଭୁ)
ସୀତା ଆଣିଲ ଉଦ୍ଧାର ।।୫।।

ଗୋପେ ନନ୍ଦ ଘରେ ଜନ୍ମି କରି
ହଳ ମୂଷଳ ଧାରଣ କାରି
ବୌଦ୍ଧ ରୂପେ ରହ୍ନ ନୀଳଗିରି, (ହେ ପ୍ରଭୁ)
ମହିମା ଅଛି ବିସ୍ତାର ।।୬।।

କଳି ଶେଷେ କଲ୍କି ଅବତାର
ମ୍ଳେଚ୍ଛ ସଂହାରିବ ଖଡ଼୍‌ଗ ଧରି
ବେଣୁଧର ଶ୍ରୀପଦେ ଭିଖାରୀ, (ହେ ପ୍ରଭୁ)
ଭବାବ୍ଧିରୁ କର ପାର ।।୭।।

**

**

# ଅରକ୍ଷିତ ବଂଧୁ

## ବେଣୁଧର

(ବିଂଶ ଶତାବ୍ଦୀ)

(ରାଗ-ତୋଡ଼ି ପରଜ । ତାଳ-ଏକତାଳୀ)

* ଅରକ୍ଷିତ ବନ୍ଧୁ ଆହେ କୃପାସିନ୍ଧୁ
ଅମଳ କମଳ ଡୋଳା
ଛଳେ ମୋହ ପ୍ରତି ଅକରୁଣ ନୁହ
ପ୍ରଭୁ ଭକ୍ତ ଭାବଭୋଳା ହେ
ଦୁରିତ ନାଶନ ରଥାଙ୍ଗ ପାଣି
ରାସ ରସିକ ଶ୍ରୀ ହରିଙ୍କି ବା କସ
ଅଜଣା ମୋ ଦୁଃଖ ଶ୍ରେଣୀହେ ॥୧॥

ଗୁଣ ବର୍ଗ ଦାମି ହେଲ ମୁଁ ଅଥାମି
କାହିଁ ନ ମିଳଇ ବାସ
ଘାତମାତ ମୋର ସଂସାରୁ ବାହାର
କୁଳମୂଳ କଲ ନାଶ ହେ
ମୁହିଁଟି ଭ୍ରମର ଚରିତ ଗାଇ
ତନୁ କାଳଆହେ ଏଣେ ତେଣେ ବୁଲେ
ପିତୃ ଅପରାଧୀ ହୋଇ ॥୨॥

---

* କବିଙ୍କର ପିତା କ୍ରୋଧବଶତଃ ଗୃହରୁ ବିତାଡ଼ିତ କରିଦେବାରୁ ଶ୍ରୀ ଶ୍ରୀ ଜଗନ୍ନାଥଙ୍କୁ ଏହି ଗୀତର ଆଦ୍ୟ ଅକ୍ଷରେ କବି କାନ୍ଦି କାନ୍ଦି ନିଜ ଦୁଃଖ ଜଣାଇଥିଲେ । ୧୯୧୫ ମସିହାରେ ଏ ଗୀତ ପୁରୀଠାରେ ରଚିତ ହୋଇଥିଲା ।

ବନ୍ଧୁ ଘର ଖୋଜ ଖୋଜ ଏବେ
ଆଜ ପାଇଛୁ ଦଶନ୍ଦ୍ର ବନ୍ଧୁ
ଭିନ୍ନ କର ଦଅପଛେ ତୁମ୍ଭେ ମୋତେ
ମାନସୁ ଗୋକୁଳ ଇନ୍ଦୁ ହେ
ଖାତର ନାହିଁ ମୋ ଏଥିକ ଲବେ
ରହ ବନ୍ଧୁଲେ ତୁନ୍ଧୁ ଏ ଧାନଠାରେ
ଠେଲ୍ ଚରଣ ପଲ୍ଲବେ ହେ ॥୩॥

ଆଜନ୍ମରୁ କ୍ଳେଶ ଲଭିଛୁ ଅଶେଷ
କର୍ମେ ଯା ଦେଇଛ ଯାଚ
ହେ-ତା ମାଗୁନାହିଁ ବାଞ୍ଛ ମାଗୁନାହିଁ
ମା ନ ଏତକ ମାଗୁଛୁ ହେ
ହରପେ, ଆଜ୍ଞା ହେଉ ତବ ସେବା
ରକ୍ତ ହସ୍ତେ ବେଣୁଧର ଭେଟିବାର ଦୋଷ
ଲେଶ ନ ଧଶବା ହେବା ହେ ।
**

**

# କେତେ କହିବ ହେ

## ବେଣୁଧର

(ବଂଶ ଶତାବ୍ଦୀ)

[ରାଗ-ତୋଡ଼ି ପରଜ । ତାଳ-ଆଡ଼ତାଳୀ]

କେତେ କହିବ ହେ ମୋ ଦୁଃଖ କାହାଣୀ ଆଜ
ଶୁଣି ନ ଶୁଣିଲା ପରି ତ ହେଉଛ
ମୋ କର୍ମକୁ ମହାବାହୁ ।।ଘୋଷା।।

ଅନ୍ତର୍ଯ୍ୟାମୀ ନାଥ ଆହେ ଜଗନ୍ନାଥ
ପତିତପାବନ ହରି
ଧରାମଧ୍ୟେ ରହି ଏତେ କଷ୍ଟ ସହି
ନପାରେ ମୁଁ ପ୍ରାଣଧରି ।।୧।।

ଶୁଣାଥିଲି କାନେ ଗୀତାଦି ପୁରାଣେ
ତୁମ୍ଭେ ଦୁଃଖ ହରି ବୋଲି
ଦେଶ କାଳ ଜାଣି ଏବେ ମୁଁ ତୁମ୍ଭଙ୍କୁ
ସୁଖହରି ନାମ ଦେଲି ।।୨।।

ନିନ୍ଦା ଅପଖ୍ୟାତି ଅସଂଖ୍ୟ ବିପତ୍ତି
ଭୋଗାଇଲ ବାଳକାଙ୍କୁ
ଭକ୍ତଙ୍କୁ ସ୍ଥା ଦେଇ ବୋଲାଇଛ
ତୁମ୍ଭେ ପରା ପରମ ଦୟାଳୁ ।।୩।।

ବୋଲେ ବେଣୁଧର ଆହେ ବିଶ୍ୱମ୍ଭର
ତୁମ୍ଭକୁ ନାହିଁକି ଜଣା
ମୁଁ ପାତକୀ ବର ବୋଲି ନିରନ୍ତର
ସଂସାରେ ବାଜେ ବାଜଣା ।।୪।।

**

**

# ଥକି ଗଲଣି ଡାକି ଡାକି ହେ

## ବେଣୁଧର

(ବିଂଶ ଶତାବ୍ଦୀ)

[ରାଗ-ଧନାଶ୍ରୀ । ତାଳ-ଝୁଲ]

ଥକି ଗଲଣି ଡାକି ଡାକି ହେ, ଚକା ଆଖି
ବଙ୍କା ବଇଷ୍ଣବଙ୍କି ମୋର ବିପତ୍ତି ଗରୁ ହେଲା କି ।। ଘୋଷା ।।

ରଜତ ମଣ୍ଡପୁ ଆଜି ଫକୀର ବେଶକୁ ସାଜି
ଅକିଞ୍ଚନେ ହୋଇଥିଲ ସାକ୍ଷୀ
ବନ ବନ ଯୋକାଏତ ଥିଆନ୍ତି ସୁଖୀ
ଠକିଦେଲ କାହିଁ ପାଇଁ ଏବେ ଆଜନ୍ମ ଦୁଃଖିକି । ୧ ।।

ରଙ୍କି ସିନା ମୁଁ ସର୍ବଦା ଶଙ୍କିତ ନ ଥିଲ କଦା
ପଙ୍କିଲ ନୟନ ଜୀ'ର ଦେଖି
ଠଙ୍କି ନାହିଁ କର କେନ୍ଦୁ ଶିରେ ସଲଖି
ମୁଁ କି ଅପରାଧିଁ ଦବା ରଜନୀ ଲୋତକ ଆଖି ।। ୨ ।।

ଲୁକି ଗଲକି ତୁମ୍ଭର ମହିମା ଧନ ଭଣ୍ଡାର
ଶିଖି ଚୂଳିଆ ରହସ୍ୟ ଏକି ?
ଲେଖି ଭକ୍ତ ତମସୁକ ସ୍ୱହସ୍ତେ ଟେକି
ବିକଚୁ ପରା ଏ ଦେହ ଜୀବନ ତୁମ୍ଭ ତହିଁକି ? ।। ୩ ।।

ବାକୀ ବା କି ଅଛି ମୋର କହ ହେ କିଶୋରୀ ବର
ଝୋକିଛୁଡ଼ା ଶୁଣିବା ପାଇଁକି
ଡାକି ନ ରଖ ଗୁପତେ ଆଜ୍ଞା ଛଇକି
ଅଜାତି ନୋହୁ ଜଗତେ ବେଣୁଧର ଭକ୍ତେ ଯେ କି ।। ୪ ।।

**

**

# ଆହେ ଦୀନବନ୍ଧୁ

## ବେଣୁଧର

(ବିଂଶ ଶତାବ୍ଦୀ)

[ରାଗ-ମଧୁଶ୍ରୀ । ତାଳ-ଏକତାଳି]

ଆହେ ଦୀନବନ୍ଧୁ
ଦିନ ସରୁନାହିଁ ମୋର କାନ୍ଦୁ କାନ୍ଦୁ ॥ ଘୋଷା ॥

ଦୟାମୟ ହୋଇ ଜଗତରେ ନାମ ବହିଅଛ ସବୁଠାରେ
ଦୁରିତ ନାଶନ ପତିତପାବନ
ବାନା ଲୁଚାଇଛ କେଉଁ ପୁରେ ? ॥ ୧ ॥

ଦୁଃଖୀ ସୋଦର ବୋଲାଅ ପରା
ଦୁଃଖ ମୋର ଦେଖି ବଂଶୀଧରା
ଦୁଇ ନୟନକୁ ବୁଜି ଦେଲ କି ହେ
ଶିଖି ଶିଖଣ୍ଡ ମୁକୁଟ ଧରା ॥ ୨ ॥

ଦାମୋଦର ଦ୍ୱିଜ ସଙ୍ଗେ ମିଳି ପୂର୍ବରୁ ଥିବାରୁ ପଦ୍ମନେତ୍ର
କୋଟି ଧନ ଗଣି ଦେଲ ସେହିକ୍ଷଣି
ମୋ ବେଳକୁ ହେଲ ଶୂନ୍ୟ ହସ୍ତ ॥ ୩ ॥

ଦରିଦ୍ର ସଙ୍ଗାତ ହେ ମୋହନ ! ଦୁର୍ଦ୍ଦଶା ମୋହର ଅକଥନ
ଦୀନ ହୀନ ଗ୍ଲର ଦୋଷୀ ବେଣୁଧର
ଦୁଃସହ କଷଣେ ଝରେ ଦିନ ॥ ୪ ॥

(ଆହେ ଚକାଡୋଳା ଭକ୍ତ ଭାବକୁ ବାନ୍ଧିଛ ଶୂନ୍ୟ ଭେଳା-ବୁଢେଇ)

**

**

# ଅନାଥର ବଂଧୁ

## ଗୋପାଳଚନ୍ଦ୍ର ପ୍ରହରାଜ

( ବିଂଶ ଶତାବ୍ଦୀ )

ଅନାଥର ବନ୍ଧୁ, ଆହେ କୃପାସିନ୍ଧୁ,
ମୋ ଦୁଃଖ ହେଲାଣି ଘୋର
ଉଠୁଛି ଲହର ନାବ ହୁଏ ଘାର
କେମନ୍ତେ ହୋଇବ ପାର ॥ ୧ ॥

ପ୍ରଲୋଭନେ ପଡ଼ି ସତ୍ୟପଥ ଏଡ଼ି
ବିବେକ ପଥକୁ ହୁଡ଼ି
ରିପୁବଶେ ଗଡ଼ି ମାୟା ମୋହେ ଜଡ଼ି
ପାପେ ଯାଉଅଛି ସଡ଼ି ॥ ୨ ॥

ଜାଣୁ ଜାଣୁ ମୁହିଁ ଅନଳକୁ ଡେଇଁ
ହେଉଛି ପତଙ୍ଗ ସର
ପାପ ପୁଣ୍ୟ ଜାଣି ହୁଏ ମୁଁ ଅଜ୍ଞାନୀ
ହେଉଅଛି ହତଶିରୀ ॥ ୩ ॥

ଦେଖି ପର ଦୁଃଖ ନ ହୁଏ ବିମୁଖ
ମନରେ ଗର୍ବ ଆଚର
ମୁହଁରେ କହଇଁ ଚଳେ ନ ହେଳଇଁ
ବେଳକାଳ ଗଲା ସର ॥ ୪ ॥

**

**

# ପାପ ନାଶନ

## ଗୋପାଳଚନ୍ଦ୍ର ପ୍ରହରାଜ

( ବିଂଶ ଶତାବ୍ଦୀ )

ପାପ ନାଶନ ତାପ ବାରଣ
ଜଗତ ଜୀବନ ହେ
ସତ୍ୱର ମୋର ଦୁଃଖ ସଂହର
ଦିଅ ସଦଜ୍ଞାନ ହେ ॥ ୧ ॥

ଶାନ୍ତ ମୁକତ ଧର୍ମ ସୁଗତ
ଦିଅ ନିରନ୍ତର ହେ
ତୁମ୍ଭ ଚରଣେ ମୁହିଁ ଅନୁକ୍ଷଣେ
ଥାଏଁ ପଣକର ହେ ॥ ୨ ॥

ଯାହା ମୁଁ କରଇଁ ଯାହାମୁଁ କହଇଁ
ଯାହା ଶୁଣୁଥାଇଁ ହେ
ଯାହା ମୁଁ ଦେଖଇଁ ଯାହା ମୁଁ ଚଳଇଁ
ରହୁ ତୁମ୍ଭ ଠାଇଁ ହେ ॥ ୩ ॥

ଦୁଃଖ ଜଞ୍ଜାଳ ପାପ ବହୁଳ
ଅପାର ସଂସାର ହେ
ଉଦ୍ଧର ଧର ଜଗତ ମଧର
ମୁଁ ଅଟେ ପାମର ହେ ॥ ୪ ॥

**

**

# ଜୟ ପତିତପାବନ

## ଶ୍ରୀ ଭିକାରୀ ଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

[ ଭୀମପଲାଶ୍ରୀ-କବାଲି ]

(ଜୟ) ପତିତପାବନ
(ତବ) ପତିତପାବନ ବାନା କରି ଦରଶନ
ଧନ୍ୟ ପତିତ ଜୀବନ ଧନ୍ୟ ପତିତ ନୟନ
ପତିତ ବେଦନ ଶୁଣି ପ୍ରଭୁ ଜନାର୍ଦ୍ଦନ
ପତିତପାବନ ମୂର୍ତ୍ତି କରିଛ ଧାରଣ ।

(ବସି) ନୀଳାଚଳେ ଲଗାଇଛ କେତେ ଆୟୋଜନ
ବ୍ରାହ୍ମଣ ଚଣ୍ଡାଳେ ଅନ୍ନ ଏକଠେ ଭୋଜନ
ଜଗତ ଭିତରେ ଏହି ଅପୂର୍ବ ଘଟଣ
ସର୍ବେ ନିର୍ବିକାର କରି ଶ୍ରୀମୁଖ ଦର୍ଶନ
ଜ୍ଞାନୀ ଧ୍ୟାନୀ ପୁଣ୍ୟବନ୍ତ ଜନ ଆଗମନ
(ଦେଖି) ବିସ୍ମିତ ହେଲ କି ପ୍ରଭୁ ପତିତ ମୋଚନ ।

**

**

## ଜଗବନ୍ଧୁ ଜଗତ ମୋହନ

### ଶ୍ରୀ ଭିକାରୀ ଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

[ ଭୈରବ-କବାଲ ]

ଜଗବନ୍ଧୁ ଜଗତ ମୋହନ
ଅଧମ ଅଗତ ଉଦ୍ଧାର ପାଇଁକି
ହୋଇଛ ପତିତପାବନ
ନୀଳାଚଳ ବାସୀ ନୀଳାଚଳେ ବସି
ଉଡ଼ାଇ ଦେଇଛ କେତନ ॥ ୧ ॥

ଯେତେ ଯେ ଜଗତେ ପତିତ ଜନଙ୍କୁ
ଡାକୁଛ କରିବ ମୋଚନ
ମର୍ତ୍ତ୍ୟପୁରେ ଦେଖି ପାପର ପ୍ରତାପ
ତୁମ୍ଭେ ପାପତାପ ନାଶନ ॥ ୨ ॥

ଭଲ ମର୍ତ୍ତ୍ୟେ ବାସ ସ୍ୱର୍ଗେ ସୁରଗଣ
ଲୋଡ଼ନ୍ତି ତୁମ୍ଭର ଦର୍ଶନ
ଅଶେଷ ପାତକୀ ଡାକୁଛୁ ଆରତେ
ଦାଦ୍ଧ କର ମଧୁସୂଦନ ॥ ୩ ॥

**

**

# କଳା ଶ୍ରୀମୁଖଙ୍କୁ ମୁଁ ପୁଛଇଁ

## ବଚ୍ଛନ ଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

[ କେଶବ କୋଇଲି-ବୃତ୍ତେ ]

କୋଇଲି ! କଳା ଶ୍ରୀମୁଖଙ୍କୁ ମୁଁ ପୁଚ୍ଛଇଁ
କେବେ ପାଦତଳେ ଠାବ ଦେବେ ରମାପାଇଁ
ଲୋ କୋଇଲି ॥ ୧ ॥

କୋଇଲି ! ଖେଦ ଜଳେ ଗଲି ମୁହିଁ ଭାସି
ଛନ୍ନ ସେ କଣବେ କେବେ ମୋ ପାତକ ରାଶି
ଲୋ କୋଇଲି ॥ ୨ ॥

କୋଇଲି ! ଗରୁ ସିନା ମୋ ପାତକ ଭାର
ଗରୁଡଧ୍ୱଜଙ୍କୁ ତାହା କେତେକ ମାତର
ଲୋ କୋଇଲି ॥ ୩ ॥

କୋଇଲି ! ଘୋର ମୋର ଘରର ଜଞ୍ଜାଳ
ଘଡ଼ିଏ ନ ଚଳୁଲଇଁ ପ୍ରଭୁ ଆଦ୍ୟମୂଳ
ଲୋ କୋଇଲି ॥ ୪ ॥

କୋଇଲି ! ଅଣାସ୍ଥିତ କରଇ ବ୍ୟବସ୍ଥା
ଅଖିଳ ବ୍ରହ୍ମାଣ୍ଡ ପଣ୍ଡ ନ କରନ୍ତୁ ଦସ୍ଥା
ଲୋ କୋଇଲି ॥ ୫ ॥

କୋଇଲି ! ଚକାଡୋଳା କଣ୍ଠକେ କି ସତେ
ଚିତ୍ତ ମୋ ରହିବ ତାଙ୍କ ମଧ୍ୟେ ଅନୁବ୍ରତେ
ଲୋ କୋଇଲି ॥ ୬ ॥

କୋଇଲି ! ଛିଣ୍ଡି ଯାଉ ଏ ବିଷୟ ଡୋର
ଛଛନ୍ଦା ପଦ୍ମରେ ତାଙ୍କ ଏ ମୋର ଗୁହାର
ଲୋ କୋଇଲି ॥ ୭ ॥

କୋଇଲି ! ଜଗନ୍ନାଥେ କରନ୍ତୁ କରୁଣା
ଯୋଡ଼ହସ୍ତେ ମାଗଇଁ ମୁଁ କଲି ତୋତେ ଜଣା
ଲୋ କୋଇଲି ॥ ୮ ॥

କୋଇଲି ! ଝାଡ଼ି ସରି ଏ ଜୀବନ ପଥ
ଝୁଣ୍ଟି ମରେଁ ଖସି ଗୋଡ଼ ହୋଇ ଅଣାୟତ
ଲୋ କୋଇଲି ॥ ୯ ॥

କୋଇଲି ! ଅଳି ଘେନା କରି ଶିଘ୍ରପଢ
ଅମ୍ବରତେ ପଦ୍ମପାତେ ଖଟାନ୍ତୁ ମୋ ମଢ
ଲୋ କୋଇଲି ॥ ୧୦ ॥

କୋଇଲି ! ଟିକାଏକ କଲେ କୋପଦୃଷ୍ଟି
ଟଳିଯିବ ନିମିଷକେ ମୋ ପାତକ ସୃଷ୍ଟି
ଲୋ କୋଇଲି ॥ ୧୧ ॥

କୋଇଲି ! ଠିକେ ଏ ସଂସାର କରେ ବଣା
ଠୂଲେ ବନ୍ଧନ ପାତକ ଗିରି ହେଉ ଚୂନା
ଲୋ କୋଇଲି ॥ ୧୨ ॥

କୋଇଲି ! ଡାକବକା ଅଟେ ମୋ ଦୁରିତ
ଡୋଳେ ଦେଖି ନ ଦେଖନ୍ତୁ ନୀଳଗିରି ନାଥ
ଲୋ କୋଇଲି ॥ ୧୩ ॥

କୋଇଲି ! ଢାଳେ ଯେବେ କରୁଣାର ବାରି
ଢାଳନ୍ତେ ଦୂରିତ-ତମ ରହନ୍ତା କି ମୋରି
ଲୋ କୋଇଲି ॥ ୧୪ ॥

କୋଇଲି ! ଅନନ୍ତ କୋଟି ବ୍ରହ୍ମାଣ୍ଡ ପତି
ଅଣୁ ଏକ କଲେ କୃପା ଏଡ଼ନ୍ତ ବିପତ୍ତି
ଲୋ କୋଇଲି ॥ ୧୫ ॥

କୋଇଲି ! ତରଯାନ୍ତ ଏ ଭବ- ସରିତ
ଛଳେ ନ ଛୁଅନ୍ତା ମୋରେ ପ୍ରପଞ୍ଚ ଦୂରିତ
ଲୋ କୋଇଲି ॥ ୧୬ ॥

କୋଇଲି ! ଅନ୍ତେ ଠାବ ଲଭି ତାଙ୍କ ପଦେ
ଥିର ସୁଖ ଭୁଞ୍ଜିବିକ ଥାକ ଅପ୍ରମାଦେ
ଲୋ କୋଇଲି ॥ ୧୭ ॥

କୋଇଲି ! ଦାସ୍ୟ ସତେ ବସିବ ଚିତ୍ତରେ
ଦାସ୍ୟାନନ୍ଦ ଭସାଇବେ ଦାସ୍ୟ-ସରିତରେ
ଲୋ କୋଇଲି ॥ ୧୮ ॥

କୋଇଲି ! ଧାମ ତାଙ୍କ ହରାଇ ମୁଁ ଆସି
ଧରାତଳେ ରହିଛୁଁ ହୋଇ ପରବାସୀ
ଲୋ କୋଇଲି ॥ ୧୯ ॥

କୋଇଲି । ନରକର ବାଟୁଁ ହାତ ଧରି
ନେବକି ସତେ ସେ ମୋର ନୀଳାଦ୍ରି ବିହାରୀ
ଲୋ କୋଇଲି ॥ ୨୦ ॥

କୋଇଲି ! ପାପ ମୋର ଅଛି ଅକଳିତ
ପ୍ରଭୁ କୃପା କଲେ ହେଲେ ହେବ ତାହା ହତ
ଲୋ କୋଇଲି ॥ ୨୧ ॥

କୋଇଲି ! ଫିଟାନ୍ତୁ ସେ ଭାବ ଗଣ୍ଠି ମୋର
ଫନ୍ଦାଧନ ମୋର ସେ ଯେ କମଳାଙ୍କ ବର
ଲୋ କୋଇଲି ॥ ୧୨ ॥

କୋଇଲି ! ବାସ୍ତ ସିନା ମୋର ତାଙ୍କ ଧାମ
ବନ୍ଧ ଛନ୍ଦିଅଛୁ ପରବାସେ ହୋଇ ବାମ
ଲୋ କୋଇଲି ॥ ୧୩ ॥

କୋଇଲି ! ଭବ ଜଳଧିରୁ କରେ ଗୁଣି
ଭବଭୀତ ବତ୍ସଙ୍କେ ରଖନ୍ତୁ ଚକ୍ରପାଣି
ଲୋ କୋଇଲି ॥ ୧୪ ॥

କୋଇଲି ! ମାଟିର ଏ ଦେହ ହେବ ମାଟି
ମରଣାନ୍ତେ ଧାମେ ତାଙ୍କ ଯିବନ୍ତି କି ଛୁଟି
ଲୋ କୋଇଲି ॥ ୧୫ ॥

କୋଇଲି ! ଯମ ଫାଶ ନ ଲାଗିବ ଗଳେ
ଯିବ ସବୁ ଲୋକ ଲଙ୍ଘି ଜଗନ୍ନାଥ ଆଳେ
ଲୋ କୋଇଲି ॥ ୧୬ ॥

କୋଇଲି ! ରଙ୍ଗାଧରେ ଆଜ୍ଞା ଦେଲେ ହର
ରମା ସାରଦା ଫେଡ଼ିବେ କଷଣ ମୋହର
ଲୋ କୋଇଲି ॥ ୧୭ ॥

କୋଇଲି ! ଲୀଳା ତାଙ୍କ ହୋଇବ ଗୋଚର
ଲୀଳାମୟ ଦେବେ ଠାବ ନିଜ ପୟରର
ଲୋ କୋଇଲି ॥ ୧୮ ॥

କୋଇଲି ! ବଡ଼ ଆଶା ପୋଷିଅଛୁ ମନେ
ବିଷ୍ଣୁ ପୟରେ ପର୍ଶିବ ଗୁରୁ ସୁପ୍ରସନେ
ଲୋ କୋଇଲି ॥ ୧୯ ॥

କୋଇଲି ! ଜିଭେ ମୋର ବନ୍ଦିବେ ଶାରଦା
ଶୋଣ କମଳଚରଣା ଶ୍ରୀ ହେବେ ବରଦା
ଲୋ କୋଇଲି ।। ୩୦ ।।

କୋଇଲି ! ଷଡ଼ାନନ ପିଅର ଶଙ୍କର
ଚଣ୍ଡିଶମ୍ଭୁ ନାଶେ ଯାହା ହୋଇବେ ମୋହର
ଲୋ କୋଇଲି ।। ୩୧ ।।

କୋଇଲି ! ସର୍ବଥା ଗଣେଶ ଗିରିବାଳା
ସମସ୍ତେ ନାଶିବେ ମୋର ପଥରୁ ଅର୍ଗଳା
ଲୋ କୋଇଲି ।। ୩୨ ।।

କୋଇଲି ! ହେଉ ମୋର ବିଷ୍ଣୁପଦେ ବାସ
ହରି ଚନ୍ଦନେ ମଗନ ହେଉ ମୋ ମାନସ
ଲୋ କୋଇଲି ।। ୩୩ ।।

କୋଇଲି ! କ୍ଷମି ସବୁ ସଞ୍ଚିତ କରମ
ରମାନାଥ ବଞ୍ଛଦେ ଦିଅନ୍ତୁ ନିଜ ଧାମ
ଲୋ କୋଇଲି ।। ୩୪ ।।

**

**

# କୋଟି ଜନମର

## ବଞ୍ଛଦଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

[ ରାଗ-ଶୋକ କାମୋଦୀ ]

କୋଟି ଜନମର କଳୁଷ ଖଣ୍ଡନ୍ତି
କଣାଏଁ କରୁଣା କଲେ ହରି
କ୍ଷୟ ଯାନ୍ତା ମୋର ସକଳ ଦୁରିତ
କଲା ଶ୍ରୀମୁଖକୁ ବାରେ ହେରି
ଆହେ ଗିରିଧାରୀ !
ଘଟ ଘଟକେତ ଅଛ ପୂରି
ଅଧମେ ମୋ ସରି ଅକରୁଣା କର୍ମା
ମରଇ ମୁଁ ମାୟାଜାଲେ ଘୂରି ।।୧।।

ଚପଳା-ଖେଳାରୁ ଚପଳ ଯେ ଭୋଗ
ତହୁଁ ନ ତୁଟଇ ଆଶା ମୋର
ଛନ୍ଦ ହେବାପାଇଁ ଭୋଗ ନାଗ ଫାଶେ
ମନ ମୋ ହୁଅଇ ତତପର
ଆହେ ଯଦୁପତି !
ଝଟତି ସୁଧାର ଏ ମୋ ମତି
ନବ ଦୁର୍ବାଦଳ ଶ୍ୟାମ ଅଭିରାମ
ନାମରେ ଉନ୍ମର ଦିଅ ରତି ।।୨।।

ଟାଳି ଦିଅ ହରି ଚଉଁ ମୋହଗିରି
ନୟନୁଁ ପରଳ କର ହୃତ

ଠାବ ଦିଅ ରଙ୍ଗା ଚରଣରେ କାକି
ଭୂଷଣ୍ଡି ଭାଗ୍ୟ କରି ଦିଅ
ଆହେ ଉଦ୍ଧାର !
ଛାଳେ ମୋ ଦୁର୍ଗନ୍ଧ ଦିଅ ସାରି
ଅଗତିର ଗତି ଜନକଜାପତି
ଅହଲ୍ୟା ତାରଣ ଦଇତାରି ॥୩॥

ତିନି ଭୁବନରେ ମୋହ ସମାନରେ
ପତିତ କେ ଅଛି ନାହିଁ ଜାଣି
ଅସ୍ଥି ନୋହେ ଲେଶ ଏ ମୋର ମାନସ
ନଳିନୀ ଦଳରେ ଯେହ୍ନେ ପାଣି
ଆହେ ଦାରୁ ହରି !
ଧୃତି ଭୂତି ମୋର ଯାଏ ସରି
ନୀଳାଦ୍ରି ଚନ୍ଦ୍ରମା ! ମୋହ ମାୟା-ଅମା-
ଅନ୍ଧାର ଗ୍ରାସଇ ମୋରେ ଘେରି ॥୪॥

ପତିତ କାହାକୁ ତାରି ନାହିଁ ନାଥ
ଭବ କୂପେ ନିପତିତ ମୋରେ
ଫାନ୍ଦ ହୋଇ ମାୟା ବାନ୍ଧଇ ନିରତେ
ଦେଖୁଥିବ ଚକା ନୟନରେ
ଆହେ ବିଶ୍ୱମ୍ଭର
ଭବଭୀତ ମୁଁ ଯେ ନିରନ୍ତର
ମାୟାର ପଟଳ ବଢଇ ପ୍ରବଳ
କମ୍ପାଏ ମୋ ହୃଦ ଥରହର ॥୫॥

ଯମ ଯାତନାରୁ ନିସ୍ତରିବ କେହ୍ନେ
ଯମ ନିୟମରେ ନାହିଁ ଚଳି
ରତିଏ ହେଲେ ମୁଁ ଭୀତି ରଖିନାହିଁ
ଅଧର୍ମୀ ଚରଣେ ବନମାଳି !
ଆହେ ଲୀଳାମୟ !

ବଶ କର ନାହିଁ ମୁଁ ଇନ୍ଦ୍ରିୟ
ଶମଇ ନାହିଁ ମୋ ମନୋରଥ ଜ୍ୱାଳା
ତ୍ରିତାପ ଦହନେ ମୁଁ ଅଥୟ ॥୭॥

ଖୋଲି ଉପସ୍ଥରେ ମୂଳା ଲିଙ୍ଗବାରେ
କାମନା-କାମିନୀ କରେ ହଟ
ସନ୍ତରିବ କେମନ୍ତେ ଭବସିନ୍ଧୁ-ନାର
ନାହିଁ ଅଳକୂଳ ନାହିଁ ଘାଟ
ଆହେ ହୃଷୀକେଶ ।
କ୍ଷମା କର ଦଣ୍ଡାଇବ ଦଣ
କ୍ଷୀଣ ବୁଦ୍ଧି ସ୍ଥିର ବିଚ୍ଛିନ୍ନ ପାମର
ନୋହିଲେ ମୁକର'ଟିଲ୍ ନାଶ ॥୮॥
**

**

# ଆହେ ନୀଳାଚଳ ବିହାରୀ

## ବିଚ୍ଛନ୍ଦ ଚରଣ ପଞ୍ଚକାତ୍ମକ

( ବିଂଶ ଶତାବ୍ଦୀ )

[ରାଗ-କଲ୍ୟାଣ]

ଆହେ ନୀଳାଚଳ ବିହାରୀ !
ପାତକ ପାତକ ଖଣ୍ଡନ କାରୀ ॥ ଘୋଷା ॥

ନବ କଳେବର ଦରଶନ ତୁମ୍ଭ
ପାତକ ସୃଷ୍ଟିକି ଦେଉଛୁ ସାରି
ପ୍ରେମ ଚିନ୍ତାମଣି ଉଜାଡ଼ି ଦେବାକୁ
ରଥେ ଅବେହୁଛ ରଥାଙ୍ଗଧାରୀ ॥ ୧ ॥

ସନ୍ତଙ୍କ କଳୁଷ କରିବାକୁ ନାଶ
ତାଳ ଅକାତରେ କରୁଣା-ବାରି
ଅକଳିତ ଜନ ଆଣିଅଛୁ ଟାଣି
ଚରଣ ତଳକୁ ଲଗାଇ ଡୋରି ॥ ୨ ॥

ମୁଁ ହୀନ ପାମର କୀଟ ନରକର
କଳୁଷେ ଆବୃତ୍ତ ଅଛୁ ମୋ ସର
ଭ୍ରମି ଭବପଥ ତୃଷାରେ ଆରତ
ଆଶ୍ରା ଏକା ତୁମ୍ଭ କରୁଣା ଝର ॥ ୩ ॥

ଅସୁମାର ଦାଉ ଜନନୀ ଜଠର
ଭ୍ରମିଲିଣି ତୁମ୍ଭ ଧାମ ମୁଁ ଦ୍ୱାର
ମୋରେ ଆଜ୍ଞା ହେଉ ଆହେ ମହାବାହୁ
ଏଠୁଁ ଗର୍ଭବାସ ଯାଉ ମୋ ସର ॥ ୪ ॥

ଭୌମ ବଇକୁଣ୍ଠ ବିହାରି ! ଅକୁଣ୍ଠ
ମନେ କେତେ କା'ରେ ନ ଦେଲ ତାରି
ଦସ୍ୟୁଙ୍କୁ ସାମନ୍ତ ଦସ୍ୟୁଙ୍କୁ ପଣ୍ଡୁ
ବଳି ମୋ ପାତକ ନୁହେଁ ତ ଭାରି ॥ ୫ ॥

ମୋ ସଞ୍ଚିତ କର୍ମ ବଳାଉଛି ମୋରେ
ନ ପାରଇଁ ବହି ତା ଅତି ଭାରି
କାନ୍ଦ ମୋ ଉଶ୍ୱାସ କର ବଂଶୀବାସ !
ପାତକୀ ବିଚ୍ଛନ୍ଦ ଡାକେ ଫୁକାରି ॥ ୬ ॥
✳✳

**

# ଜଗବନ୍ଧୁ

## ଲୋକନାଥ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ଜଗବଂଧୁ ତୁମେ ମୋର
ମୋର ଗୁହାରି ଶୁଣ ॥ ଘୋଷା ॥

କାଳ ଜନ୍ତୁ ଘେଣ ଦେଖାଏ ଡଗ୍ରଣ
ପରାଣ ନେବାକୁ କରିଛୁ ଟାଣ
ବାରଣ ତାରଣ କର ହେ କାରଣ
ତୁମ୍ଭଙ୍କୁ ମୋ ପ୍ରାଣ ହେ ରଘୁରାଣ
ଦାତା ଆପଣ, ହେଲେ କୃପଣ ପଣକୁ ପଣ
ପାପୀଗଣ କାହେ ଡାକବେ ପୁଣ ହେ ॥ ୧ ॥

ବରଞ୍ଚି ଭଖାଣ କରି ପରାୟଣ
ତୁମ୍ଭଙ୍କ ନାମକୁ ହେ ନାରାୟଣ
ଲଭିଲେ କାରଣ ଚରଣେ ଶରଣ
ଗାଏ ମୁହିଁ ଜଗବଂଧୁ ଜଣାଣ
ଗୁଣନ୍ତି ଗୁଣ ଚନ୍ଦ୍ର ଅରୁଣ ବାୟୁ ବରୁଣ
ଶୁଝିଁ କେ ପାରିବ ତୁମ୍ଭର ଋଣ ହେ ॥ ୨ ॥

ତୁମ୍ଭେ ସର୍ବଜାଣ ମୋ କଷଣ ଜାଣ
ଜାଣି ଜାଣି ଯେବେ ହେବ ଦାରୁଣ
ଭକତ ଭୂଷଣ ନାମକୁ ଦୂଷଣ
ନ ହେବକ ବାରେ ମନରେ ଶୁଣ
କଲେ କ୍ଷେପଣ କୃପା ଇକ୍ଷଣ ଦୀନ ରକ୍ଷଣ
ଦୁଃଖ ଯିବ ଦୂରେ ସହସ୍ର ଗୁଣ ହେ ॥ ୩ ॥

**

****।**

# ଜଗବନ୍ଧୁ ଅନ୍ଧାରକଣା

## ଲୋକନାଥ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

ଜଗବନ୍ଧୁ ଅନ୍ଧାରକଣା
ଭଲମନ୍ଦ ତୋତେ ନଗଣ୍ଣ (ଆରେ) ଭଲମନ୍ଦ
ତୋତେ ନଗଣ୍ଣ ଜଣା
ଯେତେ ମାରୁସାରୁ ଅଖାଦ୍ୟ କଖାରୁ
କୈବଲ୍ୟ କଣାରେ କଲୁ ତୁ ଗଣା ॥ ୦ ॥

ମହାପରସାଦ ଅଭଡ଼ା ଗରଗଡ଼ ମିଶା ବଗଡ଼ା
(ହେ ନାଲି ବଗଡା)
ପାଟିରେ ପୂରାଇ ରଗଡ଼ ଦେଉଛୁ (ପାଟିରେ)
ଡାଲି ବୋଲି ଖାଲି ଅସିଝା ଚଣା ॥ ୧ ॥

ପିଠା ବୋଲି କାଳିଆ ସୂନା-ଖାଉ ଖାଲି ଗୁହଳ ଚୂନା
(ହେ ଗୁହଳ ଚୂନା)
ଅମାଳୁ ଦମାଳୁ ଭଣ୍ଡି କରେ ଗଲୁ
ସେତ ରହୁଣିଆ ଘିଅରେ ଛଣା ॥ ୨ ॥

ଖାଉ ଭୋଗ ବାର ବୋଲଣା-ଲୁଣିଆ କ ହେଉ ଅଲଣା
(ହେ ହେଜ ଅଲଣା)
ଅକାଣ୍ଡିଆ ଚୂଡ଼ା ହୁଡୁମ୍ବ ଉଖୁଡ଼ା
ଗିଳିଦେବାପାଇଁ ହେଉଛୁ ବଣା ॥ ୩ ।

ଓଡ଼ିଆ ୨

ଜୀଭ ତୋର ସହସ୍ର ଫଣା-ଫେଟରେ ତୋ କୋଟିଏ ଠଣା
(ହେ କୋଟିଏ ଠଣା)
ହେଣ୍ଟି ମାର ମାର ତେଣ୍ଟି ଦେନ୍ତ ହର
ଅଧର ସରକ ଅଧର ପଣା ॥ ୪ ॥

ଜଗବନ୍ଧୁ କରୁଛୁ ଜଣା କର ନବ ଅବତାରଣା
(ହ ଅବତାରଣା)
ବାରେ ଜଗନ୍ନାଥ ମୋର ମନ-ରଥ
ଦଉଡ଼ି ଲଗାଇ ତୋ ପାଶେ ଟଣା ॥ ୫ ॥

**

**

## ଜଗବନ୍ଧୁ ବଡ଼ ହୁଟିଆ

### ଶ୍ରୀ ଲୋକନାଥ ପଟ୍ଟନାୟକ

(ବଂଶ ଶତାବ୍ଦୀ)

ଜଗବନ୍ଧୁ ବଡ଼ ହୁଟିଆ (ଜଗବନ୍ଧୁ ବଡ଼ ହୁଟିଆ)
ଅଘଟ ଘଟିଆ ନଟକୁଟିଆ (ରେ ଅଘଟ······)
ମଞ୍ଚାରୁ ପକାଇ ମାମୁଁକୁ ମାଇଲା
ବାଳୀକି ମାଇଲା ପଛପଟିଆ ॥୧॥

ନନ୍ଦପୁଅ ନୂଆ ନଟିଆ କପଟିଆ ପୀତ ପଟିଆ
(ସେ ପୀତ ପଟିଆ)
ମାଇଁ ସଙ୍ଗେ କେତେ ରଙ୍ଗ ଲଗାଇଲା
ବରଜ ଯୁବତୀ ପଟ ଲୁଟିଆ ॥୨॥

ଚକା ଡୋଳା ବଡ଼ ଗଣ୍ଡିଆ—ଜଗଜ୍ଜନ ମନ ଲୁଣ୍ଡିଆ
କାହାକୁ ଦେଇଛ କୋଠିଆ ବେଠିଆ
କାହାକୁ ଦେଇଛ ତୁଚ୍ଛ ମାଠିଆ ॥୩॥

ଚକା ଆଖି ଚୂଳ ବେଣ୍ଟିଆ ପଣ୍ଡା ପଢ଼ିହାରୀ-ମେଣ୍ଟିଆ
କାହାକୁ ଦେଉଛ ଶ୍ରୀ ଅଙ୍ଗ ଶୁଣ୍ଢିଆ
କାହାକୁ ଦେଉଛ ଦୂରୁ ଭଣ୍ଡିଆ ।।୩।।

ବନ୍ଧୁ ଦଅଁ ବନମାଳିଆ   ବଡ଼ଲୋକ ପ୍ରୀତ ପାଳିଆ
କାହାକୁ କରଛ ଗ୍ରାମୁ ଖୁଣ୍ଟିଆର
କାହାକୁ କରଛ କଳା ବେଠିଆ ।।୪।।

ଆଘ.ମର କୁଳ ଜାଳିଆ   ଦଗାଦିଆ ଜଗା କାଳିଆ
କାହାକୁ ନରୁଚେ ପଲଙ୍କ ସୁପାଢ
ବାହାକୁ ନମିଳେ ଭଙ୍ଗା ଖଟିଆ ।।୫।।

କାରେ କଳା ପାଟ ଶାଢିଆ-କଲ୍‌କାରେ ଧାନ କୁଟିଆ
କାହାକୁ କରଛ ଠଳକ ମାଟିଆ
କାରେ ବା କରଛ ଦାସ କାଠିଆ ।।୬।।

**

**

## ଜଗବନ୍ଧୁ ବଡ଼ କାଲିଆ

### ଶ୍ରୀ ଲୋକନାଥ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ଜଗବନ୍ଧୁ ବଡ଼ କାଲିଆ
ତା ଗୀତ ଦେଖି ମୁଁ ହେଲିଟି (ଆହେ)
ତା ଗୀତ ଦେଖି ମୁଁ ହେଲି ହାଲିଆ ।
ଖଜା ସରଭଜା ମଣ୍ଡକେ ଭୁଞ୍ଜିଲ
ମୋ ପାଇଁ ଖଞ୍ଜିଲ ଦୋଭଜା ଲିଆ ।। ୦ ।।

ସରପଣା ଗୁଣିଗୁଣିଆ    ଖାଏକୋଠ ଟେଗ କାନ୍ଦକା
(ହେ ସରୁକାନ୍ଦକା)
ମୋ ପାଇଁ ଦେଇଛୁ ବଗଡ଼ା ଅଭଡ଼ା
ସେ ପୁଣି କର୍ମକୁ ଭୁଛା ବାଲିଆ ॥ ୧ ॥

କଳା ଖାଲୁ ଖାଉଛୁ ବସି   ଅପମାଲୁ ଛାଡ଼ଆ କସି
(ହେ ଯାଉଛୁ ଚଷି)
ସଶଯିବ ବୋଲି ବରଦ କରଛୁ
ଗଣବଙ୍କ ପାଇଁ ଖଡ଼ା ନାଲିଆ ॥ ୨ ॥

ନକେ ପିନ୍ଧେ ପାଟ ପଡମୀ   କଷ୍ଟୀତଟେ ଫେର ଲୋଟଣି
(ହେ ସବୁକାଛେଣି)
ମୋ ପାଇଁ ହରଆ ଦେଇଛୁ କଣଆ
ସେ ପୁଣି କପଟ ଜାଲି ଜାଲିଆ ॥ ୩ ॥

ଘରକଲ ମାଳ ଶଇଲେ ବଡ଼ ପେଟା ବଡ଼ ଦେଉଲେ
ମୋ ପାଇଁ କରୁଣା ବାଣଧି ଦେଇଛୁ
ଗୃଣ ହାତ ଲମ୍ବ ଖଣ୍ଡେ ଗୃଳିଆ ॥ ୪ ॥

ଜଗବନ୍ଧୁ ଅନ୍ଧାର କଣା-   ଖମ୍ବଆଲୁ ତା ଭୁଟ୍ଟାମଣା
(ହେ ତା ଭୁଟ୍ଟାମଣା)
ନ ଶୁଭେ କାଳକୁ ଭଲ ମୋ ଖାଲକୁ
ଭଲ ଯାକ ସବୁ ହେଲ ଖାଲିଆ ॥ ୫ ॥

ପର ଘର ବୁଢ଼ା କାଳିଆ କଲ ମୋତେ କର ଛାଳିଆ
(ହେ କଣ୍ଠ ପାଳିଆ)
ଧରାଇଲ ହାତେ ଖପର ଆଳିଆ
ମୁଣ୍ଡରେ ପିଟିଲ କାଠ ଫାଳିଆ
(ମୋ ମୁଣ୍ଡରେ ପିଟିଲ କାଠ ଫାଳିଆ) ॥ ୬ ॥

**

**

# ଭଜମନ-ସଜ୍ଜନ ରଞ୍ଜନକାରୀ

**ଶ୍ରୀ ଲୋକନାଥ ପଟ୍ଟନାୟକ**

(ବିଂଶ ଶତାବ୍ଦୀ)

[ ରାଗ-ଆଶାବରୀ ]

ଭଜମନ-ସଜ୍ଜନ ରଞ୍ଜନ କାରୀ (ଭଜମନ)
ଭଜ ମୁରାରି ଭବଭୟ ହାରୀ
କେଶବ କୃଷ୍ଣ କଂସାରି ||୦||

ମୃଗମଦ ଚର୍ଚ୍ଚିତ ସୁରନର ଅର୍ଚ୍ଚିତ
ଚରାଚର ମାନସ ହାରୀ
ବ୍ରଜରାଜ ନନ୍ଦନ   ଯୋଗୀଜନ ବନ୍ଦନ
ମୋହନ ମନ୍ଦର ଧାରୀ ||୧||

ବାରଣ ନିସ୍ତାରଣ ଧନୁଶର ଧାରଣ
ଉଦ୍ଧାରଣ ଗୌତମ ନାରୀ
ସୀତାପତି ସୁନ୍ଦର   ବଳେ ନୀଳ କନ୍ଦର
କମଳ ସଙ୍କାଶ ଧାରୀ ||୨||

ବିପତ୍ତି ବିଭଞ୍ଜନ   ଅଳିକୁଳ ଗଞ୍ଜନ
ବୃନ୍ଦାବନ ନିକୁଞ୍ଜ ବିହାରୀ
ରତ୍ନରେଖା ଖଣ୍ଡିତ ମଣିମାଳା ମଣ୍ଡିତ
ଦାରୁବ୍ରହ୍ମ ଦଇତ୍ୟାରି ||୩||

**

**

# ମଣିମା ଶୁଣିମା ବାରେ

## ଶ୍ରୀ ଲୋକନାଥ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ମଣିମା ଶୁଣିମା ବାରେ
ଡାକେ ମୁଁ ମନ୍ଦର ଦ୍ୱାରେ
ବୁଡ଼ିତ ଯାଉଛି ନାଥ   ପଡ଼ି ଦୁଃଖ ପାରାବାରେ ।।୧।।

ବ୍ରହ୍ମାଣ୍ଡେ ବାଜୁଛି ବାଜା
କୃପାଳୁ ନୀଳାଦ୍ରୀ ରାଜା
ନବାର ଦ୍ରୌପଦୀ ଲଜ୍ଜା
ଉଡ଼େ ଯା କୀରତ୍ତି ଧ୍ୱଜା
କୃତାନ୍ତ ଅନ୍ତକାରୀ-କାଣ୍ଡ କୋଦଣ୍ଡ ଧାରୀ
ଚରା ଚର ସଂହର୍ତ୍ତ୍ର   କଳି କଳୁଷ ହାରି
ବାରୁଣୀବନ୍ତ ତାରୀ   ଦାରୁ ବ୍ରହ୍ମ ମୁରାରୀ
ମୋହମାୟା ଜଳଧି   ଜଳ୍ଦି କରିବା ପାରି ।।୨।।

ଆଜନ୍ମ କାଳରୁ ଆଶ
ଶ୍ରୀ ପଦେ ରଖିଛି ଦାସ
ତୁରିତେ ଦୁରିତ ନାଶ   ଶ୍ରୀବତ୍ସାଙ୍କ ପୀତବାସ
ପ୍ରପଞ୍ଚ ଜନ୍ତୁ ତ୍ରାଣ   ନେବ ପଞ୍ଚ ପରାଣ
ମାର ମରମ ବାଣ   ଶାର୍ଙ୍ଗି ଦେବଟି ଟାଣ
ଶରଣାଗତ ଜନେ   ଉଦ୍ଧର ନାରାୟଣ
କରୁଣାକର ପ୍ରଭୁ   କରହେ ପରିତ୍ରାଣ ।।୩।।

**

**

# ନାହିଁ କରିଦେଲେ

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ନାହିଁ କରିଦେଲେ କଥାତ ସରନ୍ତା
କାହିଁକି ପିଟନ୍ତି ମଥା,
କେତେ ଆଉ କହୁ, ଦାଦରା କାନ୍ଥରେ
ଲଥୀ ପରେ ଦେବ ଲଥା
ଜଗନ୍ନାଥ !
ବୋଲାଉଛ ଦୀନବନ୍ଧୁ
ମୋହର ବେଳକୁ ଶୁଖିଗଲ କହେ
ଅଥଳ କରୁଣା ସିନ୍ଧୁ ? ॥ ୧ ॥

ନୟନେ ଯମୁନା ଉଜାଣି ଖେଳୁଛି
ମନ ହେଲେ ଖେଳ ନାଥ
ସାରା ବରଷର ସବୁ ଋତୁ ଛାଡ଼ି
ଶ୍ରାବଣ ଧାରା ମୋ ସାଥୀ
ଜଗନ୍ନାଥ !
କେବେ ହେଲେ ମନୋରଥ
ପୁରିଲା ନାହିଁ ତ କଠୋର ପାଷାଣ
ପାଲଟିଲା ସ୍ବର ରଥ ॥ ୨ ॥

ଶକତ ନ ଥିଲେ ବଢାଇ ହାଥ ହେ
କିଏ ସେ ଭରସା ଆନ
କାହା କାନେ ଆଉ, ଶୁଣାଇବି ମୋର
ଜୀବନର ଦୁଃଖ ଗାନ
ଜଗନ୍ନାଥ !

ଶାରଣ ରକ୍ଷଣ ବାନା
ଉଡ଼ାଇବ ନାହିଁ ଏ ଥର ଜଗତେ
କବିଚନ୍ଦ୍ର କରେ ମନା ॥ ୩ ॥
**

**

## ଆଜରେ ନବ ସାଜରେ

### କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)"

ଆଜରେ ନବ ସାଜରେ ହେଉ ଜଗବନ୍ଧୁ ସଜରେ
ନନ୍ଦିଘୋଷ ରଥେ ବଜେ ତେଜ ତୁଳ ଶେଯରେ ॥ ୦ ॥

ପତିତପାବନ ବାନା
ଉଡ଼ଇ ଗଗନେ ଅନା
ବରଷେ ଆଷାଢ଼ ଧାର
ଛନ୍ଦି କି ନାହିଁ ପସର
ପୁଲକଭରେ
କୋଟି କୋଟି ନାରୀ ନର
କଣ୍ଠେ କଣ୍ଠେ ଶୁଭେ ସଙ୍ଗୀତ ମଙ୍ଗଳ
"ଦୁଃଖ ନାଶନ ଜଗନ୍ନାଥ ଭଜରେ"
(ପଦ୍ମ)
ବଳସ୍ଥ ରଥେ କଳା ଶିରୀମୁଖ
ନିରେଖି ହରେ ଜନମନ ଦୁଃଖ
ବନ୍ଦ ମାନସ ଦ୍ୱନ୍ଦ୍ୱ ପଦ ରଜରେ ।
**

**

# ଜଗାଦ୍ୱଅଁ

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ଜଗାଦ୍ୱଅଁ

ଦଗାଦ୍ୱଆପଣ ଗ୍ରୁଢ଼ି କହ•••ରେ ॥ ୦ ॥

ଅନ୍ଧ ଯେ ଆରତେ ଡାକ ମରେ ତୋତେ
ତୁ କି ରଖୁ ତାର ଅସ୍ତ ?
ଙ୍କେକ ଚଢ଼ବାହା କହ ଲକ୍ଷ୍ମୀନାହା
ଜୁଇଁ ତୋ ଆପଣା ଦାହ ॥ ୧ ॥

କୁଳବୁଡ଼ା ପଣ ଖଳ ଆଚରଣ
କାଳକ ତୋର କି ନୁହଁ ?
ବାଳୁତ କାଲରୁ କାଳ ତୁ ହେବାରୁ
ଗାଧାର ଝରୁଚ୍ଛ ଲୁହ ॥ ୨ ॥

ଦୁଷ୍ଟ୍ରକାର ପଣେ ପଷ୍ଟ ନୁହେଁ ମୁହିଁ
ତୁଷ୍ଟ ପଛେ ତୋର ସ୍ନେହ
କହେ କବି ଶଶୀ ଶୁଣ କଳା ଶଶୀ
ଦୂରୁ ପଛେ ଥରେ ଚାହିଁ ॥ ୩ ॥

**

**

# ତୁମେ ବୋଲାଅ ପରା

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ତୁମେ ବୋଲାଅ ପରା ପ୍ରଭୁ ପତିତପାବନ
ଯେ କୁହେ ହେ ହରି ତରି ମରି ଅକାରଣ ॥୦॥

କାହିଁ କହ ତାରନ୍ତ ମୋ ପରି ଅଜ୍ଞଜନ
ଲାଜମାନ କାହିଁ ସତେ କି ହେଲା ସପନ ॥୧॥

କାଳି ବୋଲି ତୁମେଁ ପରା
କାଳିଆ ଅପଘନ !
ଜାଣି କି ଥିଲ ଜଗତେ ମୋ ପରି ପତିତ
ଜନମ ଲଭିବ ଦିନେ ସାରିବ ମହତ
ସତ କହ ଭଗବାନ ॥ ୨ ॥

**

**

# ଲୋକେ କହୁଥାନ୍ତି

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ଲୋକେ କହୁଥାନ୍ତି ଦୟାନିଧି ତୁମେ
ମୋହର ପାଇଁକି ପଥର ହେଲ
ସବୁ ଦେଖ, ସବୁ ଶୁଣ ବୋଲି, ଶୁଣେ
ମୋହର ପାଇଁକି ସବୁ ମୁଦିଲ ? ॥୦॥

ନରଖ ଜନର ଅଛୁ ବୋଲି ଠାଇଁ
ତୁମ ପାଦତଳେ ଆସିଥିଲି ଧାଇଁ
ବୁଝିଲି ଦେବତା ମୋହ ପାଇଁ ଏକା
ଖାଲି ଏ ମିଛ ମନ୍ଦର
ସୁଅ ମୁହେଁ କେତେ ବାଲିବନ୍ଧ ଦେଇ
ସମ୍ଭାଳି ପାରିବ ବୋଲି ॥ ୧ ॥

ଲୁହା ଗୁଡ଼ ପରେ ଲୁହା ଘଣା ଦାଉ
ସନ୍ତେ ହେ ଠାକୁର, ସହୁ ନୋହେ ଆଉ
ଦେଲ ଯେବେ ଜୀବ, ଜୀବେ ଥାଉଁ ଥାଉଁ
କଲ ଖାଲି କଲବଲ
କବିଚନ୍ଦ୍ର ବୋଲେ ଦୀନବନ୍ଧୁ ନାମେ
କାଳି ଦିନା ବୋଲି ଦେଲ ॥ ୨ ॥

**

**

# ଜଗବନ୍ଧୁ ହେ

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ଜଗବନ୍ଧୁ ହେ, ବନ୍ଧୁ ଯଦୁ ନନ୍ଦନ
ପ୍ରଭୁପଣେ ବଡ଼ ପତାକା ଉଡ଼ୁଛୁ
ବୋଲଉଛ ପରା ଜଗ ବନ୍ଦନ ॥୧॥

ରସେ ମଜାଇଲ ଗୋପ ଗୁଆଳୀଙ୍କ
ଦଳିଥିଲ ପରା କାଳୀ ବଳଙ୍କ
ହେ, କରି ଭେଳିକ
ମିଠାଚାଖି ସାଗ ମୁଠା ଜିଦ୍ ଦେଲ
ରାଧା ମନ ହରି ବଂଶୀ ବଦନ ॥୨॥

ଦୁଃଖ ସହି ସାରା ଜନମ ବଢଲ,
ସୁଖ ବୋଲି କାର ହେଲ ସପନ
ହେ, ଧନ୍ୟ ଆପଣ
ଆଉକି ରଖିଛ ସାଇତି ମୋପାଇଁ
ଦେଖିବ ହରି ହେ ବଡ଼ିମା ଟାଣ ॥୩॥

ଟେକା ଟେକି କରି ଡାକ ଯେ ମାରିଲି
ଦିନରାତି ପାଦେ ମଥା କୁଟିଲି
ସେ ଭବୁ ତରିଲି
କେତେକୋଟି ତାରିଛ ମୋପରି ଅଧମ
ଦିନେ ଯେ ନ ଡାକେ ମଧୁସୂଦନ ॥୪॥

ବଡ଼ପଣେ ଯେତେ ଜଂଜାଳ ଛାଟିଲ
ମଥାପାତ ପ୍ରଭୁ ସବୁ ସହିଲ
ମୁଁ ଅଳି ନକଲି
ଲାଜନାହିଁ··· ବଳ କଷ୍ଟର ଆହୁରି
କାହିଁ ପରବତ କାହିଁ ପାପାଣ ॥୪॥

**

**

# ମନ୍ଦର ଗିରିଧର

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

ମନ୍ଦର ଗିରିଧର ବ୍ରଜସୁନ୍ଦର ହେ
ବାମ ନୀଳକନ୍ଦର ହେ,
ନନ୍ଦ-ନନ୍ଦନ ଆନନ୍ଦ କନ୍ଦର ହେ ॥୦॥

ଡରମେର ସିନା ମୁଁ ସାଆନ୍ତ ବୋଲୁଛୁ
ମନ କହୁନାହିଁ ସାଆନ୍ତ ମୋର,
ବଡ଼ପଣେ ବଡ଼ ପତାକା ବାନ୍ଧିଚ
ମୋ ଲାଗି କିଳାଲ ସିଂହଦୁଆର
ନିନ୍ଦାପଥର, ମଲି ଏଥର
ବୁଡ଼ିଯିବ ପ୍ରଭୁପଣ ଗୁତର
(ପଡ଼ି) ବଡ଼ ବୋଲି କେ କରିବ ଖାତର ହେ ॥୧॥

ଅଳି ଅଟ୍ଟଂକୁ ଡରିଗଲେ ଗୁଢ
ପ୍ରଭୁ ବୋଲାଇବ କେଉଁ ଗୁଣରେ ?
ବୁଡ଼ି ରହି ନିଜେ ଛପନ ଭୋଗରେ
ସେବକ ଜନରେ କରିଲ ପର ହେ

ହଦା ପଥର, ମଳ ଏଥର
ଛଡ଼ାଇ ନେଉଛ ବଡ଼ା ପତର
(ପଡ଼ି) ଫକାଶୀ ଉଜ୍ଜ୍ୱଳ ରଖ ଏଥର ହେଁ ।।୨।।

**

**

## କଳା ବଦନ ଛବ ଗୃହଁ

### କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

କଳା ବଦନ ଛବଗୃହିଁ ଆରତ ଜଣେ
କର ଯୋଡ଼ି କାକୁସ୍ଥରେ ଗୁହାରି ଭଣେ
କରମ ଯେବେ ଫଟା କାହିଁକି ସଟାବଟା
କହୁ ଦେଲେ ସରନ୍ତା ଆଉ ନଥାନ୍ତା ହଟା
କଏ ମଥା କୁଟନ୍ତା ଖାଉନ୍ଦ ପଣେ ।।୧।।

କାଳି ଲାଗିବ ବୋଲି ବଡ଼େ ଥାଆନ୍ତି ଡର
ଗ୍ଲାଏଁ ତ ମୁଖେ କାଳି ବୋଲଛ ବନମାଳୀ
(ଆଉ) କି ଡରନାହା କଲେ ହଜାରେ ପଣେ ।।୨।।

**

**

# ଅନାଥେ ଅନାଥ ଥରେ

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ଅନାଥେ ଅନାଥ ଥରେ ଆଉ ଅନାଥ-ଶରଣ
କି କହିବି ମନକଥା ଅନ୍ତର୍ଯ୍ୟାମୀ କି ନ ଜାଣ ? ॥ ୦ ॥

ତବ ବିନେ କିଏ ମୋର
ଘୁଞ୍ଚାଇବ ଖେଦଭାର,
ଅହରହ ଜଞ୍ଜାଳରେ ଭିଡ଼ି ଜୀବନ ବନ୍ଧନ ॥ ୧ ॥

ଆଶାରେ ଆଶାରେ ମର
ଗଲିଣି ହେ ନାଥ ସର
ଏ ଆଶା ପୂରିବ ଯେବେ ମେଲିବ ତୁମେ ନୟନ ॥ ୨ ॥

ଚରଣ ଧୂଳିର ତଳେ
ଥରେ ହେଲେ ଠାବ ଦେଲେ
ମେଣ୍ଟିଯିବ ସବୁ ତୃଷା ଅଭାଜନ ଅକଞ୍ଚନ ॥ ୩ ॥

**

**

# ପତିତପାବନ ନାମ

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

## ପତିତପାବନ ନାମ

କିଏ ବା କହିବ                ନ ତାରିବ ଯେବେ
ମୋ ଭଳି ପତିତ ଜନ ? ॥ ୦ ॥

ଜାଣି ତ ନ ଥିଲି                ମୋ ପରି ପତିତ
ଜନମ ଲଭିବ ଭବେ,
ଜାଣିଥିଲେ ସତେ                ପତିତପାବନ
ନାମ କି ଧରନ୍ତ କେବେ ?
ଅଳି କରୁନାହିଁ                ପାଶେ ଥିବାପାଇଁ
ସ୍ୱପ୍ନେ ନ ଡାକିବ ଯେବେ
ନାମରେ ତୁମର                କଳଙ୍କ ଲାଗିବ
ହସିବ ସିନା ଭୁବନ ॥ ୧ ॥

ଲାଜ ଡର ଥିଲେ                ଯେବେ ଦୟାନିଧି
ପତିତ ଜନର ପାଶ
କେବେ ନେବ ଅବା                କେତେ କାଳ ପରେ
ଏ ପରାଣେ ଦିଅ ଆଶ
ଅତୀତ ପାଶୋରି                ପତିତ ଆସିଛି
ଗଢ଼ ତ ନାହିଁ ଖାବେଶ
ପ୍ରଭୁ ଦାନେ ନୀର                ଧାର ସାଇତିଛି
ଜରେଖ ଦୁଇ ନୟନ ॥ ୨ ॥

**

**

# ନୀଳମାଧବ

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ନୀଳ ମାଧବ
ତୁମ୍ଭେ ପରା ଜଗତ ନାଥ
ମୋ କଥା ଶୁଣି ଶ୍ରୀମୁଖେ ଲାଜେ ନ ପୋତ ॥୦॥

ଜଗତେ କହନ୍ତି ତୁମେ ଦୟା ସାଗର
ଅନୁଭବେ ବାରି ନାହିଁ ଦିନେ ମାତର
ଫଳୁଛି ବିପରୀତ
ଭଲପେ ଦିଏ ଚିତ୍ତ
କାଟି ତ ନେଇଛ ତା' ବାଢ଼ିଲା ହାତ ॥୧॥

ମନେ ପଡ଼ୁଛି କି ନାହିଁ ଗୋପରେ ଥରେ
ରାଧାକୁ ବସାଇଥିଲ ବ୍ରଜ ପଥରେ
ତୁମ ପ୍ରେମରେ ଭୁଲି
ମଥ ଢାଳିଲା ବୋଲି
ଝୁରିମଲା ସେ ସିନା ନୁହେଁ କି ସତ ॥୨॥

କାହାର କି କରିଛ ହେ ବିନା ସେବାରେ
କିଏ ଅବା କିଣିଥିବ ଦେବା ନେବାରେ
ଦିନେ ଯେ ଡାକି ନାହିଁ
ତାରିଛ ତାକୁ କାହିଁ
କହିଲ ରଖି ନଜ ହୃଦରେ ହାତ ॥୩॥

**

**

# ଚକା ନୟନକୁ ଗୁହାରି

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

ଚକା ନୟନକୁ ଗୁହାରି ଗରିବ ଜଣେ
ଥକ୍କା ହୋଇ ଡକାପାରି ଗୁହାରି ଭଣେ ॥୦॥

ଦୀନବନ୍ଧୁ ନାମ ହରି ବହିଛ ମିଛେ
ମୋ ପରି ଗରିବ ପରି ଧାଇଁଛ ପଛେ
ମୋତେ ଯେବେ ହେ ହରି
ଦେବଟି ପାରିକରି
ଚରଣ ତଳେଦେବ
ଏ ପାପୀ ଠାବହେବ
ଜଗବନ୍ଧୁ ହେ··· ଜଗବନ୍ଧୁ ହେ
ଗଣିବି ତେବେ ମୁଁ ସିନା ଖାଉନ୍ଦ ପଣେ ॥୧॥

ମୋ ପରି ପତିତ ଜଣେ ଅଛୁ ଜଗତେ
ଜାଣି ନଥିଲ ବୋଲି ମୁଁ ମଣୁଛୁ ଚତ୍ତେ
ଲେଖିଛ ଯାହା ଅରେ
ଏ ମୋର ଫଟା ଖପଲେ
ଆଉ କାଟିବା ପାଇଁ
ଶକତି ଯେବେ ନାହିଁ
ଜଗବନ୍ଧୁ ହେ···ଜଗବନ୍ଧୁ ହେ
ଚକ୍ରଧର ବୋଲି ମିଛେ ଜଗତ ଭଣେ ॥୨॥

**

**

## ନବୀନ ନୀଳ-ଘନ

### କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ନବୀନ ନୀଳଘନ, ନୀଳମାଧବ ଛଇ ହେ
ଲୁଚିଯିବ ରବି ଛବିକି ଗ୍ରହି ॥ ୦ ॥

ନୀଳ କନ୍ଦରେ ବିଜୟ ମହିମା
ପତିତପାବନ ବାନା ଉଡ଼ାଇ,
ପତିତ ଜନର ଗତି ତ ସତତ
ମହତ ରଖିତ ମୋର ଗୋସାଇଁ
ମୁଁ ଚରଣ ଛୁଇଁ ସତ ଭଣଇ
ମୋ ସରି ପତିତ ଜଗତେ ନାହିଁ
(କହ) ତାରିବ କି ଥିବ ମୁଖ ଲୁଚାଇ ॥ ୧ ॥

ଭ୍ରମରେ ହେଲେ ମୁଁ ନାମ ଜପି ନାହିଁ
ଆଣ୍ଠୁ ଶୁଣ ମୋର ଜଗତ ସାଇଁ
ଲୋକେ କହୁଛନ୍ତି ପତିତ-ପାବନ
ପରଖି ଦେଖିବ ସତ କି ନାହିଁ
ମୁଁ ଡରିବି ନାହିଁ ଦେଖିବା ପାଇଁ
ପାପୀ ପଣେ ଅଛୁ ବାନା ଉଡ଼ାଇ
ରଖିଅଛୁ କାହିଁ ଠାବ ମୋ ପାଇଁ ॥ ୨ ॥

**

**

# ଜଗବନ୍ଧୁ ଭଲ୍ଲ ନାଟୁଆ

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ଜଗବନ୍ଧୁ ଭଲ୍ଲ ନାଟୁଆ,
ଭଗ୍ନ ଦଶଆରେ ଲଗାଏ ନୂଆଁ ॥ ୦ ॥

ପୋକା କନ୍ଦ ଅଚାଞ୍ଚା ସାରୁ
ସୁଖେ ଖାଏ ସେ ଦଅଁ ଦାରୁ

ଭଲ୍ଲ କାରିଗର ବାହାଦୁରୀ ତାର
ଗୁଡ଼ ଦେଖାନାହିଁ ବନାଏଁ ମୁଆଁ ॥ ୧ ॥

ରଣ୍ଡୀଠାରୁ ଖଣ୍ଡିକ ଯାଏଁ
ଚଟା କଟା ଏଠି ସଭିଏଁ

ମଶା, ମୂଷା, ମାଛା, ମାହାସ୍ତି ମହନ୍ତ
ମାଙ୍କଡ଼ ପୋଷାଏ ଦେଉଳ ଦୁଆ ॥ ୨ ॥

**

***

# ଦୀନବନ୍ଧୁ ହେ

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

ଦୀନବନ୍ଧୁ ହେ, ମନ୍ତ୍ର କହିବ ମୋତେ
ଛୁଇଁ ଚକାଡୋଳା ଆପଣାର ହାତେ ॥୦॥

ମୋ କପଟେ ମୁଁ ତ ଡାକଇଁ ତୁମ୍ଭଙ୍କୁ
ଆହାକଳ ହେବ ବୋଲି ମୋ ସାହା
ତୁମ ବିପଦରେ, କିଏ ସେ ରଖିବ
କାହା ନାମ ଧରି ଡକିବା ହତେ ? ॥୧॥

'ବାପ ମୋର କିଏ' ପଚାରିଲେ ମୁଁ ତ
କହିବି ନୁହେଁ ମୁଁ ଅଣବାବୁଆ,
ଜଗନ୍ନାଥ ମୋର ବାପ ବସିଛନ୍ତି
ତୁମ ବାପ କିଏ କହ ଜଗତେ ॥୨॥

ଅଣବାବୁ ବୋଲି ଲୋକେ ପରା ମୁଖେ
କାଳି ବୋଲିଅଛ ଆପେ ଗୋବିନ୍ଦ
ଛନ୍ଦ ଗୁଡ଼ି ଆଜ ବତାଅ ବ୍ରତ ହେ,
ତୁମ କୁଳ ଗୋଟି ଯିବ ପରତେ ॥୩॥

**

**

# ଜୟ ଜଗନ୍ନାଥ ପ୍ରଭୁ

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

( ବଂଶ ଶତାବ୍ଦୀ )

ଜୟ ଜଗନ୍ନାଥ ପ୍ରଭୁ          ନମିଲୁ ଆଉ ସବୁ
ତୋ' କଥା ତୁ ଜାଣୁ ମହିମା !
ଅନ୍ଧରେ ହେଉ ସାହା          ତୁ ପୁଣି ଚଉବାହା
ବୁଦ୍ଧିରେ ଅଜଣା ତୋ ସୀମା
ହେ ମହାବାହୁ
ତୁ ଏକା ତୋହର ଉପମା,
ଘଞ୍ଚ ଘଞ୍ଚକେ ଆନ          ମନ ବଚନ ଜ୍ଞାନ
ଗୋଚର ନୁହେଁ ତୋ ଗରିମା
ହେ ମହାବାହୁ ॥୧॥

ଦେଇ ଦିଆଇ ହର          ରଖି ମାରୁ ତୁ ହର !
ଏ ଖେଳ ତୋହର ଭିଆଣ
ବଡ ପଥର ଘରେ          ଖଣ୍ଡ ଦାରୁ ଭିତରେ
ବୋଲାଇ ପତିତପାବନ
ହେ ମହାବାହୁ
ପଦତଳେ ଏ ମାଥ ଥାଉ;
ଧନ ରତନ ମଣି          ନ ମାଗେ ଚିନ୍ତାମଣି
ତୋ ନାମ ଧରି ଜୀବ ଯାଉ
ହେ ମହାବାହୁ ॥୨॥

**

**

# ଦୟା ସାଗର

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

ଦୟା ସାଗର ବୋଲଇ କଲ ପାତର ଅନ୍ତର
କାହା ଭାଗେ ଖଣ୍ଡ ଖିଆ କା'ରେ ଅଇଁଠା ପତର ॥ ୦॥

ଦିନବନ୍ଧୁ ଡାକ ଡାକ ତଣ୍ଟି ମୋ ଗଲାଣି ଶୁଖି
ପାହୁଣ୍ଡେ ତ ଚଳିବାକୁ ଆଉ ନଚଳେ ଗାତର ॥୧॥

କେ ଅବା ଦେଇଛୁ କସ-ମୁଁ ହେଲି ଭୁମର ବଷ
ଦୁଃଖ ପରେ ଦୁଃଖ ଦାଉ ସହିବ ମୁଁ କି ପାତର ॥୨॥

ଫଟା କରମକୁ ମୋର ଯୋଡ଼ିବାକୁ ନାହିଁ ବଳ
ଦାତାପଣେ ଭନ୍ନପୂରେ କାହିଁକି ଏଡ଼େ ଗୃତର ॥୩॥

**

**

# ଚକାଡୋଳା

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

ଚକାଡୋଳା ! ଚକାଡୋଳା
ଭଲ ଲଗାଇଛ ବସି ମେଳା ॥ ୦ ॥

ପଥର ଦେଉଳେ ଗଣ୍ଡି କାଠ ଦିଅଁ
ହାତ ଗୋଡ଼ କାନ ନାହିଁ
ପଲକ ନପଡ଼େ ଚକା ଚକା ଆଖି
ମୁହଁ ଯାକ କଳା ବୋଲା ॥ ୧ ॥

ଛେଷ୍ଟ କଷ୍ଟ ଖାଇ ପହଣ୍ଡି କୁ ବଳେ
ପେଟରେ ଦଉଡ଼ି ବନ୍ଧା
ନଜେ ବୁଝି ଏବେ ଲୋକଙ୍କୁ ସନ୍ତୋଇ
କ ସୁଖ ସେ ଠେଲ ପେଲ ॥ ୨ ॥

ରତନ ବେଦୀରେ, ଛ'ପନ ଭୋଗରେ
ଛତିଶା ନଯୋଗ ଖଟେ
ଖରା ବରଷାରେ ମଉଜ ସମ୍ଭାଳ
(ବଡ଼) ଦେଉଳ ପଡ଼ିଛି ମେଳ ॥ ୩ ॥

**

**

# ଜଗନ୍ନାଥ

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

ଜଗନ୍ନାଥ ! ଧରିବ ନାହିଁ ମୋ ଦୋଷ
ଯେତେ ଦେଉଥିବ ସେତେ ମାଗୁଥିବ
କାହିଁରେ ନୁହେଁ ମୁଁ ତୋଷ ॥୧॥

ଦିଆ ଦିଅଁ ବୋଲି ନିଆ କର ମେଲି
ଦିଆ ସିନା କରେ ଅଂଶ
ମୁଁ ନିକି ନୋହିଲେ ମୁନିଙ୍କି ହେଲେ ନି
ମାଗନ୍ତି ହେଲେ ବି ବିଷ ॥୨॥

ଯେ ପିତା କୋଳରେ ଜନମ ମୋହର
ନ ଜାଣିବି ପୀତବାସ
ଯେ କରେ ମୁଁ କରେ ପ୍ରଣତି ପସ୍ତୁରେ
ପାତିବି ଇତର ପାଶ ? ॥୩॥

ଧୋଇତ ଦେଇଛୁ ଲୋଡ଼ିବା ଆଗରୁ
ନିଠୁର ବୋଲିବ କିସ ?
ଶରଣ ତେବେକେ ମାଗେ କବିଶଶୀ
ଏତେକେ ମାଗୁଣି ଶେଷ ॥୪॥

**

**

## ବଗ୍ଭରୁଛି ମୁହିଁ ମନେ

### କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ବଗ୍ଭରୁଛି ମୁହିଁ ମନେ
ଧନ ମନ ସିନା ଦୀନ ବନ୍ଧୁ ବୋଲି
କହନ୍ତି ଜଗତ ଜନେ ॥ ୦ ॥

ନ ଦେଇ, ନ ପାଇ, କହୁଛି କହ୍ନାଇ
କାହ୍ନାଠାରୁ ଭଲ କହ
ଅଜାଡ଼ି ଦେଇଛ ବଳେ ବଳେ ସତେ
କାହା ଶିରେ ଅନୁଗ୍ରହ
ଦେଖିନ ନାହିଁ ସପନେ ॥ ୧ ॥

ଜଗତର ସବୁ ସୁଖ ପାଶୋର ଯେ
ତୁମକୁ ପାଇଲା ସୁଖ,
ତାହାର କରମ ଫାଟିଲା ଦେଖୁଛି
ଭୋଗି ସେ ଯେତେକ ଦୁଃଖ
ନଷ୍ଟ ପରମାଦ ଗଣେ ॥ ୨ ॥

ଜନମ କାଳରୁ ଜଞ୍ଜାଳିଆ ବୋଲି
ଜାଣିକି ନଥିଲି ମୋତେ
ଅନ୍ତର ନବୁଝି ଯେବେ ଅନ୍ତର୍ଯ୍ୟାମୀ
ବୋଲାଇ ହେଉଛ କେତେ
କବିଚନ୍ଦ୍ର ଏତେ ଭଣେ ॥ ୩ ॥

**

**

# ମୁଁ ଯେବେ ତୁମକୁ ବାପ ନ ବୋଲିବି

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

ମୁଁ ଯେବେ ତୁମକୁ ବାପ ନ ବୋଲିବି
ତୁମେ ବାପ ହେବ କାହୁଁ ?
'ଜଗତର ପିତା' ଜନେ ବୋଲିବାର
ଟେକ ରହିବକି ଆଉ ? ॥ ୦ ॥

ରୁଷିବାର ମୋର ଅଛି ଅଧିକାର
ବାହା ପିଟି ଏହା କହେଁ ବାର ବାର
ଜଞ୍ଜାଳିଆ କରି ଜନମ ଦେଲତ
କିଏ ସହିବ ମୋ ଦାଉ
ପାଦେ ଠେଲିଦିଅ ଲୋକହସା ହୁଅ
ତୁମ ପିତାପଣ ଯାଉ ॥ ୧ ॥

ଆଗରୁ କାହିଁକି ବିଚ୍ଚର ନକଲ
ବାପା ବୋଲାଇବା ମଣିଲକି ଗେଲ ?
ତୁମ କୁଳଦୀପ ମଳିନ ହୋଇବ
ତୁମେ ଯେବେ ଥାଉଁ ଥାଉଁ
ଏଥୁଁ ବଳି ଲାଜ ଅଛି କିସ ହେଜ
ବୋଲଉଛି ମହାବାହୁ ॥ ୨ ॥

ବାପ ଯା'ର ରଜା ଦସ୍ତାର ଭଣ୍ଡାର
ପୁଅ ନ ପାଇବ ଆଶିଷ ତାହାର
ରୁଷିବ ଏଥର ହେଉ ଯା' ହେବାର
ସହିବାର ଯେ'ବା ସହୁ
କବି ଶଶୀ କୁହେ ବେଳ ଥାଉଁ ପଦେ
ଠାବ ଦିଅ ଟେକ ରହୁ··· ॥ ୩ ॥

**

**

# ବଡ଼ ଠାକୁର

## ଜଗନ୍ନାଥ ଷଡ଼ଙ୍ଗୀ

(ବିଂଶ ଶତାବ୍ଦୀ)

ବଡ଼ ଠାକୁର ହେ ବଡ଼ ବୋଲାଇ
ସାନ କଥା ଯେବେ ଶୁଣିବ ନାହିଁ
ବଡ଼ ବଡ଼ ଯେତେ ବଡ଼େଇ କରିବେ
ସାନଙ୍କର ଠାବ ରହିବ କାହିଁ ?
କେମନ୍ତେ ବୋଲାଇବ ଜଗତ ସାଇଁ ? ॥ ୦ ॥

ଦଡ଼ ମାଗୁଥିବେ ଧନ ମାନ ଯଶ
ଲୋଡ଼ା ନାହିଁ ତାହା ସାନଙ୍କ ପାଇଁ
ଭକତି ବିଶ୍ୱାସ ମାଣିକ ମିଳିଲେ
ଧନ୍ୟ ହେବେ ତୁମ ମହିମା ଗାଇ ॥ ୧ ॥

ଦୁଃଖ ଦିଅ ଯେତେ ନଥିବ ପରତେ
ଶୋକେ କେବେ ଭାଙ୍ଗି ପଡ଼ିବେ ନାହିଁ
ସହିବା ଶକତି ଦେଇଥିଲେ ତୁମ୍ଭେ
ପୁଲକିତ ହେବେ କଷଣ ସହି ॥ ୨ ॥

କାମନା ବାସନା ହରି ନିଅ ସବୁ
ନ ଦିଅ ମମତା-ଜଳେ ବୁଡ଼ାଇ
ଗର୍ବ ଅହଂକାର କାତର ଗୁମର-
ପଣିଆ ମନରୁ ନିଅ ଛଡ଼ାଇ ॥ ୩ ॥

ତେବେ ଜଗନ୍ନାଥ          ନାମ ହେବ ସାର୍ଥ
ହିଂସା ରାଗ ଦ୍ୱେଷ ଶୁଣିବ କାହିଁ
ପୁଲକିତ ହେବ          ଏ ମର ଜଗତ
ତୁମ ଯଶରାଶି ମହିମା ଗାଇ ॥ ୪ ॥

**

**

## ଜଗତର ନାଥ

**ଉଦୟନାଥ ଷଡ଼ଙ୍ଗୀ**

( ବିଂଶ ଶତାବ୍ଦୀ )

ଜଗତର ନାଥ ଜଗତର ନାଥ
ପଡ଼ିଅଛୁ ପରା ଦୂର
ଜଗତରେ ତେବେ ଲାଗିଚ କମାଇଁ
ନିତ ଧନ ଦୁଆ ଫେର, ହେ ଦେବତା
ନାଥ ହୋଇ ତୁମେ ଦେବ
ଅନାଥ ସାଗରେ ଜଗତ ବୁଡ଼ିଲେ
ତୁମରି କି ଯଶ ହେବ ॥ ୧ ॥

ବଡ଼ ମାନଙ୍କର ବଡ ଲୋଭ ଏଠି
ସାନେ ମରୁଛନ୍ତି ଝୁରି
ଅକାଣ୍ଡିଆ କୁଣ୍ଡା ନମିଳେ କାହାକୁ
କିଏ ଖାଉଅଛୁ ପୁରି, ହେ ଦେବତା
କିଏ ହସେ କରି କରି
କାନ୍ଦି କାନ୍ଦି କାର ଦିନ ସରୁନାହିଁ
ଡାକ ଡାକ ହୁତାଶିରୀ ॥ ୨ ॥

ଅଲସୁଆ ଯେତେ ପରଚୋଟି ଚପା
ସେଇ ଯାଉଛନ୍ତି ଫୁଲି
କ୍ଷୀଣୁ କ୍ଷୀଣତର ହେଉଛୁ ବାପୁଡ଼ା
ମୂଲିଆ ଦୁନିଆ ଭୁଲି, ହେ ଦେବତା
ତେଲିଆ ମୁଣ୍ଡରେ ତେଲ
ଧାନ ଖାନ ଯେତେ ଲକ୍ଷ୍ମୀ ଅଛନ୍ତି
ଖୁନ୍ଦିଛନ୍ତି ବଲ ବଲ ॥ ୩ ॥

ଅନ୍ୟାୟ ଅନୀତି ବୋଲି କିଛି ନାହିଁ
ନାହିଁ ତ ସ୍ନେହ ମମତା
ପତଙ୍ଗ ପରସ୍ତେ ଧାଆନ୍ତି ସକଳେ
ପାଇବା ପାଇଁ କ୍ଷମତା, ହେ ଦେବତା
କପଟେ ଦୁନିଆ ଗିଳେ
ଗୁରୁ ଗଉରବ ସବୁ ଲଗିଲଣି
ତୁମରି ଶାସନ କାଳେ ॥ ୪ ॥

ତୁମ ରାଜୁତିରେ ଡର ନାହିଁ କାର
ନୁହନ୍ତି କେହି ଗୁଣିଆଁ
ସେ ଯୁଗ ଏ ଯୁଗ ଫରକ ହେଲାଣି
ବୁଡ଼ିବ ସିନା ଦୁନିଆ, ହେ ଦେବତା
ପ୍ରଳୟ ପୟୋଧି ଜଳେ
ବୁଡ଼ାଇ ଦିଅ ଏ ବ୍ରହ୍ମାଣ୍ଡ ଖଣ୍ଡକୁ
ଯାଉ ଚାଲି ରସାତଳେ ॥ ୫ ॥

ଲୁଚିବ ଜଗତ, ଜଗତର ନାଥ
ନାମ ସବୁ ଧନ ପାଇଁ
ନ ଥିବ କେ ଏଥି ଝୁରି ମରିବାକୁ
ହେବା ପାଇଁ ଖାଇଁ ପାଇଁ, ହେ ଦେବତା
ହୋଇ ପୁଣି ଅବତାର
ବରାହ ଦନ୍ତରେ ଟେକିବ ଦୁନିଆଁ
ଦେଇ ନୂଆ କଳେବର ॥ ୬ ॥

**

**

# ଯେତେବେଳେ ଯେଉଁ ଦଗେ

**ଉଦୟନାଥ ଷଡ଼ଙ୍ଗୀ**

(ବଂଶ ଶତାବ୍ଦୀ)

ଯେତେ ବେଳେ ଯେଉଁ ଦଗେ ଦଏ ମୁଁ ଅନାଇ
ଦେଖୁଅଛୁ ତୁମବନା ଆଉ କେହ୍ନ ନାହିଁ
ବଶ୍ୱଜୀବନ ହେ

ଗଗନ ପବନ ଗାଏ ତୁମର ମହମା
ନ ପାରେ କଳ ମୁଁ ତୁମ ଆଦଅନ୍ତ ସୀମା
ବଶ୍ୱଜୀବନ ହେ ।

ସାଗରେ ଭୂଧରେ ଶୁଭେ ତୁମର ସଙ୍ଗୀତ
ତୁମର ଉଆଣ ଦେବ, ଖରା ବର୍ଷା ଶୀତ
ବଶ୍ୱଜୀବନ ହେ ।

ଫୁଲଫଳ ବୃକ୍ଷଲତା କୀଟରୁ ପତଙ୍ଗ
ତୁମର କରଣି ପ୍ରଭୁ, ତୁମହାତ ରଙ୍ଗ
ବଶ୍ୱ ଜୀବନ ହେ ।

ରବଶଶି ଗ୍ରହତାରା ତୁମର ଆଦେଶେ
ଅଭନେତା ସାଜଛନ୍ତ ନବନବ ବେଶେ
ବଶ୍ୱଜୀବନ ହେ ।

ଅଇର ସୋଦର ସଖା ପୁଣି ତାତ ମାତ
ମରୁଠାରେ ବରାଜତ ତୁମେ ଜଗନ୍ନାଥ
ବଶ୍ୱଜୀବନ ହେ ।

**

**

# ତୁମ ସମାନ ନାଥ

## ଉଦୟନାଥ ଷଡ଼ଙ୍ଗୀ

( ବିଂଶ ଶତାବ୍ଦୀ )

ତୁମ ସମାନ ନାଥ          ଥାଉଁ ହେ ଜଗନ୍ନାଥ
ଅନାଥ ଆଜ ମୁହିଁ ହୀନ
ଯେ ପଦ-ସରୋରୁହ          ଜପୁଚ ଅହରହ
ଧ୍ୟାନେ କୋଟେ ଋଷି ଜନ, ହେ ଜଗନ୍ନାଥ
ତଥାପି ଦୟା ଛଳେ ନାହିଁ
ପଥକୁ ତୁମେ ଚାହିଁ ଚାହିଁ
ଝରଇ ନେତ୍ର ଲୁହ          ଦୟାନିଧି ହେ କୁହ
ନିଠୁର ଏତେ କାହିଁ ପାଇଁ, ହେ ଜଗନ୍ନାଥ ॥ ୧ ॥

ଛତିଶା ଭୋଗ ହୁଲ          ବଡ଼ ଦାଣ୍ଡରେ ବୁଲ
ଆନନ୍ଦ ହେଉ ଅଛ ଜନେ
ଏ ପଦଦାସୀ ଶୁଭ          ଏତେ ତା' ପାପଭର
ସ୍ୱା ପାଇଁ ଦୟା ନାହିଁ ମନେ ହେ, ଚକାଡୋଳା,
ଦେଖୁଛ ଦଣ ଦଣ ପରା,
ମୋ ଚିନ୍ତା ପଡ଼େ ନ କ ଧରା ?
ଜନ୍ମ ଜନ୍ମ ଅନ୍ତରେ          ଡାକୁଚ ଏକାନ୍ତରେ
ଆକୁଳେ ହୋଇ, ପଥହରା ହେ ॥ ୨ ॥

ଦ୍ୱାପର ଯୁଗେ ଗୋପୀ          ଜନମ ନାମ ଜପି
ଯମୁନା ତୀରେ କଲ ଧ୍ୟାନ
ସକଳ କଲ ଦୋଷ          ମୋ ଠାରେ କାହିଁ ରୋଷ
ହେଲି ମୁଁ ଏତେ ହୀନମାନ ହେ, ଦୟାନିଧି

ମୋ ପୂଜା ଫୁଲ ହେଲା ବାସି
ହସିଲେ କେତେ ବ୍ରଜବାସୀ
କରାଇ ଲୋକହସା   କହ ହେ ମହାଯଶା
କି ସୁଖ ମୋର ଆଶା ନାସି ହେ ॥ ୩ ॥

ବ୍ରହ୍ମାଣ୍ଡ ମାଳ ମାଳ   ଲୋମ କୂପେ ଯାହାର
ଅନନ୍ତ କାନ୍ତୁ କରେ ଖେଳା,
ନାହିଁ ଯା ଆଦ୍ୟ ଅନ୍ତ   ଚରା ଚର ସାମନ୍ତ
ଆଉଁ ମୋ ଦଶା ହୀନ ହେଲା, ହେ ମହାପ୍ରଭୁ
ଯେଉଁ ହାତକୁ ଦଏ ଗୁହିଁ
ତୁମର ହାତ ଯଶ ତହିଁ
କେବଳ ଜାଣେ ମୁହିଁ   ଏ ଦୀନହୀନ ପାଇଁ
କରୁଣା ଢଳେ ହେ ନାହିଁ ହେ ॥ ୪ ॥

ଚତୁର୍ଦ୍ଦଶ ଭୁବନ   ତୁମର ଉପବନ
ସାଗର ତୁମ ସ୍ୱେଦ ବାଶ
ଅପାର ତେଜ ରାଶି   କଣିକା ରବି ଶଶୀ
ପାଇ ହୋଇଲେ ବ୍ୟୋମବାସୀ, ହେ ବିଶ୍ୱବ୍ୟାପୀ
ତୁମ ସମାନ ହେବାପାଇଁ
ଜଗତେ କାକୁ ଦେଖୁନାହିଁ,
ତୁମେ ତ ଏକା ତୁମେ   ଗଗନ ପାଦ ଚୁମ୍ବେ
ବୁଝିବା ଶକ୍ତି ମୋର ନାହିଁ, ହେ ବିଶ୍ୱବ୍ୟାପୀ ॥ ୫ ॥

**

**

# ଦାରୁ ଦେବତା

## ରାଧାମୋହନ ଗଡନାୟକ

(ବିଂଶ ଶତାବ୍ଦୀ)

—୧—

"ଦାରୁ ଦେବତା ମୁଁ ଲାଗିଲିଣି ଆସି
ତୁମ ଏ ବାଲି ମୁହାଣରେ
ରାଇଜର ରାଜା ଜାଣି ପାରୁନାହିଁ
କାଭୁତ ତୁମ ପଗ୍ରାଣରେ ?
ନୀଳ ଜଳଧିର ଜଳେ ଭାସି ଭାସି
ଦୂର ଦ୍ୱାରକାରୁ ଅଛୁ ମୁହିଁ ଆସି,
ରହିବି ଏ ବେଳା ବିତାନରେ,
ଦାରୁ ଦେବତା ମୁଁ ଲାଗିଲିଣି ଆସି
ତୁମ ଏ ବାଲି ମୁହାଣରେ ।"

—୨—

ଦାଗ୍ ବଳୟରୁ ଉଠୁ ଉଠୁ ରବି
ଦେଖିଗଲା ଦିବ୍ୟ ଝଲକ,
ଆକାଶର ତୀରେ ନୀରଧିର ନୀରେ
ଡାକିଲା ପ୍ରାଣର ପୁଲକ ।
ଭଗବାନ ତୁମ୍ଭେ ଜଗତ ଠାକୁର
ହୃଦୟର ତମ କରି ଦେଇ ଦୂର
ଆଲୋକିତ କର ଜୀବନ,
ତୁମ ଦାନ ନେଇ ନିତି ନିତି ମୁହିଁ
ଆଲୋକିତ କରେ ଭୁବନ ।"

—୩—

ସାଗର କୋଳରୁ          ବାହାରି ସମୀର
ବିତରିଲା ନବ ସଉରଭ,
ମର୍ତ୍ତର କେଉଁ          କୁସୁମର ନୁହେଁ,
ସରଗର ମହା ଗଉରବ ।
ନାରିକେଳ ତରୁ ଶାଖା ବୀଥିପରେ
ଖେଳିଲା, ଡଳିଲା ଅତୁଳ ଆଦରେ,
ଝାଉଁବନେ ଯାଇ ତରତର
ମର ମର ଗୋଳ ଉଚ୍ଛ୍ୱାସ ଭରି
ଛନ୍ଦ ସୃଜିଲା ମରମର ।

—୪—

ରାଇଜର ରାଜା          ଡକାଇଲେ ପାଶେ
ପାତ୍ର ମନ୍ତ୍ରୀ କଟୁଆଳ
ଫିଟାଇ କହିଲେ          ସପନର ବାଣୀ
ସପନର ଶୁଭ ସମାଚାର ।
କେତେ ଆଡ଼ୁ କଲେ କେତେ ଆଲୋଚନା,
କେଉଁପରି ହେବ ଦଅଁ ଆରାଧନା,
କେଉଁ ପରି ଯିବ ପଟୁଆର,
କେଉଁ ପରି ଦାରୁ ଦଅଁ ଅଣା ହେବେ
ବହୁତ କଥାର ସମାହାର ।

—୫—

ବାଜିଲା ଶଙ୍ଖ,          ବାଜିଲା ମହୁରି
ବାଜିଲା ଦାମାମା, ଭେରି, ତୁରୀ
କଂପି ଉଠିଲା          ଆକାଶ ବତାସ
କଂପି ଉଠିଲା ସାରା ପୁରୀ ।
ଜାହିଁ ଠିଆ ହେଲା ଚନ୍ଦ ତୋରଣ
କଳସ ଶୋହିଲା, ଉଡ଼ିଲା କେତନ,
ଉଚ୍ଛୁଳିଲା ଶୁଭ ହୁଲ ହୁଳି,
ଚାଲିଲେ ଜନତା ଚାଲିଲେ ରାଜନ
ଚରଣେ ଚଂଚି ପଥଧୂଳି ।

—୬—

ଉଦ୍‌ବେଳ ସେଇ          ପଥର ପ୍ରବାହ
ମିଳିଲା ବାଙ୍କି ମୁହାଣରେ
ଦେଖିଲା, ବଙ୍କେର          ବରୁଣ ସ୍ୱଜନ
ନୂତନ ସେ ଏକ ଭିଆଣରେ,
ତପ୍ତ ହୃଦସ୍ଥ ଲହରୀର କରେ
ଦାରୁ ଦେବତାରେ ବନ୍ଧୁଚ ଆଦରେ,
ଢାଳି ଦେଉ ଅଛୁ ବାର ବାର,
ଶୁଭ୍ର ଫେନର ଫୁଲ ଅଂଜଳି
ଓଂକାର ବାଣୀ ସସ୍ୱର ।

—୭—

ବ୍ୟଗ୍ର ସ୍ୱଜନ,          ସ୍ୱଜନଜନ, ଜନ
ଦାରୁ ଦେବତାର ଦରଶନେ
ତରଳ ହୃଦସ୍ଥ          ଢାଳି ଦେଲେ ତହୁଁ
ସରଗର ସ୍ତବ ପରଶନେ
"ଜଗତର ନାଥ ପରମ ଠାକୁର
ତବ ଆଶେ ଆଜ ଆତ୍ମା ଆକୁଳ,
ସ୍ୱାଗତ ହେ ମହା ମହାସ୍ଥାନ ।
ଉଠି ଆସ ପ୍ରଭୁ ଉଠି ଆସ ପ୍ରଭୁ
ଘେନ ଏ ଆକୁଳ ଆହ୍ୱାନ ।"

—୮—

ଜୟ ଜୟ ଜୟ          ସ୍ୱର କଲ୍ଲୋଳ
ସୃଜି ଦେଲା କଳ କୋଳାହଳ,
କଂପି ଉଠିଲା          ସାଗର ପୁଳିନ,
କଂପି ଉଠିଲା ନଭ ତଳ ।
ବିପ୍ର ପୁରୋହିଆ ବ୍ୟଗ୍ର ପାଣିରେ
ଦାରୁ ଦେବତାରେ ଧଇଲେ ଅଧୀରେ
ଛୁହଁ ଛୁହଁ ହେଲେ ବଞ୍ଚିତ
ଟଂକଲେ ନାହିଁ ଦାରୁ ବ୍ରହ୍ମ ସେ
ଟଂକଲେ ନାହିଁ କଞ୍ଚିତ ।

—୯—

"ସ୍ୱାଗତ ହେ ପ୍ରଭୁ          ଜଗତର ନାଥ
କି ଦେଖିଲ ମୋର ପରମାଦ ?
ଅଜ୍ଞ ମୁଁ ହେଲେ          ଜାଣି ପାରୁ ନାହିଁ
କି ଦେଖିଲ ମୋର ଅପରାଧ ?"
ମିନତି ଜଣାଇ ସଜଳ କଥାରେ
ତୋଳିଲେ ପୁଣି ସେ ଦାରୁ ଦେବତାରେ
ବୁଝି ହେଲା ନାହିଁ ମର୍ମ,
ତଥାପି ଅଚଳ, ଅଟଳ ରହିଲେ
ମହାନ ସେ ଦାରୁ ବ୍ରହ୍ମ ।

—୧୦—

ଶୂନ୍ୟର ବାଣୀ          ମନ୍ଦ୍ର ଉଠିଲା—
"ସେ ବନର ସେଇ ନୀଳ ତନୁ
ସେବନର ସେଇ          ପାଷାଣ ପ୍ରତୀକ
ସେ ବନର ନୀଳ ମାଧବ ମୁଁ ।
ପାଷାଣ ଭିତରୁ ଯାଇଚ ଉଭେଇ
ଦାରୁ ବପୁହେ ଆସିଅଛୁ ଏଇ
କି କରୁଛ ରାଜା ଏତେବେଳେ ?
ଶକ୍ତିର ବଳେ ଏଇଠାରୁ ମତେ
ନେଇ ପାରିବନି କେବେ ହେଲେ ।"

— ୧୧—

"ଜଗତ ଠାକୁର          ଆହେ ମହାପ୍ରଭୁ
ଆପେ ବସିଅଛ ଏଇ କୂଳେ,
ସରଗର ଶିରୀ          ଭରି ଦେବା ପାଇଁ
ପ୍ରାଣେ ପ୍ରାଣେ ଏଇ ପୁରେ ପୁରେ ।
ଜାଣି ପାରୁନାହିଁ, କାହିଁ ପାଇଁ ତେବେ
ନିଠୁର ବଚନ ଶୁଣାଉଚ ଏବେ ?
ତୁଚ୍ଛ ଜନ ମୁଁ ତୁମର
ଜଗତର ନାଥ ତୁମରି ସମ୍ମୁଖରେ
କି ଅବା ଶକ୍ତି ମୋହର ?"

—୧୨—

"ପାଖକେ ହେ ରାଜା ଠିଆ କର ଆଣି
ବିଶ୍ୱାବସୁର ବଂଶ
ଆର ପାଖେ ପୁଣି ଠିଆ କର ଆଣି
ବିଦ୍ୟାପତିର ଅଂଶ ।
ତୁମର ସମ୍ମୁଖେ ଅଜାତି ଯେ ଜନ
ସେମାନେ ମୋହର ମମତା ଭାଜନ,
ସେମାନେ କରିଲେ ସ୍ପର୍ଶ
ସେମାନେ ଧରିଲେ ମୁଁ ପରା ଉଠିବି
ତହିଁ ମୋ ଅତୁଳ ହର୍ଷ ।"

—୧୩—

ଆକୁଳ ଚରଣେ ଆଗେଇ ଆସିଲେ
ବିଶ୍ୱାବସୁର ବଂଶ,
ଆକୁଳ ଚରଣେ ଆଗେଇ ଆସିଲେ
ବିଦ୍ୟାପତିର ଅଂଶ ।
ବ୍ୟଗ୍ର ବାହୁରେ ଅତି ଶରଧାରେ
ଧରିଲେ ମହାନ୍ ଦାରୁ ଦେବତାରେ,
ତୋଳି କୋଳାହଳ ଶବ୍ଦ,
ଆଖିର ପଲକ ପଡ଼ୁ ନ ପଡ଼ୁଣୁ
ଦାରୁରେ ଜାଗିଲା ସ୍ପନ୍ଦ ।

—୧୪—

ଆକାଶ ତୋଳିଲା ଓଁକାର ବାଣୀ
ତାଳ ଦେଲା ତହିଁ ପାରାବାର
ସମୀର ବ୍ୟଜନ ପରଶ ଢାଳିଲା
ଲେଟି ଲେଟି ଯାଇ ବାରବାର ।
ରାଇଜର ରାଜା, ରାଇଜର ଜନ,
ତୋଳିଲେ ପ୍ରାଣର ସ୍ତୁତିବନ୍ଦନ,—
"ଜୟ ଜଗତର ତାତ ହେ
ଜୟ ଜୟ ଦାରୁବ୍ରହ୍ମ ଦେବତା
ଜୟ ଶ୍ରୀଜଗନ୍ନାଥ ହେ ।"

**

**

# ଶ୍ରୀସ୍ବା ଚଣ୍ଡାଳୁଣୀ

## ରାଧାମୋହନ ଗଡ଼ନାୟକ

(ବିଂଶ ଶତାବ୍ଦୀ)

— ୧ —

ମାର୍ଗଶିର ମାସର ସେଇ
ପହିଲି ଗୁରୁବାର,
ଉଷାର ଶିଖା ଯୋଗାଉଥିଲା
ସୁନାର ଉପଚାର ।

ସାଗର ବୁକେ ଉଚ୍ଛୁଳୁଥିଲା
ସୁନାର ଚଳ ଲହରୀ-ମାଳା

ଦେଉଳ ନୀଳ ଚକ୍ର ପରେ
ଅରୁଣ ରାଗ-ବର୍ଣ୍ଣ,
ମରକତପୁରେ ସରଗଶିଖା
ଝଟକୁଥିଲା କିବା !

— ୨ —

ଦେଉଳ ଗୁଣ୍ଡ଼ ବାହାର ହେଲେ
ଲକ୍ଷ୍ମୀ ଠାକୁରାଣୀ,
ଘରକୁ ଘର ବାହୁଣିଗଲେ
ପଲକେ ସବୁ ଜାଣି ।

ଦେଖିଲେ କେଉଁ ଘରଣୀ କାହିଁ
ଅଳସ ଶେଯ ବରଜ ନାହିଁ

ଦୁଆର ଘର ଅସନା ହୋଇ
ପଡ଼ିଚ ଘୃଣଧାର,
ମଥାନ ପରେ ଡାମରା କାଉ
ଘୁରୁଚ ବାରବାର ।

— ୩ —

ବାହାର ଘରେ କହଇ ଦାସୀ
"ଲକ୍ଷ୍ମୀ-ପୂଜା ଆଜ,
ସ୍ନାହାନ ବେଗେ ସାଇଲେ ସିନା
ଥୋଇବ ପୂଜାସାଜ ।

ଲିପୁଚ ମୁହିଁ ପୂଜାର ଠାଆ,
ସଅଳ ଟିକେ ଉଠ ଗୋ ମାଆ !"

ଘୁମରୁ ଉଠି ଅଳସ ସୁରେ
କହିଲେ ସାଆଁତାଣୀ,
"ମୋତେ ଯେ ଉଠ ବତାଉଅଛୁ
ମୁଁ ଉ କ ନାହିଁ ଜାଣି ?"

—୪—

ଲକ୍ଷ୍ମୀ ମାଆ ଦେଖିଲେ ଯାଇ
ନଗର-ପ୍ରାନ୍ତରେ,
ଚଣ୍ଡାଳର କୁଟୀରଟିଏ
ଅତୁଳ ଛବି ଧରେ ।

ଗୋମୟ-ଲିପା ଅଗଣାତଳ
ଦିଶୁଛି କେଡ଼େ ସୁନିର୍ମଳ

ନୟନ ମନ ନେଉଛି ହରି
ପିଠଉ-କମ-ଝୋଟି,
ଶତେକ ଦଳେ ହୋଇଛି ଲେଖା
ପଦ୍ମ ଫୁଲ ଗୋଟି ।

—୫—

ପଦ୍ମ ଫୁଲ— ଚନ୍ଦ ଆଗେ
ଲକ୍ଷ୍ମୀ ପୂଜାରୁଣୀ,
ବସିଛି ଆଖି ନିମୀଳି କରି
ଶ୍ରିୟା ଚଣ୍ଡାଳୁଣୀ ।

ଦୀପରେ ଜାଳି ଉଜଳ ଆଶ,
ଧୂପରେ ଜାଳି ସୁରଭି ଶ୍ୱାସ,

କଣ୍ଠ-ତାର ମୁଖର କରି
ଆବେଶ-ଭରା ତାନେ,
ମିନତି ତାର ଦେଉଛି ଢାଳି
ଭକତି-ଭରା ପ୍ରାଣେ ।

—୬—

"ଆସ ଗୋ ମାଆ          ଲକ୍ଷ୍ମୀ ଆଜ
ଚଣ୍ଡାଳୁଣୀ ଡାକେ,
ଅଛୁଆଁ-ଛୁଆଁ—          ଭେଦ ଗୋ ମାଆ
ନାହିଁ ତ ତୋହ ପାଖେ ।

ମୋହର ଏହ ପଦ୍ମପରେ
ଆସ ଗୋ ମାଆ ବସ ଗୋ ଥରେ,

ପ୍ରାଣର ମୋର          ଆରତି ଘେନ
ଆଉ ତ କିଛୁ ନାହିଁ,
କି ଉପଚାର          ମିଳିବ ମୋତେ
ତୋହର ପୂଜା ପାଇଁ ?

—୭—

କରୁଣା ତୋର          ପାଉଛି ନିତ
ଏ ମୋର ମାଟି ଘରେ,
ଦୁଃଖେ ସୁଖେ          କାଟୁଛି ଦିନ
ଶାନ୍ତି-ସୁହାଗରେ

କରମ କରି ତାହାର ଫଳ
ପାଉଛି ନିତି ଅନ୍ନ ଜଳ,

ସେନେହ-ପ୍ରୀତି-          ବନ୍ଧନରେ
ସଭିଏ ଅଛୁ ମିଳି,
ଜୀବନ ଭରି          ପାଉଛି ନିତି
ମାଆଲୋ ତୋହ ଶିକ୍ଷା ।"

— ୮ —

ଅଚରେ ତାର          ଢମୀଳ ଆଖି
ମୁକୁଳି ଗଲା ଗୁଆଁ,
ପଦ୍ମ ଫୁଲ          ଚଝ ପରେ
ଦେଖିଲା ମହାମାଆ ।

ପଲକହୀନ ନୟନ ଭରି
ଦେଖିଲା ରୂପ ସୁଧାର ଝସା,

ଚରଣ ତଳେ          ଲଗାଇ ମଥା
ଲୋଟାଇ ଦେଲା ହ୍ୱସ୍ଥା,
ହରଷ-ଭରା          କଣ୍ଠ ଖୋଲି
ସମ୍ଭାଷିଲା ଶ୍ରୀସ୍ଥା ।

— ୯ —

"ସତେ ଗୋ ମୋର          ଲକ୍ଷ୍ମୀ, ମାଆ
ଆସିଲ ମୋର ଘରେ
ସପନ ମୋର          ସଫଳ ହେଲା
ହୀନ ଏ ଜୀବନରେ ।

ଧନ୍ୟ ହେଲ ଅଭାଗୀ ମୁହିଁ,
ପୁଣ୍ୟ ହେଲା ଏ ମୋର ଭୁଇଁ,

ପୂର୍ଣ୍ଣ ହେଲା          ଏ ମୋର ଆଶା
ଆଖିର ପଲକରେ,
ଜଆର ପରି          ହୃଦୟ ମୋର
ଫୁଲଇ ପୁଲକରେ ।"

—୧୦—

ଚଣ୍ଡାଳର ଘରଣୀ ସେଇ
ଶ୍ରୀୟା ଚଣ୍ଡାଳୁଣୀ,
ବାରକୁ ବାର ଲୋଟାଇ ମଥା
ନମିଲା ପୁଣି ପୁଣି ।

ତରଳ କଳା ଆଖିରୁ ତାର
ଝରିଲା ଖାଲି ସଲିଳ-ଧାର,

ଲକ୍ଷ୍ମୀ-ରୂପ ଆଖିରେ ଦେଖି
ଦୁନିଆ ଗଲା ଭୁଲି,
କହିଲା ଖାଲି- "ମଥାରେ ମୋର
ଦିଅ ମା ପାଦ-ଧୂଳି ।"

—୧୧—

ପୁଲକ ଭରେ ଲକ୍ଷ୍ମୀ ଦେବୀ
ବୋଇଲେ, "ଆଲୋ ଶ୍ରୀୟା,
ମୋହର ପୂଜା କରିବା ପାଇଁ
ତୋହର ଅଛି ହିୟା ।

ଆଶିଷ ଏବେ କରୁଛି ମୁହିଁ,
ସକଳ ଶିକ୍ଷା ଲଭିବୁ ତୁହି,

ସୁଖର ଘର ଦୁଆର କରି
ରହିବୁ ମହାସୁଖେ,
ଧରଣୀ ତଳେ କାଟିବୁ ଦିନ
ହରଷ-କଉତୁକେ ।"

—୧୨—

ଦେଉଳ ମୁଖେ   ଝଗଲେ ଦେବୀ
ଦେଖିଲେ ଆଖି-ଆଗେ
ଆଗରେ ଉଭା   ଜଗନ୍ନାଥ
ସିଂହଦ୍ୱାର-ଭାଗେ ।

"ଲକ୍ଷ୍ମୀ ଆଗେ କହିଲ ଦେଖି
ତୁମର ନାମେ ଶୁଣୁଚ ଏ କି ?

କୁଆଡ଼େ ଭଲ   ବୁଲୁଚ ତୁମେ
ଦେଖିଲେ ବଡ଼ ଲାଜ,
ଚଣ୍ଡାଳର   ଅଗଣା ତଳେ
ବସି ଯେ ଥିଲ ଯାଇ ।

—୧୩—

କିଏ ସେ ଭଲ   ପାରିବ ସହି ?
ତୁମର ଏଇ ରୀତି,
ଅପବାଦ   କରୁଛନ୍ତି କଥା
ଦେଉଳେ ଆମ ନୀତି ?

କାହିଁକି ତୁମେ ଅପଥ ପଥେ
ବୁଲୁଚ ଭଲ ଇଚ୍ଛାମତେ ?

ଖାଇ ତ ଆଜି   ଅଗ୍ନି ବାଣ
ମୁଁ ଏବେ ନରୁପାରୁଁ,
ଦେଉଳେ ନାହିଁ   ତୁମର ଠାଇଁ
ଏଳଗେ ଚାଲିଯାଅ ।"

—୧୪—

"ଇଏ କି କଥା କହୁଚ ଦେବ ?
ପାରୁନି ମୁଁ ତ ବୁଝି,
ଏଇ କି ମାତ୍ର ମହାପ୍ରଭୁ
କହୁଚ ଆଖି ବୁଜି ?

କରୁଚ ମୁଁ ଯେ ଅନ୍ନଦାନ
ସକଳ ଘରେ ମୋହର ଆନ,

ସୃଷ୍ଟି ତବ ପାଳିବା ପାଇଁ
ଘୂରୁଚ ଅବିରଳ,
କିଏ ସେ ନୁହେ ନିଜର ମୋର ?
କିଏ ସେ ମୋର ପର ?"

—୧୫—

ଜଗନ୍ନାଥ ବୋଇଲେ, "ଏଥେ
ନାହିଁ ଯେ ମୋର ଦୋଷ
ନଷ୍ଟସ୍ତ୍ରୁ ମୁଁ ସାଧିବି, ଭାଇ
ଲଭିବେ ଯହିଁ ତୋଷ ।

ଲକ୍ଷ୍ମୀ ମୋର ପ୍ରାଣର ପ୍ରିୟା,
ଉଚ୍ଛୁର ଆଉ କରୁଛ କିଆଁ ?

ବୃଥାରେ ଭଲ କାହିଁକି ଆଉ
ଘୃଣୁଁଚ ମୋର ମତ ?
ଯୁଆଡ଼େ ମନ ଯିଆଡ଼େ ଯାଅ
ମୁକ୍ତ ତୁମ ପଥ ।"

—୧୬—

ଚରଣ-ରେଣୁ ମଥାରେ ଘେନ
ଆଖିରେ ଭରି ଜଳ,
ସିନ୍ଧୁ-ଜେମା ବୋଇଲେ ବାଣୀ
କଣ୍ଠ ଥର ଥର ।

"ଯାଉଚ ଆହେ ପରାଣପ୍ରିୟ,
ଅଭାଗିନୀର ହୃଦୟ ନିଅ ।

କଠୋର ତୁମେ ଦେବତା ମୋର
ମୁରୁଛି ଦେଲ ସିନା,
ଜୀବନ ମୋର ମରଣ ଏବେ
ହୋଇବ ତୁମ ବିନା ।"

—୧୭—

ଜଗନ୍ନାଥ ମହାପ୍ରଭୁ
ଦେଉଳେ ଗଲେ ଫେରି,
ଲକ୍ଷ୍ମୀ ଏଣେ ଧଇଲେ ପଥ
ନ କରି ଆଉ ଡେରି ।

ବଳଭଦ୍ର ପୁଚ୍ଛିଲେ ତହୁଁ
"କୁଆଡ଼େ ଏବେ ଗଲେ ଯେ ବହୂ ?"

ଅଚଳ ହୋଇ ଜଗନ୍ନାଥ
ଉତ୍ତରଲେ, "ଏଇ,
ଆସିଲ ପରା, ଇନ୍ଦିରାକୁ
ବିଦାୟ କରି ଦେଇ ।"

—୧୮—

ଦେଉଳ-ଶିଖ          ଉଭେଇଗଲା
ଲକ୍ଷ୍ମୀ ସାଥେ ସାଥେ,
ବଳଭଦ୍ର          ଜଗନ୍ନାଥ
ଦେଖିଲେ ଏକା ଘଟେ ।

ପ୍ରଭାତେ ପୁଣି ଦେଖିଲେ ସ୍ୱାହିଁ
ପାଶରେ କେହୁ ସେବକ ନାହିଁ

ପଖାଳ କାହିଁ          କିଏ ସେ ଦେବ ?
ଶ୍ରୀମୁଖ ହେବେ ଧୋଇ,
ଗୋଟାଏ ଦିନେ          ଦେଖିଲେ ଏ କ
ଲକ୍ଷ୍ମୀଛଡ଼ା ହୋଇ ।

—୧୯—

ବଳଭଦ୍ର          ଜଗନ୍ନାଥ
ଦେଖିଲେ ଦୁରୁଯୋଗ,
ଦେଉଳେ ଆଉ          ଏଣିକି କାହିଁ
ଲାଗିଲା ନାହିଁ ଭୋଗ ।

ଦିନକେ ସବୁ କୁହୁକ ପରା
ମନ୍ଦିରରୁ ଉଭେଇ ଗଲା ।

ବ୍ରାହ୍ମଣର          ମୂରତି ଧରି
ଅନ୍ନ ପାନ ପାଇଁ,
ଦେଉଳ ଛାଡ଼ି          ବାହାର ହେଲେ
ଦୁଃଖ ବେଦନା ସହି ।

—୨୦—

ସାଇରୁ ସାଇ ନଗରୀ ସାରା
ଘୂରିଲେ ନେକ ଭାଇ,
କଏ ସେ ଦେବ କଅଣ ଦେବ ?
ମିଳୁଚ ଅବା କାହିଁ ?

ତଥାପି ବେନ ଭିକ୍ଷା ଆସେ
ମିଳିଲେ ସାଇ ବହୁତ ବାସେ,

ଯାହାର ଦ୍ୱାରେ ହୋଇଲେ ଉଭା
ଆଚମ୍ବିତ ଆହା,
ତାହାର ଘରୁ ଉଭେଇ ଗଲା
ଦେବାର ଥିଲା ଯାହା ।

—୨୧—

ଲକ୍ଷ୍ମୀଛଡ଼ା ଯୁଗଳ ଭାଇ
ବୁଲିଲେ ଦୂରେ ଦୂରେ,
କ୍ଷୁଧାରେ ଅତି କାତର ହୋଇ
ବସିଲେ ତରୁ-ମୂଳେ ।

"ପେଟର ଜ୍ୱାଳା ଜୀବନଦାୟୀ
ଜଗା ରେ, ସହି ପାରିବା ନାହିଁ ।

ଏଇଠି ପ୍ରାଣ ରହିବ ନାହିଁ,
ଧରିବା ଦୂରପଥ ।"
ଜଗନ୍ନାଥ ବୋଇଲେ, "ଆଉ
ଚଳୁଚ କିକ ରଥ ?"

—୨୨—

ସାଗର ଧାରେ        ବାଲୁକା ପରେ
ଅଜଣା ପାଦେ ଯାଇ,
ନୂତନ ଏକ        ନଅର ପାଶେ
ମିଳିଲେ ବେନି ଭାଇ ।

ଅନ୍ନଘରେ ଅନ୍ନଦାନ
ଚାଲିଛି ତହିଁ ଅବିଶ୍ରାମ

ଫେରୁଚ ଭୋକ,        ଫେରୁଚ ଶୋଷୀ
ସଫଳ କରି ଆଶା,
ମୁଖରେ ତୋଳି        ଆନନ୍ଦର,
ଉଲ୍ଲାସର ଭାଷା ।

—୨୩—

ଦୁଆରେ ରହି        ବେଦଧ୍ୱନି
ତୋଳିଲେ ବେନି ଭାଇ,
"ଗୋସାଇଁ ତୁମେ"        ପୁଚ୍ଛଇ ଦାସୀ,
"ଆସିଛ କାହିଁପାଇଁ ?"

ମନର ଆଶା ପୂରିବ ଜାଣି
ବଳଭଦ୍ର ବୋଇଲେ ବାଣୀ,

"ଭୋକିଲା ଦୁଇ        ବ୍ରାହ୍ମଣରେ
ଅନ୍ନ କର ଦାନ
ଦୁ'ଦିନ ହେଲା        ମିଳିନି କିଛି
ରଖ ଗୋ ଆମ ପ୍ରାଣ ।"

—୨୪—

“ଜାଣନ୍ନ ବୋଧେ ଆମର ଏଯେ
ଚଣ୍ଡାଳର ଘର
ଆମର ପାକ ଛୁଇଁବ ନାହିଁ
ତୁମେ ଯେ ଦ୍ୱିଜବର ।

ରୋଷେଇ ସାଜ ସାଆନ୍ତାଣୀ
ଦେବେ ଯେ ମୁହିଁ ଦେଉଛି ଆଣି

ଯତନ କରି ଏଙ୍କଗେ ତୁମେ
ରାନ୍ଧି ବାଢ଼ି ଖାଅ,
ଭୋଜନ ପରେ ଦକ୍ଷିଣା ନେଇ
ସୁଖରେ ଚାଲିଯାଅ ।”

—୨୫—

ବଳଭଦ୍ର ଜଗନ୍ନାଥ
ହୋଇଲେ ତହିଁ ରାଜା,
କପର ମୁଠେ ଅନ୍ନ ଲୁଟୁ
ଜୀବନ ରହୁ ଆଜ୍ଞ ।

ଚୁଲି ଡାଲି ପରିବା ମାନ;
ରନ୍ଧନର ସରଞ୍ଜାମ

ଦାସୀଏ ପୁଣି ଥୋଇଲା ଆଣି
ନସ୍ତୁନ-ଲୋଭନଆ,
ଅପର ଦାସୀ ଯତନେ ଆଣି
ଥୋଇଲା କାଠ ନିଆଁ

—୨୬—

ଜଗନ୍ନାଥ ଜାଳିଲେ ଚୂଲି
କେଜାଣି ଭଲ କଆଁ ?
ଯତନ କରି ଜାଳିଲେ ମିଶେ
ଜଳିଲା ନାହିଁ ନଆଁ ।

ଜୋ'ର କରି ଫୁଁକିଲେ ସିନା,
ଶେଷକୁ ଖାଲି ଥକିଲେ ସିନା,

ଜଳିଲା ନାହିଁ ଚୂଲିର କାଠ
ଉଠିଲା ଖାଲି ଧୂଆଁ ;
ଧୂଆଁରେ କଳା ହୋଇଲେ ପ୍ରଭୁ
ଜଗତ-ବନୋଦିଆ ।

—୨୭—

"ଚୂଲିଟା ଜାଳି ପାରୁନୁ ଜଗା
ସବୁଠି ପୁଣି ଆଗ,
ଦେଖୁଚ ତୋର ହାତରେ ଏବେ
ସିଝିବ ନାହିଁ ଶାଗ ।"

ଜ୍ୟେଷ୍ଠ ଭାଇ ବହୁତ ତାପେ
ଚୂଲିରେ ନଆଁ ଜାଳିଲେ ଆପେ,

ନଆଁ ତ ଜମା ଜଳିଲା ନାହିଁ
ଲାଗିଲା ନାହିଁ କାଠ,
ଚୂଲିରେ ପାଣି ଅଜାଡ଼ି ଦେଲେ
ନ ଦେଖି ଆଉ ବାଟ ।

— ୧୮ —

ଅନ୍ତଶାଳୁ          ବାହାର ପଡ଼ି
ବୋଲଇ ପରସ୍ତୁଣୀ,
"ଗୋସାଇଁ, ତୁମେ          କଅଣ କଲ ?
ଗଲ ତ ଏବେ ହାର ।"

ବଳଭଦ୍ର ବୋଇଲେ ତହୁଁ
"ଦାସୀ ଗୋ ଏବେ ଜୀବନ ରହୁ,

ତୁମର ପାକ          ଅନ୍ନ ମୁଠେ
ତୁରତ କର ଦାନ,
ଜାଢର ମାନ          ଖୋଜୁଚ କିଏ
ଯାଉଚ ଯେବେ ପ୍ରାଣ ?"

— ୧୯ —

ଦିବ୍ୟପାକ          ଆସିଲା ତହିଁ
ଅଢଥିଜନ ପାଇଁ,
ହରଷେ ବସି          ଭୋଜନ କଲେ
ଆତୁର ବେନି ଭାଇ ।

"ଲକ୍ଷ୍ମୀ ପାକ ପସ୍ୱଏ ସତେ !
ଜଗା ରେ ଏହା ଲାଗୁଛି ମତେ ।"

ଜଗନ୍ନାଥ          ବୋଇଲେ, "ଭାଇ
ଥାଉ ସେ କଥା ଥାଉ,
ହରେଇ ଅଛେ          ଯେ ସୁଖ ଭଲ
ଭାବୁଚ କିଆଁ ଅଉ ?"

—୩୦—

ଅନ୍ନ ପରେ ଆସିଲା ପୁଣି
ଦୁଇଟି ପୋଡ଼ପିଠା,
ବଳଭଦ୍ର ବୋଇଲେ, "ଜଗା,
ସିମିତ ତ ଏ ମିଠା,

ଭୁଞ୍ଜିଲେ ଯେ ଖାଦ୍ୟଯାକ
ଭାବୁଛୁ ମୁହିଁ ଲକ୍ଷ୍ମୀପାକ,

ଲକ୍ଷ୍ମୀ ବିନା ନୋହିଲେ କିଏ
ଏ ପୋଡ଼ପିଠା ଆଣି,
କହିଲୁ କେଖି ଯୋଗାଇ ଦେବ
ଆମର ମନ ଜାଣି ?"

—୩୧—

ଭୋଜନ ସାରି ହରଷଭରେ
ବଢ଼ାଇ ଆଚମନ
ଭାଇରେ ଡାକି ଜ୍ୟେଷ୍ଠ ଭ୍ରାତ
ଭାଷିଲେ ସୁବଚନ ।

"ମୋହର ଯୋଗେ ଏ ଧନ୍ୟଧାମେ
ଲକ୍ଷ୍ମୀଛଡ଼ା ହୋଇଲେ ଆମେ,

ନିମିଷକେ ଆମର ସବୁ
ଭାଗ୍ୟ ଗଲା ଜଳି,
କଳନାହୀନ ଦୁର୍ଦ୍ଦଶାରେ
ହୋଇଲେ ଏତେ ସରି ।

— ୩୨ —

ଲକ୍ଷ୍ମୀ ଦେବୀ    ରୁଷ୍ଟ ପୁଣି
ହୋଇବେ କେଉଁଫେର,
କପର ଅବା    ଆମ୍ଭର ଘର
ଛୁଟିବ ପୁଣି ଭର ।

ବୃଥାରେ ମୁହିଁ କଲ ଯେ ରୋଷ
ଖାଲୁଚ ଏବେ ତାହା ମୋ ଦୋଷ ।"

"ସନ୍ତାପିଲେ    କି ହେବ ଆଉ ?"
ବୋଇଲେ ସାନ ଭାଇ,
"ଗଲଣି ଗଲ    କଥା ତ ଏବେ
ଖାଲୁଚ କାହିଁପାଇଁ ?"

— ୩୩ —

ଅନ୍ତରାଳୁ    ସିନ୍ଧୁ ଜେମା
ବାହାରପଣ୍ଡ ଖରେ
ଦୂରରୁ ଟିକେ    ନମିଲେ ବେଣ
ଦେବତା ପାଦତଳେ,

ମରମେ ଭରି ପୁଲକ ପାଇ
ବିଭୋର ହେଲେ ଯୁଗଳ ଭାଇ ।

ବଳଭଦ୍ର ବୋଇଲେ,    "ଦେବୀ
ଭୁଲ ଗୋ ମୋର ଦୋଷ,
ମନ୍ଦିରକୁ    ଚାଲ ଗୋ ଏବେ
ହୃଦୟେ ଘେନ ତୋଷ ।"

— ୩୪ —

''ବହୁତ କଥା ହେଲା ତ ଆଗୋ
ଲକ୍ଷ୍ମୀ ଠାକୁରାଣୀ''
ପାଣକୁ ଯାଇ ଜଗନ୍ନାଥ
କହିଲେ ଧୀର ବାଣୀ ।

''କଅଣ ଆଉ ଭାବୁଚ ତେବେ ?
ଦେଉଳେ ଚାଲ ଫେରବା ଏବେ ।

ଆମର ସବୁ ଦୁଃଖ ଦଶା
ସାଙ୍ଗ ହେଉ ଆଜ,
ତୁମକୁ ପାଇ ପୁଣି ଏ ଆମ
ଦେଉଳ ଉଠୁ ସାଜ ।''

— ୩୫ —

''ପ୍ରଭୁ ହେ ତୁମ ଆଦେଶ ପାଇ
ଦେଉଳ ଛାଡ଼ିଥିଲି,
ପୁଣି ଏ ତୁମ ଆଦେଶ ପାଇ
ଯିବି ମୁଁ ଯିବି ଫେରି ।

ମାତର ଦେବ ଗୋଟିଏ ଅଳି,
ବୁଝ ତ ଏବେ ବିଚାର କରି,

ସେ ଯେଉଁ ଶ୍ରୀୟା ପୂଜାରେ ମତେ
ଘରକୁ ନେଲା ଟାଣି,
ତାହାର କଥା କଅଣ ଭଲା
ବୁଝିବ ମହାମାନି ।''

"ଶ୍ରାଦ୍ଧର କରେ ତୁମେ ତ ଦାନ
ଦେଇଚ ଭରପୂର'
ଶ୍ରାଦ୍ଧର ଯୋଗେ ଉଦ୍ଧରିବେ
ଏବେ ତା ଜାତିକୁଳ

ଏଣିକି ଆମ ଦେଉଳେ ଜାଣ
ସଭିଏ ହେବେ ଏକଇ ପ୍ରାଣ,

ଦେଉଳେ ଥିଲା ଯେ ଭେଦାଭେଦ
ଏଥର ହେଲା ରଦ,
ଚଣ୍ଡାଳର ହାତରୁ ଦ୍ୱିଜ
ଖାଇବେ ମାହାରଦ ।"

**

**

# ଅନାଥରେ

## କିଶୋରକବି ଶ୍ୟାମସୁନ୍ଦର ଦାସ

[ରାଗ-ତୋଡ଼ିପରଜ । ତାଳ-ଆଦିତାଳ]

( ବିଂଶ ଶତାବ୍ଦୀ )

ଅନାଥରେ···ଅନାଥର ଭାମଦ କାମରୂପକୁ
(ଅନାରେ) କଳପୀ କାଳିଆ ଭୂପକୁ ॥୧॥

ପଦ୍ମାଭିଳାଷ ଆସ୍ପଦ, ଶ୍ରୀମନ୍ମୁଖ କୋକନଦ
ଇନ୍ଦ୍ରାଦିବୃନ୍ଦାର୍କ ବୃନ୍ଦ ବନ୍ଦିତ ବିଶ୍ୱଦର୍ପକୁ ॥୨॥

ମହାମହୋଦଧିତଟ, ନୀଳାଦ୍ରି ଅଟବୀ ପୁଷ୍ଟ-
ପ୍ରମତ୍ତ ମାତଙ୍ଗ ଶ୍ରେଷ୍ଠ ପାବନ ଯଦୁତାପକୁ ॥୩॥

ଅନନ୍ତ ଶେଷ ମଣ୍ଡଳ, ପାର୍ଶ୍ୱେ ହଳାୟୁଧ ବଳୀ
ଶୁଭଦା ମଧ୍ୟମା ଭଦ୍ରା ସୁଦର୍ଶନ ଅନୁପକୁ ॥୪॥

ଭକ୍ତ ବାଞ୍ଛ ଚିନ୍ତାମଣି, ମୋକ୍ଷଦ ସୁଗତି ଖଣି
କିଶୋର କବିର ହୃଦ ପଦ୍ମ ସରସ ରୂପକୁ ୫॥

**

**

# ହେ ନୀଳଶୈଳ ବିଳାସୀ

## କିଶୋରକବି ଶ୍ୟାମସୁନ୍ଦର ଦାସ

[ରାଗ-ଖଣ୍ଡକାମୋଦୀ । ତାଳ-ଆଡ଼ତାଳି]

( ବିଂଶ ଶତାବ୍ଦୀ )

ହେ ନୀଳଶୈଳ ବିଳାସୀ ଛଇଳ ଛପନକୋଟି ପତିଦାତା
(ପୁଣି) ଛପନପଉଟି ମଣୋହିକ କଣ୍ଠି ଛତିଶା ନିଯୋଗଣକର୍ତ୍ତା ହେ
ମହାପ୍ରଭୁ । ଚଉଦ ବ୍ରହ୍ମାଣ୍ଡ କର୍ତ୍ତା ।
ପତିତପାବନ ଦାରୁବ୍ରହ୍ମ ରୂପେ କଳି କଳୁଷ ଉଦ୍ଧାରନ୍ତା ।।୧।।

ପାପୀତାପୀ ପରିତାପୀ ତପୀଜନ ଜନକ ପଣେ ସାମରଥ,
ଶରଣାଗତଙ୍କୁ ଚରଣସରୋଜେ ଥଳଦେଇ ପାଳ ନିରତ ହେ
ମହାପ୍ରଭୁ । ଜଗନ୍ନାଥ ନାମେ ଖ୍ୟାତ
ଦଇତା ପତିଙ୍କ ଗହଣେ ପୂଜିତ ମହିମା ତ୍ରିଲୋକେ ବିଦିତ ।।୨।।

କେତେ ଜନ୍ମ ପୁଣ୍ୟେ ଅନୁଗତ ପଣେ ଇନ୍ଦ୍ରଦ୍ୟୁମ୍ନ ଅଧିଈଶ୍ୱର,
ଲଭି ଅନୁଗ୍ରହ ବଚନ ବିଗ୍ରହ ପୂଜିଲ ଆଶ୍ୱାସ ନିଃସ୍ୱର
ମହାପ୍ରଭୁ । ମର୍ତ୍ତ୍ୟବୈକୁଣ୍ଠ ବିଶ୍ୱର
ବିରଚି ବିରାଜ ନୀଳଚକ୍ର ଧ୍ୱଜ ଫଦ ବଲେ କବିକିଶୋର ।।୩।।

**

**

# ଏହୁ ସିନାରେ

## କବିଶେଖରକଣ୍ଠ ଶ୍ୟାମସୁନ୍ଦର ଦାସ

[ରାଗ-ଧନାଶ୍ରୀ ବା ଧନ୍ୟାସି । ତାଳ-ମିଶ୍ରରୂପତାଳ]

(ବିଂଶ ଶତାବ୍ଦୀ)

ଏହୁ ସିନାରେ···ବଡ଼ ଦେଉଳର ବଡ଼ ମହିମା ।
ବଡ଼ ବୋଲ୍ ଧନ ଥୁରେ ପଡ଼ୁଛୁ ଦ୍ରୁଷ୍ଟି ମଣିମା ॥ ୦ ॥

ବଡ଼ ସାମନ୍ତ ପଣେ ତ, ବଳେ ଜଗତର ନାଥ
ବଡ଼ ଘରଣୀ ମା' କ୍ଷୀର ସାଗର ଦୁଲଣୀର ରମା ॥ ୧ ॥

ବଡ଼ ପ୍ରସାଦ ଏ ମାଆ ପ୍ରସାଦ ପାଇଥା'ରେ ପାଇଥା',
କୋଟି କୋଟି ଜନ୍ମ ପୁଣ୍ୟ ଫଳକୁ ଯାଇଛାରେ ଯାଇଛା ;
ବଡ଼ ସାନ ନାହିଁ ଭେଦ ଚଣ୍ଡାଳ ବ୍ରାହ୍ମଣ ଶୁଦ୍ର ଶ୍ରୀ ଚରଣ ତଳେ
ସବୁ କ୍ଷମାରେ ॥ ୨ ॥

ବଡ଼ ଜମଟ ଏ ବଡ଼ କୈବଲ୍ୟ ହାଟରେ ଧନ କୈବଲ୍ୟ ହାଟ
ବଡ଼ ମନ ବୋଲ୍ ଆମ ଜାଣ ବରାଟ,
ବଡ଼ ବଡ଼ ଶିର ନୋଇଁବାର ଏ ବଚନ ସୀମା ॥ ୩ ॥

ବଡ଼ କରୁଣା ମୟୀ ମା' ଏ ଠାକୁରାଣୀ,
ବଡ଼ ପ୍ରସନ୍ନର ସ୍ନେହା ସ୍ନେହୁ ସ୍ନେହାଣୀ;
ବଡ଼ ଆଶିଷ ପ୍ରଦାନେ ନାହିଁ ନଥିବରେ ଜଣେ
ଘୋଷନ୍ତ ବ୍ରହ୍ମାଶଙ୍କର ଯା'ର ଗାରିମା ॥ ୪ ॥

**

**

# ଚଣ୍ଡାଳର ଠାକୁର

## ଜଗେଶୋରକଣ୍ଠ ଶ୍ୟାମସୁନ୍ଦର ଦାସ

[ ରାଗ-ପରଜ । ତାଳ-ଆଡ଼ତାଳି ]

(ବିଂଶ ଶତାବ୍ଦୀ)

ଚଣ୍ଡାଳର ଠାକୁର···ଠାକୁର ହେ···
ସଣ୍ଢା ଟେକଲ ଏବେକ ଭଣ୍ଡାଇବାରେ ?
କୁଣ୍ଢାଇ ରୂପେ ବରଜ ଧଣ୍ଡାମାନେ ଭେଣ୍ଡାସାଜ
ରୁଣ୍ଡାଇଲ ବଡ଼ପଣ ଡଣ୍ଡାଇବାରେ ॥ ୦ ॥

ଗୁଣ୍ଡା ବଳବାକୁ ଷାଠିଏ ପଦ୍ମଟିକ
କୁଣ୍ଢାଇ ବସିଲ ଚକାବଇଠିକ,
ପଣ୍ଡା ପଢ଼ି ହ୍ୱାସ୍ୱା ମେଘନାଦ ପାଚେଶ୍ୱ ଏଭେ ଆକଣ୍ଠ
ଶ୍ରୀ ଅଙ୍ଗ ମଣ୍ଡାଇବାରେ ॥ ୧ ॥

ତ୍ରେତୟାର କଥା ହେଜ ଚଉଦାହ୍ୱା
ଗୁହକ ଶବରୀ ଘରେ ଖୋଜଖିଆ ;
ଦ୍ୱାପରେ ମଲ୍ଲିକା ଶବରୁଣୀ ଚଖା—
ଉଚ୍ଛିଷ୍ଟ ଭୁଞ୍ଜି ଏବେ ବୁଣ୍ଡାଇବାରେ ॥ ୨ ॥

ବଡ଼ ବଡ଼ ଚକା ନୟନ ମେଲକ
ବଡ଼ ଦେଉଳରେ ବସିଲ ବୋଲକ,
ତବ ବଡ଼ପଣ ହେବ ପ୍ରଭୁ ହାନ
(ଖାଲି) ପତିତପାବନ ବାନା···ମୁଣ୍ଡାଇ ବାରେ ॥ ୩ ॥

**

**

# ନୀଳ ଶଇଳହାରୀ

## କିଶୋରକବି ଶ୍ୟାମସୁନ୍ଦର ଦାସ

( ରାଗ-ଲଳିତ ଶ୍ରୀ । ତାଳ-କହରବା]

(ବିଂଶ ଶତାବ୍ଦୀ)

ଷ୍ଵବ ବିନୋଦିଆ ନୀଳ ଶଇଳ ହାତୀ
ନୀଳ ଶଇଳ ହାତୀ ।
ଭକତ ବଢ଼ିବା ପାଇଁ କେତେ ଠାଣି କର ଗୁଢ ॥ ୦ ॥

ଭକତ ବକଟ ଟେକ, ଢଲେ ଧାସଙ୍ଗ ନରଖି
ଚକା ତୋଳେ ଠାକ ଏକ ନରକ୍ଷ ପରଖା ସ୍ଵଢ ? ॥ ୧ ॥

ସର୍ବସ୍ୱହର ହେ ହର କର ବାଉଳା,
ମଜାଅ ଦେଇ କପଣ କପଟି ଶିଳା ;
ଦୁନିଆଁ ନାଆଁରେ ସୁନା ପୋଡାଇ ବଢାଅ ଜ୍ୟୋତି ॥ ୨ ॥

କାଳିଆ କପଟି ମାୟା, ଦେବେ ଅଗୋଚର ଯାହା
ସ୍ୱୟମ୍ଭୁ ଶମ୍ଭୁ ସେବକ ପଣେ ଢଲାଙ୍କେ ଜାଣନ୍ତି ॥ ୩ ॥

**

**

# କାଠଗଡ଼ କି ଖେଳ

## କିଶୋରକବି ଶ୍ୟାମସୁନ୍ଦର ଦାସ

[ରାଗ-କୀରବାଣୀ । ତାଳ-ପଦ୍ମପଣ୍ଠ]

(ବିଂଶ ଶତାବ୍ଦୀ)

ଚକା ଡୋଳା ତୁମେ ପକ୍କା, ଠକ ଠାକୁର ହେ
ଟିକି ଦାନ୍ତୁ ଠକ ଠକ ଖଙ୍ଗି ଠେକ
ଠାକିଛ ପର୍ ପାଇ କେତେ ଠୁକର ହେ ॥ ୦ ॥

ଠକାରକୁ ଠିକେ ଠାକୁର ବୋଲିବେ
ଠେକା ବାନ୍ଧି ବୋକା କଲ ଖାତର ?
ଠକ ଦେବକୀ କି ନ କରିଛ କି କି ଗୋପ ଗୋଈ ଗୋଠେ
ଶଠ ଶେଖର ହେ
ଠଣ ସୁନ୍ଦର, ଠାପୁଆ ସ୍ବୈର
ଠାସକରେ ଦାନ ବଳୀର ନେଲ ;
(ଆଉ· ଠକ ଠାବ ଦେଲ ପାତାଳ ପୁର ॥ ୧ ॥

ଘେନି ଭଉଣୀକୁ ଦେଲ କନ୍ଦୁଣୀକୁ ଟେକିଛ ଟାଣ ପଣରେ—
ଶ୍ରୀ ଧର;
ସ୍ୱୀକ ମାନଆ ମୁଁ ନ ବାହ୍ନି ବୋଇଲ ଦଳସ୍ମାର ଭୁଜ ଦସ୍ମା ସାଗର
ହେ ଖେଳ ବକଳ, ବୋଲିକ କଲ
କାଳାକର ମୁଖ କଳା କରି ବସିଲ,
ମୋ ବେଳକୁ କାଠ ଗଡ଼ଙ୍କ ଖେଳ ହେ ॥ ୨ ॥

**

**

# ମୋ ବନ୍ଧୁ ନୋହିଲେ ଯେବେ ଗୋ

## କିଶୋରକବି ଶ୍ୟାମ ସୁନ୍ଦର ଦାସ

[ରାଗ-ଝିଞ୍ଜୋଟି । ତାଳ-ମିଶ୍ରରୂପ ତାଳ]

(ବିଂଶ ଶତାବ୍ଦୀ)

ସେ ଜଗବନ୍ଧୁ, ମୋ ବନ୍ଧୁ ନୋହିଲେ ଯେବେ ଗୋ,
ପ୍ରଭୁ ପଣେ ସାମରଥ ବୋଲି ସେ ତ କିପାଇଁ ଗଣିବି ଲବେ ଗୋ ॥୦॥

ହୋଇ କାହା ଅଜା କାହାର ଭଣଜା କାହାର ଶଶୁର କାହା ଜୁଆଁଇ
ତାରିଲେ ମାରିଲେ ସାରିଲେ ହାରିଲେ କରିଲେ ସେ ଅବା କିସ ମୋପାଇଁ;
ଖାଇ ଭଜା ଖୁଦ କାହାକୁ ସମ୍ପଦ ଡାଳି ଦେଲେ ସଖା ବୋଲିବା ଲୋଭେ ॥୧॥

କାହାକୁ ସମୁଦ୍ର କଲେ ବାଦସାଧି, ଭାଇ ମାନ୍ୟ ଦେଲେ କାହାକୁ ସମ୍ବାଦ,
କାହାକୁ ବାନ୍ଧବ କରି ଗୀତା ଭାବ ସମଜାଇ କଥା ରଖିଲେ ଭବେ ॥୨॥

କାହା ପୁତ୍ର ରୂପେ ବିହରିଲ ଗୋପେ, କାହିଁ ନଟବର ନାଗର ସ୍ୱରୂପେ
ତ୍ରିଲୋକ ମୋହିଲେ ମୋପାଇଁ ନୋହିଲେ କେଉଁ ଗୁଣେ ସମସରି କରିବେ ॥୩॥

**

**

# କଳା ଘୋଡ଼ା ଚଢ଼

## ବୈକୁଣ୍ଠ ନାଥ ବ୍ରହ୍ମଚାରୀ

( ବିଂଶ ଶତାବ୍ଦୀ )

କଳା ଘୋଡ଼ା ଚଢ଼ି ବାହାର କାଳିଆ ଦିଅଁ
କଳି ମ୍ଳେଚ୍ଛଙ୍କୁ ଦଳି ଜନେ ଦିଅ ଅଭୟ ॥୧॥

ସାଥେ ଶ୍ୱେତ ଅଶ୍ୱ ବାନ୍ଧି ରେବନ୍ତ ପତି
ଭାରତ ଆଟେ ହୁଅନ୍ତୁ ସେ ସେନାପତି
ଚକ୍ରଧର ଶ୍ରୀକରେ-ବିରାଜ ସୀମାନ୍ତରେ
ଦେଖି ଏ ଅଭିଯାନ-ଛୁଟିବେ ଶତ୍ରୁ ସୈନ୍ୟ
ତୁଟିଯିବ ସେ ପାପୀଙ୍କର ସାମ୍ରାଜ୍ୟ ମୋହ ॥୨॥

ଅଟ୍ଟହାସ୍ୟ ହସି ନାଶି ଦେଶ ଦ୍ରୋହୀଙ୍କୁ
ଚକ୍ର ଉହାଡରେ ରଖ ଭକ୍ତ ଜନଙ୍କୁ
ଓ କନ୍ତ ଧର୍ମବୀର ପ୍ରଭୁ ନୁହଁ ପଥର
ପାଷାଣ ଦେଉଳରୁ ଶୂନ୍ୟ ଶବ୍ଦ ବାହାରୁ
ସର୍ବ ସାମ୍ରାଜ୍ୟ ମୁଖେ ଘୋଷୁ ତୁମ୍ଭ ବିଜୟ ॥୩॥

ଯେଉଁ ଦିନୁ ଆମ୍ଭ ଦେଖୁ ହଜିବ ହିଂସା
ସେ ଦିନ ଜନ୍ମଭୂମିର ଫେରିବ ଦଶା
ଦୁଃଖ ରାତି ପାହିବ ସୁଖସୂର୍ଯ୍ୟ ଉଇଁବ
ଅସତ୍ୟ ଯିବ ଧ୍ୱଂସ ସତ୍ୟ ହେବ ପ୍ରକାଶ
ଭକ୍ତଜନେ ଗାଇବେ ଜଗନ୍ନାଥଙ୍କ ଜୟ ॥୪॥

**

**

## ଜଗା କାଳିଆ ଜାଗ

### ବୈକୁଣ୍ଠ ନାଥ ବ୍ରହ୍ମଚାରୀ

(ବିଂଶ ଶତାବ୍ଦୀ)

ଜଗାକାଳିଆ ଜାଗ ହେଲା ନ କର
ଭେଳା ବାହୁକୁ ତୁମ ନାଁ ଆ ସୁମର ହେ ସମର ॥୦॥

ବାହୁରେ ଆମର ଦଅ ଅସୀମ ବଳ
ଦେହରେ ଅସୀମ ବଳ
ହସି ହସି ହସାଇବୁ ଅରାତି କୁଳ
ଯାଉ ସେ ଆରପାରେ କା'ଳ ବୋଲି ମୁହଁରେ
ଆମ ସ୍ୱାଧୀନ ଚେଷ୍ଟା ଦେଖି ରଖୁ ସେ ହନ୍ତା
ନୀଳାଚଳ ମହିମା କର ଜାହିର ହେ ଜାହିର ॥୧॥

କାଞ୍ଚି ବିଜୟତ ଯାଇନାହିଁ ପାଶୋର
ଆଜି ସେଇକଥା ଭାବି ଭାରତବୀର
ସାଜିଣ ରଣ ସାଜେ ଶତ୍ରୁ ସଙ୍ଗତେ ଯୁଝେ
ପଠାଇ ସୁଦର୍ଶନ କର ଆଶୀଷ ଦାନ
ଯୁଗେ ଯୁଗେ ଏ ପୁଣ୍ୟଭୂମି ଆମର ହେ ॥୨॥

**

**

## ଚକାଡୋଳା ବସିଛ କିଆଁ ?

ବୈକୁଣ୍ଠ ନାଥ ବ୍ରହ୍ମଚାରୀ

( ବିଂଶ ଶତାବ୍ଦୀ )

ଚକାଡୋଳା ବସିଛ କିଆଁ ହୋଇଣ ଅକା
ଦେଖି ମୋ ଦୁଃଖ ତୁମ୍ଭେ ବନି ଗଲକି ବୋକା ॥ ୦ ॥

ଜନମ କାଳରେ ମୋ କରମ ପତରେ
ଯେଉଁ ଗାର ମାରଅଛ ନିଜ ହାତରେ
ଜାଣେ ମୁଁ ମୋ ଜୀବନ        ସେ ଦିନୁ ହୀନମାନ
କହିଲେ ହେବ କିସ        ସେ ମୋ କରମ ଦୋଷ
ଆନ କରି ଦେବକି ଆଉ ସେ ବିଧି ଲେଖା ॥ ୧ ॥

ରଙ୍କ ଡାକ ବାଙ୍କେ ଯାଉ ନପଶୁ କାନେ
ଶଙ୍କାଚକ୍ରେ ତଥାପି ତ ଜଣାଣ ଭଣେ
ଦୟା ହେବାରୁ ମନେ        ଦେଖା ଚାହେଁ ମୁଁ କ୍ଷଣେ
ରକ୍ଷା ନକଲେ ନାହିଁ        ସଂହାର କରେ ମୁହିଁ
ଅନ୍ତିମରେ ନୋହିବ ପ୍ରଭୁ ମୋ'ଠାରେ ଖପା ॥ ୨ ॥

ଦେଖା ଦିଅ ବା ନଦିଅ ସେ ତୁମ୍ଭ ଦୟା
ରଖାଅ ମନ ଶ୍ରୀପଦେ ତୁଟାଇ ମାୟା
ଚଖାଇ ନାମାମୃତ        ଲଗାଇ ରୂପେ ଚିତ୍ତ
ରଙ୍ଗ ବସ୍ତ୍ର କରି        ଦଙ୍ଗାରୁ ଦେବ ତାରି
ଏଇପାଇଁ ବଇକୁଣ୍ଠ ତୋ' ଚରଣେ ବିକା ॥୩॥

**

**

# ମୋର ଜଣାଣ ଘେନ

## ବୈକୁଣ୍ଠ ନାଥ ବ୍ରହ୍ମଚାରୀ

(ବିଂଶ ଶତାବ୍ଦୀ

ମହାପ୍ରଭୁ ହେ, ମୋର ଜଣାଣ ଘେନ
ମୋ ପରି କେହି ନଥିବେ ଏ ମହୀ
ସବୁଥିରେ ମୋର କରମ ହୀନ ॥ ୦ ॥

ଆହେ ମହାବାହୁ ଘୋର ଦୁଃଖ ସିନ୍ଧୁ
ଟାଳି ଦେଉଛ ମୋ ଧୈର୍ଯ୍ୟ ଟାଣ
ଛନ୍ଦରେ ପକାଇ ବାନ୍ଧି ନେଉଅଛ
କାନ୍ଦି ବୁଲେ ହୋଇ ମୁଁ ହୀନମାନ ॥ ୧ ॥

ସାହାତ କେଉଁଠି ନଦେଖେଇ ଆଉ
ସାହା ତୁମ୍ଭେ ଏକା ହେ ଭଗବାନ !
ତୋ ମହା ମହିମା ପ୍ରକାଶ ମଣିମା,
ମୋହ ପାଇଁ ଥରେ ମହତ ଗୁଣ ॥ ୨ ॥

ଚଉଦିଗ ଦିଶି ଯାଉଛି ଅନ୍ଧାର
ଚରଣ ରେଣୁ କରିଛି ଧ୍ୟାନ
ଟିକା ନୟନରେ ଚକାଅ ହେ ଥରେ
ମୁହୂର୍ତ୍ତିକ ପାଇଁ ତେଜି ମଉନ ॥ ୩ ॥

କାଳ କବଳରୁ ଉଦ୍ଧାର ରଖ ହେ,
ହସ୍ତେ ମୋ କଳଙ୍କ କଳା ବଦନ
କହେ ବଇକୁଣ୍ଠ ନମେଣ୍ଟିଲେ ରଷ୍ଟ
ଜାଣିବ ନିକଟ ହେଲା ମରଣ ॥ ୪ ॥

**

**

# ମହାବାହୁ

## ବୈକୁଣ୍ଠ ନାଥ ବ୍ରହ୍ମଚାରୀ

(ବିଂଶ ଶତାବ୍ଦୀ)

ମହାବାହୁ ! ଯେନା ହେଉ ଏ ଗରିବ ବାରତା,
ଦିନୁ ଦିନ ଦୁଃଖ-ସିନ୍ଧୁ ଦେଲେ ଦୁଷ୍ଟ ଅବସ୍ଥା ।
ହେଲ ବାବୁ ମହାପ୍ରଭୁ ! ନୁହଁ ଆଉ ଅଚନ୍ତା,
ମହତ ମହିମା ଜାଗି ପାଇଁ କର ବ୍ୟବସ୍ଥା ॥ ୧ ॥

ତୁଅ ସାହା ଡଉବାହା ! କରିଛୁ ଭରସା,
ସିହା ନାହିଁ ଆନ କାହିଁ ହୋଇଛୁ ତ ନିଆଶା ।
ନ ଶୁହିଁବ ଯେବେ ତେବେ ଉଜ଼ିଯିବ ମୋ ହଂସା,
ନିନ୍ଦା ରହିବ ଫସାରେ ତୁମ୍ଭ ନାମେ ସହସା ॥ ୨ ॥

ଟେକ ଉଡ଼ାଅ ପତାକା ପତିତଙ୍କ ପାଇଁକ,
ଆଜି ସେ କୃପା କଟାକ୍ଷ ମୋହ ପ୍ରତି ନାହିଁକ ?
କି କାରଣେ ଅକାରଣ ହେଲ ଏବେ ମୁହିଁକ,
ସଦୟ ନହୁଅ ଦୟାମୟ ନାମ ବହିକ ॥ ୩ ॥

ଛଳନା ଛଳନାମୟ ଛନକା ମୁଁ ହେଲିଣି
ଛଦାପଦ ଫନ୍ଦା ଭବ ଗ୍ରନ୍ଥ ଟାଣ କଲଣି ।
ଶୁଣ ବା ନଶୁଣ ପ୍ରଭୁ ମୋ ଅନ୍ତର କାହାଣୀ,
ପିଣ୍ଡ ପରାଣ ମୋ ସବୁ ସମରପି ଦେଲିଣି ॥ ୪ ॥

**

**

# ବସିଛ କାହାକୁ ଚାହିଁ

## ବୈକୁଣ୍ଠ ନାଥ ବ୍ରହ୍ମଚାରୀ

( ବିଂଶ ଶତାବ୍ଦୀ )

ଏକା ହୋଇ ଏକା ବଇଠିରେ ହରି
ବସିଛ କାହାକୁ ଚାହିଁ ?
ରକ୍ଷାକର ରକ୍ଷାକର ବୋଲି ଦାଣ୍ଡେ
ଦୁଃଖିଆ ଦୁଃଖେ ଡାକଇ, ହେନାଥ
ସୁଦର୍ଶନ ଅସ୍ତ୍ରଥାଉଁ ହସ୍ତ, ହେ ନାଥ
ଯେବେ ନଖଣ୍ଡିବ ମୋ ଆରତ, ହେନାଥ
କେମନ୍ତେ ହେବ ଜଗତର ତାତ ? ହେ ନାଥ ॥୧॥

ଏ ଝନଲୋକରେ ଦେଖାଇ ହଳରେ
ପତକା ଦେଇଛ ବାନ୍ଧି,
ସିଂହ ଦ୍ୱାରେ ଡାକ ନଗଣ ପାତକୀ
ଫେରେ ଯେବେ କାନ୍ଦକାନ୍ଦ, ହେ ହରି !
ନୀଳଚକ୍ର ନେତ ଦିଅ ଟେରି, ହେ ହରି,
କାହାପାଇଁ ଏମହିମା ଜାରି, ହେ ହରି,
ଆଉ ରହିବ କି ପ୍ରଭୁଗିରି ? ହେ ହରି ॥୨॥

ଭକତ ନିମନ୍ତେ ଅବତରି ମର୍ତ୍ତ୍ୟେ
ଲଗାଇଛ ନାନାଲୀଳା ।
ଅନୁଗତ ଜନ ଅନୁସରି ପୁଣି
ପାଏ ଯଦି ଅବହେଳା, ହେ ସ୍ୱାମୀ
ନାମ ଭଣାଅ ଅନ୍ତରଯାମୀ, ହେ ସ୍ୱାମୀ,
ନହୋଇବ କି ଏହା ବୋକାମୀ ହେ ସ୍ୱାମୀ,
ଠିକେ ବୁଝ ନକରି ଠକାମୀ ହେ ସ୍ୱାମୀ ॥୩॥

ତୁମ୍ଭେ ଠକପଣେ ବଡ଼ ଧୂର୍ତ୍ତଜଣେ
ଜାଣିଅଛୁ ଆଗୁ ପର
ଗୋପେ କେଉଁ ସେବା ନ ପାଇଲ ଅବା
ଠକଣ ଗଲ ମଥୁରା, ହେ ଖଣ୍ଡ !
ଅଷ୍ଟ ଲମ୍ପଟ ପଣରେ ଶ୍ରେଷ୍ଠ, ହେ ଖଣ୍ଡ,
ମୋତେ ଦେଲେ ଦଅ ଯେତେକଷ୍ଟ, ହେ ଖଣ୍ଡ
ଇଷ୍ଟବୋଲି ଭାବୁଛି ବୈକୁଣ୍ଠ ! ହେ ଖଣ୍ଡ ॥୪॥

**

**

## କାହ୍ନୁଁକି ବଡ଼ ଠାକୁର

### ବୈକୁଣ୍ଠ ନାଥ ବ୍ରହ୍ମଚାରୀ

(ବଂଶ ଶତାଢୀ)

କାହିଁକି ବଡଠାକୁର, ମୋପାଇଁ ହେଲ ପଥର
ବ୍ୟାକୁଳରେ ଡାକ ଲୋକ ଥକଗଲଣି ଏଥର ॥୦॥

ଦୀନବନ୍ଧୁ ପ୍ରଭୁବୋଲି ହେଲହୁଁ ଶରଣ ଗଲି ।
ବସିତ ରହୁଛ ଖାଲି ନଦେଅ ପଦେ ଉତ୍ତର ॥୧॥

ବଡ଼ ସାମନ୍ତ ଶ୍ୱଶୁର ବସିଛୁ ଭରସା କରି ।
ଷପଦେ ହୋଇଣ ଘାରି ନଷ୍ଟକୁ ଝୁରାଏ ମୋର ॥୨॥

ବଳସ୍ତାର ବାହୁଆଉଁ ବଳାଇଲ ଦୁଃଖ-ସନ୍ତୁ ।
ଦେଲଯାଏ ଝୁହୁଁ ଝୁହୁଁ ବେଗେ ତାର ଅବା ମାର ॥୩॥

ବଇକୁଣ୍ଠ ମୂଢ଼ମନ୍ଦ ବନ୍ଦେତୋ ପଦାରବିନ୍ଦ
କଣ୍ଠେକେ ନାହିଁ ଗୋବିନ୍ଦ, ତୁମ୍ଭବିନୁ ଆନମୋର ॥୪॥

**

**

# ମଣିମା ମଣିମା ଗୁହାରି ଶୁଣିମା

## ବୈକୁଣ୍ଠ ନାଥ ବ୍ରହ୍ମଚାରୀ

( ବିଂଶ ଶତାବ୍ଦୀ )

[କୃଷ୍ଣର ଗମନ ଦେଖି ଛନଛନ-ବୃନ୍ଦେ]

ମଣିମା ମଣିମା ଗୁହାରି ଶୁଣିମା
ଯେତେ ହୁରି କଲି ବଡ଼ଲେ ।
ବୁଝି ନବୁଝିଲ, ହେଜି ନ ହେଜିଲ
ସବୁ ଶ୍ରମ ହେଲା ବିଫଳ ।
ମଣିମା ଏହାଥିଲା କି ମୋ କପାଳେ
ଶୁଣି ନଶୁଣିଲ, କାଳପରି ହେଲ
ଘାରିଲ ଖାଲି କଳବଳେ ॥୧॥

ମେଲି ଚକାଆଖି ସବୁ ବ୍ୟଥା ଦେଖି
ନଦେଖିଲା ପରି ବସିଲ ।
ଅନ୍ତର୍ଯାମୀ ନାମ ଭଣାଇ ଆପଣ
ଅନ୍ତର ଜାଣି ନ ଜାଣିଲ ।
ମଣିମା, ଦୁଃଖ ଗାରିମା ନ ଟାଣିଲ ।
ଦୀନଜନ ବନ୍ଧୁ ହୋଇ କୃପାସିନ୍ଧୁ
ଦାଣ୍ଡେ ଦୀନକୁ ଗଡ଼ାଇଲ ॥୨॥

ବଦ୍ଧ ବାହୁଗ୍ରହ ଲଗିଲା କି ଖାଖି
ତଣ୍ଡ କି କଲୁ ଓହ୍ଲାଇଛ ।
ଚରଣ ବ୍ୟଥିତ ହେଲା କିବା ନାଥ
ହତାଶ ହୋଇଣ ବସିଛ ।
ମଣିମା କିମ୍ପା ମୋ ମରମ କଷୁଛ ।
ନ ମଣି ସରମ ମୋପରି ଅଧମ
ସଙ୍ଗେ ଏ ଖେଳୁଣି ରଚୁଛ ॥୩॥

ଖିବିଛି କି ଭ୍ରମେ ତବ ବନେ ଆନେ
କାଳେ କା ଆଶ୍ରସ୍ଥ ଲେଉବ ।
ଧରି ତୁମ୍ଭନାମ ଯାଉ ଏ ଜୀବନ
ତୁମ୍ଭ ପ୍ରେମକୁ ନ ଛୁଡ଼ିବ ।
ମଣିମା, ଦୁଃଖ ପଙ୍କେ ପଛେ ସଢ଼ିବ ।
କହେ ବଇକୁଣ୍ଠ ହେଉ ଯେତେ କଷ୍ଟ
ତୁମ୍ଭ ପାଶେ ରଡ଼ି ଗୁଡ଼ିବ ॥୪॥

**

**

## କାନ୍ଦି କହେ ଗରବ

### ବୈକୁଣ୍ଠ ନାଥ ବ୍ରହ୍ମଚାରୀ

(ବିଂଶ ଶତାବ୍ଦୀ)

ହସନ୍ତେ, କାତରେ କାନ୍ଦ କହେ ଗରବ
ଗରୁଡ଼ ପଛେ ପୁଣି ପନ୍ଥରେ ଯୋଡ଼ି ପାଣି
କୁହନ ତାରବ କି ମାରବ ॥୦॥

ବନ୍ଧୁ ଦାରୁଣ ପଣ, ଦଅ ଯେତେ କଷଣ
କେତେ ଦିନ ଧଇର୍ଯ୍ୟ ଧରିବ,
ତୁମ୍ଭଙ୍କୁ ଆଶ୍ରାକରି ଗରିବ ଗଲାପରି
କେଉଁ କାଳେ ତା ଦୁଃଖ ସରିବ ॥୧॥

ଯେବେ କରମ ବାମ ଆହେ ପୁରୁଷୋତ୍ତମ
ତୋ ନାମେ ଦୋଷ କି ନ ହରତ,
ତୋର ନାମ ମନ୍ତ୍ର ଚନ୍ତେ ଯେ ନିରନ୍ତର
ତାହାଙ୍କୁ କି ଅନ୍ତର କରିବ ? ॥୨॥

ଦୁଃଖୀଜନ ସୋଦର ଆଉଁ ଏ ଜଗତର
ଘୁଚାଇ ଦୁଃଖ ରହୁ କି ଘାରବ,
ଦେଖିଲେ ବସିରହି ଦେଲେ ଚକ ପଠାଇ
ହଟାଇ ତୁରନ୍ତ ଯେ ଫେରବ ॥୩॥

ଜର ଏତେ ଜଣାଣ, ନ ଦେଲେଟି ଶରଣ
ସଦା ନୟନୁ ବାର ଝରବ,
ହର ଧନକୁ ଧନ ତନୁ ହୋଇବ କ୍ଷୀଣ
ତୋ ନାମେ ବଇକୁଣ୍ଠ ମରବ ॥୪॥
✳✳

✳✳

## ମଣିମା ଦୁଃଖ ଶୁଣିଜକି

### ବୈକୁଣ୍ଠ ନାଥ ବ୍ରହ୍ମଚାରୀ

[ ଦଇବ ସାଗଦେବ-ବୃନ୍ଦେ ]

(ବିଂଶ ଶତାବ୍ଦୀ)

ମଣିମା, ଦୁଃଖ ଶୁଣିବକି ନା, ହେ ମଣିମା
ଦୁଃଖୀ କାନ୍ଦେ ଦାଣ୍ଡଦୁଆରେ ଅନା, ହେ ମଣିମା ॥୦॥

ପତିତ ତାରଣ ବାନା ଉଡ଼ାଇ
ପତିତ ଜନେ ମାରୁଛ ଗଡ଼ାଇ ॥୧॥

ଦୀନଜନବନ୍ଧୁ ନାମ ତୁମର
ଦୟା ପଦ କି ଦେଲଣି ପାଶୋର ॥୨॥

ହୃଦୟକୁ ପଥର କରିବ ଯେବେ
କିଏ ଡାକ ମୋର ଶୁଣିବ ଭବେ ।।୩।।

ରଖ ବା ନରଖ କରେ ଜଣାଣ
ବଇକୁଣ୍ଠ ତବ ପାଦେ ଶରଣ ।।୪।।

**

**

## ପଥର ହେଲ କାହିଁକି

### ବୈକୁଣ୍ଠ ନାଥ ବ୍ରହ୍ମଚାରୀ

( ବିଂଶ ଶତାବ୍ଦୀ )

ହେ ପ୍ରଭୁ, ପଥର ହେଲ କାହିଁକି ?
ପଥରେ ଭିକାରୀ ଡାକେ କାନରେ ପଡ଼ୁ ନାହିଁକି ? ।।୦।।

ପତିତପାବନ ବୋଲି ପତାକା ପୂର୍ବରୁ ଖୋଲି,
ପରେଙ୍କ ତା ଗଲ ଭୁଲି ଛପନଭୋଗ ଖାଇକି ।।୧।।

ପରାପର ତୁମ୍ଭ ନାହିଁ ପର ତୁମ୍ଭେ ଅଛ କହି,
ପଣପଣ କରେ ଜଣେ ମୋ ନାମ ଗଣି ନାହିଁକି ? ।।୨।।

ପାଷାଣ ଦେଉଳ ଦ୍ୱାର ପଶେନା କି ପାପୀ ସ୍ୱର,
ପସନ୍ଦ ନ କର କିବା ପରଖ ଦୁଃଖ ଦେଇକି ? ।।୩।।

ପରଶ ପଥର ତୁମ୍ଭେ, ପାତକୀ ମୁଁ ଲୁହା ଯେବେ,
ପ୍ରେମ ପରଶରେ ଏବେ ଦିଅ କଳଙ୍କି ଧୋଇକି ।।୪।।

**

✳✳

# ଜଗନ୍ନାଥ ନାଥ ମୋହର

## ବୈକୁଣ୍ଠ ନାଥ ବ୍ରହ୍ମଚାରୀ

(ବିଂଶ ଶତାବ୍ଦୀ)

ଜଗନ୍ନାଥ ମୋହର
ଜଗତରେ ଜଣେ ମୁହିଁ ତୋହର ॥ ୦ ॥

ତୁମ୍ଭେ ଜଗନ୍ନାଥ କରଲେ ଅନାଥ
ଜଣାଇବ କାହା ଆଗେ ଗୁହାର,
ସରସିବ ସୁଖ ଆହେ ପଦ୍ମମୁଖ
ସାର ହେବ ସିନା ନୟନ ବାର ॥ ୧ ॥

ମୋର ପଞ୍ଚ ପ୍ରାଣ, ଅଟ ତ ଆପଣ
ତୁମ୍ଭ ପାଇଁ ଅଛୁ ଦେହ ଧର,
ତୁମ୍ଭେ କଲେ ପର ହେବ ଘଟାନ୍ତର
ଜୀବନ ଶରୀରୁ ଯିବ ବାହାର ॥ ୨ ॥

ତୁମର ଆଶାରେ, ଏ ମାୟା ସଂସାରେ
ବାର ବାର ଭ୍ରମି ଗଲିଣି ସର,
ଦିଅ ଦରଶନ ପତିତ ପାବନ
ଆକୁଳେ ଡାକୁଛି ମୁଁ ଉଦ୍ଧାର ପାର ॥ ୩ ॥

ଯେବେ ମୁହିଁ ଦୋଷୀ ଆହେ ବ୍ରହ୍ମରାଶି,
ଯେତେ ଦଣ୍ଡ ଦେବ ଦିଅ ବଟୁର,
କହେ ବଇକୁଣ୍ଠ ତୁମ୍ଭେ ତ ମୋ ଇଷ୍ଟ
ଦୁଷ୍ଟ ଚକ୍ଷେ ରଖ ସେବକ କର ॥ ୪ ॥

✳✳

**

# ପଥର ଦେଉଳ ଭିତର ଦେବତା

## ବୈକୁଣ୍ଠ ନାଥ ବ୍ରହ୍ମଚାରୀ

(ବିଂଶ ଶତାବ୍ଦୀ)

ପଥର ଦେଉଳ ଭିତର ଦେବତା
ପଥର ହେଲକି ମୋ ପାଇଁ,
ସତରେ କହୁଛି କାତରରେ ଯେବେ
ଉତ୍ତର ନଦେବ ଗୋସାଇଁ
ନାଥ ହେ ଅନାଥ ଯେବେ ମୁଁ ହୋଇବ
ଜନ ସମାଜରେ ଜଗନ୍ନାଥ ନାମ
କେଉଁ ଲାଜେ ମୁଖେ ଗାଇବ ॥ ୧ ॥

ପାଷାଣ ପରାୟେ କଠିନ ହୃଦୟ
କରି ଯେବେ ତୁମ୍ଭେ ବସିବ,
କଷଣ ଦେଇ ଏ କରକଣ ଦୁଃଖ
ରାହୁ ଆସି ମୋତେ ଗ୍ରାସିବ
ନାଥ ହେ ଏହା କି ସୁନ୍ଦର ଦଶିବ,
ଭକତ ରକ୍ଷଣ ବଦଳରେ ଭକ୍ତ
ମରି ଯାବ ସୃଷ୍ଟି ଘୋଷିବ ॥ ୨ ॥

ଅଶରଣ ଜନେ ଶରଣ ଦେବାକୁ
ଉଡ଼ାଇଛ ଧାର୍ଯ୍ୟ ପତାକା,
ବଳାଇ ସିବ କି ମୋର ଏ ଦୁର୍ଦ୍ଦଶା
ସେ ପାଇଁ ହେଉଛି ଚାଟକା
ନାଥ ହେ, ଚକକୁ କଅଣ୍ଟ ତା ବଳ,
ଆପଣ ମୋ ପାଇଁ ନ ଆସନ୍ତୁ ଧାଇଁ
ବସିଥାନ୍ତୁ ହୋଇ ଅଚଳ ॥ ୩ ॥

ଫଟା କପାଳକୁ ଯେବେ ମୋ ବେଲକୁ
ଚନ୍ଦ ବନ୍ଦ ହେଲ ବୃହସ୍ପତି,
କେତେ କାଳେ ବଳେ ସଲଖ ହୋଇବ
ରେଖାଇ ଅଭସ୍ଥ ଦଅତ
ନାଥ ହେ, ସେ ବେଳକୁ ସ୍ୱର୍ଦ୍ଧି ବସିବ,
କହେ ବଇକୁଣ୍ଠ ଚନ୍ଦ ସହ ଇଷ୍ଟ
ଚନ୍ଦଧର ଉଚ୍ଚେ ରହିବ ॥ ୪ ॥

**

## କମଳା କାନ୍ତକୁ କହେ ଅନ୍ତ କାଳରେ

### ବୈକୁଣ୍ଠ ନାଥ ବ୍ରହ୍ମଚାରୀ

( ବିଂଶ ଶତାବ୍ଦୀ )

କର୍ମହୀନ ଜନ କେନ୍ଦ୍ର କରୁଣ ସ୍ୱରେ
କମଳାକାନ୍ତକୁ କହେ ଅନ୍ତ କାଳରେ ।

ସର ଯାଉଛୁ. ସଂସାର ସୂଆଗେ ପଙ୍କ,
ଗଡ ନକଲେ ଗରବ ମରବ ବୁଡ଼ି ।

ଟାପର ନମଣି ଟିକେ ଟେକ ଅନାଅ,
ଢଳାଙ୍କରେ ଭୁଟି ଯିବ ସନ୍ତାପ ମୋହ ।

କରୁଣା ବୃକ୍ଷ ବୋଲି ଶ୍ରୁତିରେ ଶୁଣିଥିଲି
ମହାପ୍ରଭୁ ହେ···ମହାପ୍ରଭୁ ହେ
ଫଳାଅ କରୁଣା ଫଳ ମୋ ପାଇଁ ଥରେ
ସେ ରସ ଆସ୍ୱାଦେ କ୍ଲାନ୍ତ ହଟିବ ଦୂରେ ॥୧॥

ଯେତେ ପାତକୀ ଅଛନ୍ତି ଏ ଧରାଧାମେ,
କୋଟି କୋଟିକରେ ଶ୍ରେଷ୍ଠ ଅଟେ ମୁଁ ଜଣେ
ନସ୍ତାରବ କ ନା ସତ କୁହନ୍ତ ମୋତେ
ପତିତପାବନ ନାମ ଯିବ ପରତେ ।

ଯେବେ ଅଛ ସେ ପଣ ନୋହୁ କୃପଣ ପଣ
ମହାପ୍ରଭୁ ହେ···ମହାପ୍ରଭୁ ହେ
ଢାଳ ଦଅ ଢାଳେ କୃପା ସଲଳ ଶିରେ
ସେବକେ ସାବ୍ୟସ୍ତ କର ପଦ-ତୀର୍ଥରେ । ॥୨॥

ହେଲାଣ ହୋଇଲେ ହେବ କାହିଁତ ଭଲ,
ଦଣ୍ଡକେ ଦାଣ୍ଡେ ବାଜବ ଦୁର୍ନାମ ଢୋଲ ।

କାମନା କଳପତରୁ କାହିଁକ ଆଉ
କଷିଛ କଷଣେ, କେତେ ସାଧିବ ଦାଉ ?

ପୂଣ୍ୟ ବା ନର୍କକୁଣ୍ଡେ ପକାଇ ଦଅ ଦଣ୍ଡେ
ମହାପ୍ରଭୁହେ···ମହାପ୍ରଭୁହେ
ସାରସ୍ୱତ ଶୀଘ୍ର ସାର ତୋ ସ୍ୱଚ୍ଛନ୍ଦରେ
ସରଯାଉ ବଇକୁଣ୍ଠ ମନବାଞ୍ଛାରେ ॥୩॥

**

**

# ପାଶୋର ଦେଲକ ହର

## ବୈକୁଣ୍ଠ ନାଥ ବ୍ରହ୍ମଚାରୀ

(ମହିମା ଶୁଣିବା ହେଉ ଗରବ ଡାକ-ବୃନ୍ଦେ)

( ବଂଶ ଶତାବ୍ଦୀ )

ପାଶୋର ଦେଲକ ହର, ଗରବ କଥା
ଦ୍ଵାବାନଶୀ ଗାଏ ବସି ତୁମର ଗାଥା, ହେ ହର
ତୁମର ଗାଥା ।।୦।।

ଗୁଡ଼ି ସକଳ ଭରସା ତୁମ୍ଭନାମେ କଲି ଆଶ୍ରା
ନରଖିଲେ ଆନକେହୁ ନାହିଁ ରଖନ୍ତା ।।୧।।

ତୁହେଁ ବୋଲି ଭକତ ଯେବେ କରବ ଅନାଥ
ଜଗତନାଥ ବୋଲି କେ କରବ ଚନ୍ତା ତୁମ୍ଭକୁ ।।୨।।

ଆହେ ପତତପାବନ, ସର୍ବେ ତୁମ୍ଭର ସମାନ
ମୋ ପାଇଁ କ ତୁହୁଁ ଭିନ୍ନ ଅଛ ବ୍ୟବସ୍ଥା ।।୩।।

ହେଲେ ମୁଁ ପାପୀ ପାମର ତୁମ୍ଭେ ମୋ କ୍ଷମା ସାଗର
କ୍ଷଣେ ଗ୍ଚହିଁଦେଲେ ଦୁଷ୍ଟ ସୁଷ୍ଟେ ରହନ୍ତା ।।୪।।

ଶୁଣ ନଶୁଣ ଆପଣ ଜଣାଇବା ମୋ ପ୍ରମାଣ
କେ ଜାଣିବ ବଇକୁଣ୍ଠ ଅନ୍ତର ବ୍ୟଥା ।।୫।।
ହେହର, ଆନ୍ତର ବ୍ୟଥା

**

**

# ତୁମେ କେଡ଼େ ସୁନ୍ଦର

## ଶ୍ରୀମତୀ ହରପ୍ରିୟା ଦେବୀ

(ବିଂଶ ଶତାବ୍ଦୀ)

ଜଗନ୍ନାଥ ହେ ତୁମେ କେଡ଼େ ସୁନ୍ଦର
କଳାଧଳା ମୁଖ ଭଗିନୀ ଶୁଭଦ୍ରା
ନୀଳାଚଳେ ଲଗାଇଛ ସୁନ୍ଦର ॥୧॥

ପଣ୍ଡା ପଢ଼ିଆରୀ ଛତୁଆ ନିଯୋଗୀ
ଛପନ ପଙ୍କ୍ତି ଭୋଗ ହୁଏ ଲାଗି
ରାଜା ଠାରୁ ବଳୀ ମହାରାଜା ତୁମେ
ଖଟୁଛନ୍ତି ଯେ ପଦେ ଧନକୁବେର ॥୨॥

ଦାରୁ ବ୍ରହ୍ମ ରୂପେ ଅଟଳ ଅଚଳ
ଆଦି ଅନ୍ତ ନାହିଁ ଅଭିନବ ଖେଳ
କେ ବୁଝିବ ନାଥ ମରମ ତୁମର
ବଟଣ କରମା ନାମ ତୁମର ॥୩॥

ନୟନାଭିରାମ ନବ କଳେବର
ନବ ଯଉବନ ବେଶ ମନୋହର
ପାଟ ଡୋରି ବନ୍ଧା ପହଣ୍ଡି ବଳେକୁ
ଦେଖିବାକୁ ରୁଣ୍ଡ ସାରା ସଂସାର ॥୪॥

**

**

# ଅନାଥର ନାଥ


## ଶ୍ରୀମତୀ ହରପ୍ରିୟା ଦେବୀ

(ବିଂଶ ଶତାବ୍ଦୀ)


ଶରଣାଗତଙ୍କୁ ହରି ନ କଲେ ପାର
          ସରିତ ଗଲାଣି ସବୁ ନୟନ ବାରି ॥୦॥
          କପଟ ହେ ଦେବରାଜ
               ଉଡ଼ିବ କରତି ଧ୍ୱଜ
ଆଶ୍ରିତ ଜନରେ ନାଥ କଲେ ଏପରି ॥୧॥

          ଛନ୍ଦା ଚରଣରୁ ତଳେ
          ବଂଧା ଯେହ୍ନୁ କାଲେ କାଲେ
          ସେ ପୂର୍ଣ୍ଣି ହୋଇଲା ଯଦ୍ଦ ପଥ ଭିକାରି ॥୨॥

ଚକା ଡୋଳା ମହାବାହୁ
ବୁଡ଼ିଯାଏ ଗ୍ଲହ୍ନୁଁ ଗ୍ଲହ୍ନୁଁ
ଅନାଥର ନାଥ ନଶୁଣିଲ ଗୁହାରି ॥୩॥

**

**

# ଶୁଣ ମୋର ଆରତି

## ଶ୍ରୀମତୀ ହରପ୍ରିୟା ଦେବୀ

(ବିଂଶ ଶତାବ୍ଦୀ)

ଶୁଣ ମୋର ଆରତି ଭାରତୀ ପତି ହେ
                    କ୍ଷୀର ସିନ୍ଧୁ ବିହାରୀ
ଅନାଥ ଜନ ବନ୍ଧୁ ଅଗତି ଗତି ହେ
                    ନାରାୟଣ ଶ୍ରୀ ହରି ॥୦॥

ପତିତପାବନକୁ ଉଡ଼ାଅ ବାନା
ପୀଡ଼ିତ ମନ ବୁଝି ହର ବେଦନା
ଦୟା ସାଗର ନାଥ ଫେଡ଼ ଦୁରିତ ହେ
                    ପ୍ରଭୁ କରୁଣାକର ॥୧॥
ନୀଳଗିରି କନ୍ଦର ବାସୀ ଦେବ ହେ
                    ଚରଣେ ଦିଅ ସ୍ଥାନ ଦୁଃଖୀରେ ଠାବ
ଚକା ନୟନ ଚକା ଡୋଳା
                    ହେ ଜଗନ୍ମଲା ଭବ ଭେଳା କାଣ୍ଡାରୀ ॥୨॥

**

**

# ଚକାନୟନକୁ ଭଜ

**ବାଞ୍ଛାନିଧି ଦାସ**

( ବିଂଶ ଶତାବ୍ଦୀ )

ଚକା ନୟନକୁ ଭଜରେ ମନୁଆଁ
ଚକା ନୟନକୁ ଭଜ
ଦକା ଦାଉ ଧକ୍କା ସବୁ ଉଭାଇବ
ସାଙ୍କୁରୁ ତୁ ଦ୍ୱିଜରାଜ ।। ଘୋଷା ।।

କଳା ଶ୍ରୀ ମୁଖକୁ ଡ଼କାଇ ରହ୍ବୁ
ମନ କାଳିମାକୁ ତେଜ
କମଳା ସାଇଁ ସେ ନାହିଁକି ଏଇଠି
ନିଜ ଦେଉଳରେ ଖୋଜ
ପଞ୍ଚ ପ୍ରଦୀପ ତୁ ପ୍ରାଣେ ଜାଳୁଥିଲେ
ନାଚିତ ପଦ୍ମଲ ରଜ
ଚକା ନୟନକୁ ଭଜ ।। ୧ ।।

ସେ ସୁଖ ସରଗ ଦେଖାଣିଆଁ ନୁହେଁ
ଭାବ ଭକତିର ବୀଜ
ଟଙ୍କା କଉଡ଼ିରେ କଣିବାର ନୁହେଁ
ତା' ପ୍ରୀତି ଶରଧା ଚଜ
କଣିକାଏ ତହୁଁ କୈବଲ୍ୟ ଅସରା
ଯେତେ ଇଚ୍ଛା ମନ ଭୁଞ୍ଜ ।। ୨ ।।

ମଲ୍ଲିଲେ ମିଳେ ସେ ମଂଜୁଳ ମୋହନ
ତା' ଭାବେ ତୁ ମନ ମଜ୍ଜ
ଦେଖ୍ ସେ ଜଗତ ବାଞ୍ଛା କଳ୍ପବଟ
ଜଗତ ନାଥ ତା' ମାଞ୍ଜ
ଚତା ଚଇତନ ଲୋଡ଼ା ନାହିଁ ଧନ
ହୃଦ ପଦ୍ମେ ତାଙ୍କୁ ସାଜ ॥ ୩ ॥

**

**

## ଭକ୍ତଭରେ ତୋଳ ଦିଅ ଚଉକୁ

**ବାଞ୍ଛାନିଧି ଦାସ**

(ବିଂଶ ଶତାବ୍ଦୀ)

ଜଗନ୍ନାଥଙ୍କୁ
ଭକ୍ତଭରେ ତୋଳଦିଅ ଚଉକୁ
ଭକ୍ତ ଭବବାଞ୍ଛା ଚିନ୍ତାମଣି ସେତ
ବସଳେ ଜଗତ ହିତକୁ ॥ଘୋଷା ॥

ଫର ଫର ଉଡେ ନୀଳଚକ୍ରେ ଅନା
ପତିତପାବନ ନେତକୁ
ଅନାଥର ନାଥ ଅନ୍ତର୍ଯ୍ୟାମୀ ନାଥେ
ଢଅ ତୋର ମନୋରଥକୁ ॥ ୧ ॥

ଚକାନୟନ ସେ ସବୁଠି ତା ଆଖି
ନ ତେଜେ ଶରଣାଗତକୁ
ଯେ ଦେଖେ ଯେ ଭାବେ ସେ ଭାବେ ସେ ଉଭା
ଆଦର ସବୁର ମତକୁ ॥ ୨ ॥

ଧଳାକଳା ବେଳ ଭାଇ ମଧ୍ୟେ ଅନା
ସୁଭଦ୍ରା ଭଗିନୀ ସାଥକୁ
ଭ୍ରାତୃ ଭାବେ ବାନ୍ଧେ ନିଖିଳ ଭୁବନ
ଦରଶାଇ ଭବ୍ୟ ପଥକୁ ॥ ୩ ॥

ନାହିଁ ଜାତି ବର୍ଣ୍ଣ ଧର୍ମର ବିଗ୍ଭର
ତା' ମହା ପ୍ରସାଦ ଭାତକୁ
ମର୍ତ୍ତ୍ୟ ବଇକୁଣ୍ଠ ତା' ଶ୍ରୀ କ୍ଷେତ୍ର ଧାମ
ଟାଣି ଆଣେ ସାଧୁ ସନ୍ଥକୁ ॥୪॥

ଶବର ରାଜାର ହୃଦୟ ନିଧି ସେ
ଦାରୁ ବ୍ରହ୍ମ ଭବ ହିତକୁ
ରାଜା ଇନ୍ଦ୍ର ଦ୍ୟୁମ୍ନ ଭାବେ ଶ୍ରୀ ମନ୍ଦିରେ
ରଥେ ସେ ଗୁଣ୍ଡିଚ୍ଚା ଯାତକୁ ॥୫॥
**

**

## ବଡ଼ ଦେଉଳରୁ ପହଣ୍ଡି ବିଜେ

**ବାଞ୍ଛାନିଧି ଦାସ**

(ପଲ୍ଲୀସ୍ୱର)

(ବିଂଶ ଶତାବ୍ଦୀ)

ବଡ ଦେଉଳରୁ ପହଣ୍ଡି ବିଜେ ଲେ
କୃପାମୟ ଚକା ଆଖି
ଭକତ ଜଳରେ ଜଡ ସଡ କୋଟି
ନୟନ ରହିଛି ଲାଖିଲେ
ସିନ୍ଧୁ ଚହଲ ସର
ଯାଏ ଜନ କୋଳାହଳ ଭରଲେ ॥୧॥

ମହୋଦଧି କବା ମାଡ଼ି ଆସୁ ଛନ୍ତି ଲୋ
ବଡ଼ ଦାଣ୍ଡ ଉଠେ ଭରି
ଡାଳି ମାରିଦେଲେ ଥାଳି ସ୍ଥଳି ଯିବ
ମୁଣ୍ଡ ମାଳ ଢେଉ ସରିଲେ
ବାଜେ ଶଙ୍ଖ କାହାଳୀ
ନାନା ବାଇଦ ପଡ଼େ ଉଚ୍ଛୁଳି ଲୋ ॥୨॥

ଗଜପତି ଛେରା ପହଁରା କରନ୍ତି
ରଥେ ବିଜେ ଚକାଡୋଳା
ଶବରୀ ହାତର ଚଖା ଫଳଖିଆ
ଭକତ-ସରାଗେ ଭୋଳା ଲୋ
ଯା'ର ସମ ଦେଖର
ରଜା ପରଜା ସଭିଙ୍କ ଠାରେ ଲୋ ॥୩॥

କାଞ୍ଚି-ଅଭିଯାନେ ଉତ୍କଳ ଭୂଇଁରେ
ଗଉରବ ରକ୍ଷୀ ସେନା
ପୁରୁଷ ଉତ୍ତମ ଭକତରେ ବଂଧା
କଳାଧଳା ଘୋଡ଼ା ଘେନା ହେ
ତୋଳି ଜୟ ପତାକା
କଲ ଏ ମାଟି ମହତ ରକ୍ଷା ଲୋ ॥୪॥

ବଣର ଶବର ଦୁହିତା ପ୍ରେମରେ
ବ୍ରାହ୍ମଣ ତନୟ ବଂଧା
ତୋଷ ଲଭେ ଯେହ୍ନୁ ପାଇ ତାଙ୍କ ହାତୁ
ମହା ପରସାଦ ରନ୍ଧା ଲୋ
ଦ୍ୱିଜ ଚଣ୍ଡାଳ ଜ୍ଞାନ
ନାହିଁ ଶ୍ରୀ କ୍ଷେତ୍ରେ ସବୁ ସମାନ ଲୋ ॥୫॥

ସରଳ ହୃଦୟୁ ଦାସିଆ ବାଉରି
ହାତରୁ ଶ୍ରୀ ଫଳ ତୋଳି
ଘେନଗଲେ ଯେହ୍ନୁ କାଳ କାଳ ଲାଗି
ଲୋକ ମୁଖେ ରଖି ବୋଲଲୋ
ଦୀନ ପଣ୍ଡତ ବଂଧୁ
ଭେଦ ତିମିର ନାଶନ ଇନ୍ଦୁ ଲୋ ।।୬।।

ବ୍ରାହ୍ମଣ ଚଣ୍ଡାଳ ଭେଦ ବିନାଶନ
ସାମ୍ୟ ମୈତ୍ରୀ ଛତ୍ରଧର
ଯୁଗେ ଯୁଗେ ଯା'ର ଶ୍ରୀ କ୍ଷେତ୍ର ମହତ୍ତ୍ୱ
ଧର୍ମ ମାଣିକ୍ୟ ପସରା ଲୋ
ଦ୍ୱିଜ ପ୍ରସାଦ ହାତ
ଖାଏ ଚଣ୍ଡାଳ ହାତରୁ ଖାତ ଲୋ ।।୭।।

ବଡଦାଣ୍ଡେ ବଁଛରଥେ ବଜେ ନଜେ
ବଡେ ସାନେ ସମଦୃଷ୍ଟି
ଯୁଗଳ ନୟନ କମଳରୁ ହେଉ
ଶୁଭ ମଧୁଧାରା ବୃଷ୍ଟିଲୋ
ଯାର ଭକ୍ତୁ ପୀରତି
ଜାଗୁ ମାନବେ ମାନବ ପ୍ରୀତି ଲୋ ।।୮।।

**

**

# ଚକାଆଖି

**ବାଞ୍ଛାନିଧି ଦାସ**

(ବିଂଶ ଶତାବ୍ଦୀ)

ଚକା ଆଖି
ଏକା ହୋଇ ରହିଲ କାହିଁକି ?
ଡକା ପଡ଼ିଅଛି ସାରା ଦୁନିଆ ଗୋଟାକ ପରି
କାନେ ସୁହାଉ ବାଜେ ନାହିଁକି ॥ଘୋଷା॥

ଟେକା ଟେକି ଗୀତ ଶୁଣି ଯାଅନା ଭାସି
ଧକାତର ଦୁନିଆ ସର ଗଲାଣି ଆସି
ଶଙ୍କା ଆସୁଛି ଛୁଇ
ରକ୍ଷା ନ ଦିଶେ କାହିଁ
ଠକା ଠକି ବେଭାର
ଠାକୁରେ ନ ଆଚର
ଠିକ ବେଳ ଏବେ ଗଲା ହୋଇ କି ॥୧॥

ବଡ଼ ଦେଉଳେ ଘୁମାଇ ପଡ଼ନା ଆଉ
ବଡ଼ ବିଷମ ହେଲାଣି ମନେଷ ଦାଉ
ବଢ଼ି ସ୍କୁଲେ ଅନୀତି
ସଢ଼ି ଗଲାଣି କ୍ଷିତି
ରଙ୍ଗ ଢଙ୍ଗେ ଦୁନିଆ
ଢଙ୍ଗ ବଡ଼ ପଣିଆ
ଗଢ଼ ପୁଣି ଏ ସୁନ୍ଦର ମସ୍ତିକ ॥୨॥

ଖଳ ବଳ ଦଳ ସାଧୁ ପାଳିବା ପାଇଁ ।
ବେଳ କାଳ ଜଣ୍ଟି କାଳେ ଆସିଛ ଧାଇଁ
ଧରୁ ତୁ କେତେ ରୂପ
ହାରୁ ଧରା ସନ୍ତାପ ।
କୁରୁ ପାଣ୍ଡବ ରଣେ,
ପାର୍ଥ ସାରଥୀ ପଣେ
କଥା ପଦେ ମନେ ପଡେ ନାହିଁକି ॥୪॥

**

**

## ବଡ଼ ଦେଉଳ ସାମନ୍ତ ଚରଣେ

### ବାଞ୍ଛାନିଧି ଦାସ

(ବିଂଶ ଶତାବ୍ଦୀ)

ବଡ଼ ଦେଉଳ ସାମନ୍ତ ଚରଣେ ।
ବଡ଼ ଗରବ ଯେ ଗୁହାରି ଭଣେ
ବଡ଼ାଇ କହୁଲେ ନ ସରେ ତୋର
ବୁଡ଼ାଇ ଦେଇଛୁ ଭେଳାକୁ ମୋର
ବଡ଼ ଟକା ତୋଳା ଧର ହେ
ବୁଡ଼ି ମରିବାର ସାର ହେଲା ମୋର
ବଡ଼ ଦର୍ପ ଆଶ୍ରା କର ହେ ॥୧॥

ବଡ଼ ଲୋକ ଛଇ ଲୋକ ଦେଖାକୁ
ବଡ଼ ମାନିଲେ କପାଳ ଲେଖାକୁ
ବଡ଼ ସାଇଁ ନାମ ବନ୍ଧୁ କପାଇଁ
ବଡ଼ ଦେଉଳରେ ନେତ ଉଡ଼ାଇ,
ବଡ଼ ଆଶା ଦେଇ ମନେ ହେ
ବଡ଼ ଦାଣ୍ଡ ଧୂଳି ପରେ ଡାକି ହାକି
ଗଡ଼ାଇ ଦେଉଛ ଜନେ ହେ ॥୨॥

ବଡ଼ ତୋଷାମଦୀ ଲୋକ ଯେତେକେ
ବଡ଼ ଦାଅଁ ବୋଲି କରି କି ଠେକ
ବଡ଼ ଲୋକ ପାଖେ ଉତ୍ତର ନାହିଁ
ବଡ଼ିମା ଘୋଷନ୍ତି ତୋର ସେ ପାଇଁ
ବଡ଼ଭୟେ ଡରିମରି ହେ
ବଡ଼ ଆରୁଣିଆ ଡକା ଗ୍ରୁଡ଼ୁହନ୍ତି
ବଡ଼ ଠେକା କରି ହେ ॥୩॥

ବଡ଼ କରତା ବୋଲଉ ଜଗତେ
ବଡ଼ ବିଚକ୍ଷ କି ତୋହ୍ମ ଅଗ୍ରତେ
ବଡ଼ ସବୁ ସିନା ଦୁନିଆ ଜନେ
ବଡ଼ ବୋଲି ନ ବିସ୍ମରେ ମୁଁ ମନେ
ବଡ଼ ରୋଷ ଆସେ ମନେ ହେ
ବଡ଼ ଆଗ୍ରମରେ ବସି ନାଟ ଦେଖି
ଛଟ ପଟ କରି ଜନେ ହେ ॥୪॥

ବଡ଼ ପ୍ରିୟ ଯେହୁ ତାଙ୍କୁ ତାରିଲୁ
ବଡ଼ ଅପ୍ରିୟ ଯେ ତାଙ୍କୁ ଦଳିଲୁ
ବଡ଼ ଅଧିକାର ଥାଏ ଯାହାର
ବଡ଼ କରଇ ସେ ବଡ଼ ବେଭାର
ବଡ଼ କଥା କସ ହେଲା ହେ
ବଡ଼ ଧନପତି କୁବେର ଯଦବା
ରତନ ଆଞ୍ଜୁଳା ଦେଲା ହେ ॥୫॥

ବଡ଼ ବଡ଼ ନାମ ଦେବାକୁ ତୋରେ
ବଡ଼ ବ୍ୟଥା ଆସେ ମୋହ ମନରେ
ବଡ଼ ଆପଣାର ମଣେ ଯେ' ଯାକୁ
ବଡ଼ ପର ମଣି ଯେବେ ସେ ତା'କୁ
ବଡ଼ ବଧିର ସାଜଇ ହେ
ବଡ଼ ଅଚମ୍ବିତେ ବୁଡ଼ଇ ମନ ମୋ
ଆଦର ବୁଝି ହଜଇ ହେ ॥୬॥

ବଡ଼ ହୋଇଗଲେ ଏମନ୍ତ ଖ୍ୱବ
ବଡ଼ ପଣେ ଭଲ କହ କି ଲଭ
ବଡ଼ ଦୁଃଖୀ ଡାକେ ଡେର ଶ୍ରବଣ
ବଡ଼ ଜନ୍ଦା ହେବ ଚକା ନୟନ
ବଡ଼ ସଙ୍କଟରେ ପଡ଼ି ହେ
ବଡ଼ ପାଟି କରି ଡାକଇ ତୋରେ ମୁଁ !
ଅନ୍ତର ଯାଏ ମୋ ସଢ଼ି ହେ ॥୭॥

ବଡ଼ ଆପଣାର ଅଟେ ଯେ ଯା'ର
ବଡ଼ ଦୁଃଖେ ଅଭିମାନ ମୁଖର
ବଡ କଡ଼ା କରି କହେ ଯେସନ
ବଡ଼ ଦଏଁ ମୋହ ଭାଷା ତେସନ
ବଡ଼ ଦୂର ହୋଇ ଶୁଣ ହେ
ବଡ଼ ଦୁଃଖି ଡାକେ ବାଞ୍ଛା କଳ୍ପତରୁ !
ତା' କଥାକୁ ଦିଅ କାନ ହେ ॥୮॥

**

**

# ଚକା ଆଖି

## ଗୋବର୍ଦ୍ଧନ ମହାନ୍ତି

(ବିଂଶ ଶତାବ୍ଦୀ)

[ରାଗ-ଖେମଟା]

ଚକା ଆଖି
ମୋ କଥା ମନେପଡ଼ୁ ନାହିଁକି ?
ପତିତପାବନ ବାନା ଉଡ଼େ ଦୂରେ କାହିଁକି ॥ଘୋଷା॥

ଅଗାଧ ଜଳରେ ଗଜ
ଡାକିଲା ହେ ଦେବରାଜ
ପାଞ୍ଚାଳି ବିକଳ ବାଣୀ
କାନ ଡେରିଅଛ ଶୁଣି
ନାହିଁକି ଶ୍ରୁତି ଆତୁର ମୋ କନ୍ଦନ ପାଇଁକି ॥୧॥

ଶିରେ ଶିଖୀ ପୁଚ୍ଛ ଚୂଡ଼ା
ଗଳେ ଶୋଭେ ପୀତଧଡ଼ା
ହୃଦରେ ଦସ୍ତୁଣା ମାଳୀ
ଲମ୍ବୁଅଛି କେଶ କେଶ
ମୁଁ ଡାକୁଛି ରଖରଖ କାନେ ଶୁଭୁ ନାହିଁକି ॥୨॥

ଅଘା ବକା କେଶୀ କଂସ
ସମୂଳେ କଲ ବିନାଶ
ରାମରୂପେ ଅବତରି
ତାରିଲ ଗୌତମ ନାରୀ
ଶେଷେ ଖାଇ ପକାଇଲ ମାଣିକର ଦହିକି ॥୩॥

**

**

# ବନ୍ଦେ ଜଗବନ୍ଧୁ

## ଶ୍ରୀ ଗୋକୁଳାନନ୍ଦ ମହାନ୍ତ

(ବିଂଶ ଶତାବ୍ଦୀ)

କେ କହେ ଅଚ୍ଛବ ସ୍ଥାନରେ ବାଇମନ
କେ କହେ ଅଚ୍ଛବ ସ୍ଥାନ
ଯାହାଲାଗି ଦାଣ୍ଡ ବନେ ଜଗବନ୍ଧୁ
ତେଜି ରତ୍ନ ସିଂହାସନରେ ବାଇମନ ।।ଘୋଷା।।

ବଡ଼ ଜାତି ବୋଲି ଯେତେ ପାପକର୍ମ
କଲେ ହେଲେ ଖାଲୁ ସଦ୍ଭବ ଧରମ
ଠାକୁରଙ୍କୁ ଖାଲୁ ଡୋକଣା ଗୋଲାମ
ସେତ ପତିତପାବନ ରେ ।।୧।।

ତୋ ଦେହେ ବହୁଛୁ ଯେ ଶୋଣିତ ଧାର
ବହୁ ନାହିଁ କରେ ପିଣ୍ଡରେ ତାହାର ?
ସେକ ଗଜମୃଗ ପଶୁରୁ ଅସାର
ନାହିଁ କି ତା'ର ଜୀବନ ରେ ।।୨।।

ଇନ୍ଦ୍ରଦ୍ୟୁମ୍ନ-ରାଣୀ ପାଟ ମହାଦେଈ
ଗୁଣ୍ଡିଚ୍ଚ ସୁନ୍ଦରୀ ଏ ଯାତ ଭିଆଇ
ଅଚ୍ଛବ କଲ୍ୟାଣେ ଦେଖାଇଲେ ଥୋଇ
ରଥରେ ଚକାନୟନ ରେ ।।୩।।

**

**

# ଗୁହାଁରେ ପତିତଜନ


## ଶ୍ରୀ ଗୋକୁଳାନନ୍ଦ ମହାନ୍ତି

( ବିଂଶ ଶତାବ୍ଦୀ )


ଗୁହାଁରେ ପତିତଜନ ପତିତପାବନଙ୍କୁ
ଓଡ଼ିଆ ଗରବଧନ ଜାତି ସନମାନକୁ ॥୧॥

ଆଗେ ଚଳେ ତାଳଧ୍ୱଜ
ଯେଉଁ ଠାକୁର ଅଗ୍ରଜ
ବିତରେ ଅଭୟ ବର
(ସେ) ଦୀନ ଦୁଃଖୀ ଜନଙ୍କୁ ॥୨॥

ମଝିରେ ଦର୍ପ ଦଳନ
ଯେଉଁ ଭଗିନୀ ରତନ
କହେ ତେଜ ଧନ ଜନ
ତୁଚ୍ଛ ଅଭିମାନକୁ ॥୩॥

ପଛେ ନନ୍ଦଘୋଷ ଧୀରେ
ଚଳେ ମତଙ୍ଗ ଗତିରେ
ଯେଉଁଚକା କଂଜଦଳା
ମଦନ ମୋହନଙ୍କୁ ॥୪॥

ଗଳେ ଦୋଳେ ମଣିମାଳା
ନୟନେ ବିଜୁଳି ଖେଳା
ମକର କୁଣ୍ଡଳ ଗଣ୍ଡ
କସ୍ୱଠ ମଣ୍ଡନକୁ ॥୪॥

ନିଖିଳ ଜଗତଜନ
ଭେଦାଭେଦ ବିନାଶନ
ଅନାଥର ନାଥ...
ଜଗନ୍ନାଥ ଭଗବାନକୁ ॥୫॥
***

**

# କଳା ଶ୍ରୀମୁଖ ଜଣାଣ


## ଶ୍ରୀ ନରହରି ଉପାଧ୍ୟାୟ


(ବିଂଶ ଶତାବ୍ଦୀ)

'କ'

କଳି କାଳେ କଳାମୁହାଁ     ବସିଛ ନୀଳ ଶଇଳେ
କମଳାଙ୍କୁ କରଛଡ଼ା     କରି ଭାଇ ଭଗ୍ନୀ ମେଳେ ।।ପଦ।।

କନକ ଆସ୍ଥାନ ମାଡ଼ି     କମରେ କାଛେଣୀ ଭିଡ଼ି
କଣ୍ଠେ କୋକନଦ ହାର     କରରେ ଦସ୍ତୁଣା ଦୋଳେ ।।୧।।

କଇବଲ୍ୟ ଦାତା ବୋଲି     ବସିଛୁ ବଜାର ମେଲି
କିଣିବାକୁ କଡ଼ା ନାସ୍ତି     କିଣିବାଏ ମନ ବଳେ ।।୨।।

କଷଣ ହରତା ହୋଇ     କଷଣ ଫେଡ଼ିଲ ନାହିଁ
କର୍ଣ୍ଣି ମୁଦିଲ ଗୋସାଇଁ     କାତରେ ଡାକିଲି ବେଳେ ।।୩।।

କାଳେକେ କଉରବ ଅଳି     କବା ଅଳି ଅଉଦଳି
କଂସା କବାଟ ପକାଇ     କାନଉ ବଡ଼ ଦେଉଳେ ।।୪।।

କଉସ୍ତୁଭ ମଣିଧର     ନରହରି ତୋ କିଙ୍କର
କରଛି ସମ୍ବଳ ପଦ     କମଳକୁ କାଳେ କାଳେ ।।୫।।

'ଖ'

ଖାଣ୍ଡିଆକୁ ଖାଉନ୍ଦ ଚହ୍ନେ
ଖଞ୍ଜାଖିଆ ଧନେ ନ ପଡ଼େ ମନେ
ଖାଣ୍ଡି ଉଣ୍ଡି ଉଣ୍ଡି ଗଣ୍ଡି ଝଡ଼ିଲଣି
ଖାଇବାରେ ପେଟ ନ ପୂରେ ଧନେ ॥ପଦ॥

ଖିଆଲିଆ ଦେଖୁଛୁ ହଟ ଖଟି ଖଟି ହେଲ କମଠ
ଖଲ ହାତେ ଚୁଟି ଦେଇ ପିଟାଉଛୁ
ଖାମଖିଆଲିଆ ଅନ୍ଧ ବନ୍ଧନେ ॥୧॥

ଖପା ସତେ ଯେବେ ଗୋସାଇଁ ଖସାଇ ଜନଅ ଜପାଇଁ
ଖେଦ ଉଦଧିରେ ଭାସି ଯାଉଅଛୁ
ଖୁସି ଲାଗୁଛୁକ ଦେଖି ନୟନେ ॥୨॥

ଖାସା ବଡ଼ଲୋକ ବସ୍ତୁର ଖିସ୍ସାରେ ଭରେ ଉଦର
ଖଟିଖିଆ ନରହରର ଗୁହାରି
ଖୁଞ୍ଚା ମାରିଲେବ ନଗଲେ କାନେ ॥୩॥

'ଗ'

ଗରୁଡ଼ ପଛରେ ରହି ଗରବ ଜଣେ
ଗରୁଡ଼ଧ୍ୱଜ ଛାମୁରେ ଗୁହାରି ଭଣେ ॥ପଦ॥

ଗଣ୍ଡଣା କେତେ ଆଉ ସହିବ ମହାବାହୁ
ଗଡ଼ି ଗଲିଛୁ ଧନ ଗତ ହେଉଛୁ ଆୟୁ
ଗରହିତ ମାଡ ବଢ଼ ବାଧେ ପଗ୍ରଣେ ॥୧॥

ଗାଣିମା ଗଳ୍ପ କାହିଁ ମୋ ବେଳକୁ ଗୋସାଇଁ
ଗରଦାତା ସାଜିଲ ବରଦାତା ବୋଲାଇ
ଗଣିକା ତ ଗ୍ରାହ୍ମାନାଣି କବା କାରଣେ ।।୨।।

ଗୋପେ ଗୋବର୍ଦ୍ଧନ ଗିରି ଟେକି ସେଦିନ
ଗଞ୍ଜି ଇନ୍ଦ୍ର ଗରବ ଗୌରବ ଅରଜନ
ଗନ୍ତାଘର ଲୁଛି ଦେଲ ଗଣ୍ଠିଆ ପଣେ ।।୩।।

ଗିରିରୁ ଗୁରୁତର କବା ମୋ ଦୁଃଖ ଭାର
ଗରଜ ନରହରି ନିବେଦି ବାର ବାର
ଗଡ଼ି ଘାଲି ଶୋଇଥିବି ଶ୍ରୀଚରଣେ ।୪।।

'ଘ'

ଘରଭଙ୍ଗା ହେ ଜଗନ୍ନାଥ
ଘଟଣା କୁହୁଛ ମିଛ କି ସତ ।
ଘରଣୀକି ଛାଡ଼ି ଭାଇ ଭଉଣୀଙ୍କ
ସଙ୍ଗରେ ମିଳାଇ ଦେଇଛ ହାତ ।।ପଦ।।

ଘରେ କଳିଗୋଳ କରି ଭାଇ ସଙ୍ଗେ
ବିଭୀଷଣ ହେଲା ଶରଣାଗତ
ଘମାଘୋଟ ଯୁଦ୍ଧେ ସବଂଶ ମରଇ
ତୁମ ବଳେ ରାଜତ୍ୱ ପ୍ରାପତ ।।୧।।

ଘାବରି ସୁଗ୍ରୀବ ଥୋବରା ପଣରେ
ତୁମ ସଙ୍ଗେ ଆସି ବସିଲା ମିତ
ଘାତ କରି ବାଳି ବାନରକୁ ମାରି
ତା ନାରୀ ତାରାକୁ ସୁଗ୍ରୀବେ ଦଉ ।।୨।।

ଘାତକ ବୋଲିବା ନ କହିବ ତରେ
ସତ ମିଛ କଥା ଜାଣୁଥିବତ
ଘିଙ୍ଗା ହୋଇ ବଡ଼ ଦେଉଳେ ବସିଛ
ଘରବୁଢ଼ା ନାମ ବଡ଼ ବିଖ୍ୟାତ ॥୩॥

ଘଟ ଛାଡ଼ିବାତ ନିକଟ ହେଲାଣି
ନରହରି ଧନ ସଞ୍ଚିବତ
ଘନ୍ତ୍ରନାଥ ସୁତ ଘୋଷରିକୁ ଡରି
ଘୋଷେ ତବ ନାମ ଅନବରତ ॥୪॥

'ଙ'

ଓଁ କାର ବ୍ରହ୍ମକୁ ଜପ, ରେ ମନ
ଓଁକାରଲେ ଥରେ ଦୂରେଅପସରି—
ଯିବ ଯେତେ ପାପ ତାପ,ରେ ମନ ॥ପଦ॥

ଉପଶମ ହେବ ଜରା ବ୍ୟାଧି କ୍ଳେଶ
ଜୀବନର ଅଭିଶାପ
ଉଣା ହେବଜାଣ ଅଛୁ ଅନ୍ତକାଳେ
ଶମନ ଗ୍ରିଟର ଧାପ, ରେ ମନ ॥୧॥

ଉତ୍ତାଳ ତରଙ୍ଗ ଅତି ଡମିବାକୁ
ବସି କଳପ କଳପ
ଉତ୍ତମ ସାଧକେ ତପ ସାଧିଥାନ୍ତି
କଳପି ବିଶ୍ୱ ସ୍ୱରୂପ, ରେ ମନ ॥୨॥

ଉଦଗ୍ରୀବ ହୋଇ ଗୃହିଁ ବସିଛନ୍ତି
ଦୂରେ ଦାରୁ ବ୍ରହ୍ମ ରୂପ
ହଦାସୀଆ ଦାସ ଉପାଧ୍ୟାୟ୍ଦ୍ୱୀପ
ସୁଖ ପାଇବୁ ଅମାପ,ରେ ମନ ॥୩॥

‘ଚ’

ଚକାଆଖି, ତୁମେ ଥାଉଁ ହେଲ ଦଶମାଖି ହେ
ଚତୁର୍ବର୍ଗ ଦାତା ପଣକୁ ଆପଣ କପର ପାରବେ ରଖି ହେ ।।ପଦ।।

ଚନ୍ଦ୍ରବାହା ଚରଣକୁ ଆଶ୍ରାକର କାଳକ ରହିଲ ଟାକ
ଚଉରାଶି ନର୍କ ଯାତନାରୁ ତରସିବ ନାମ ମଧୁ ଚାଖି ହେ ।।୧।।

ଚିନ୍ତାମଣି ସଦା ଭକତ ଜନର ତୁମେହିଁ ଧରମ ସାକ୍ଷୀ
ଚନ୍ଦ୍ରଗୁପ୍ତ ପାଙ୍କ୍ତି ମେଲାଇ ବସିଛୁ ଭଞ୍ଜିବାକୁ ବେଳ ଦେଖି ହେ ।।୨।।

ଚଦ୍ୱଳ ଉଡ଼ାଇ ନୀଳଚକ୍ର ଚୂଳେ ଚୌଦିଗେ ରଖିଛ ଆଖି
ଚନ୍ଦ୍ରାତପ ତଳେ ଖାଇ ଭଗ୍ନମେଳେ ବସି ଆପେ ମହାସୁଖୀ ହେ।।୩।।

ଚତୁର୍ଭୁଜ ହୋଇ ଶୁଣିଛୁ ବୈକୁଣ୍ଠେ ଗମିଲା ଭୁଷଣ୍ଡ ପକ୍ଷୀ
ଚରଣାମୃତରେ ମନ ବଳାଇଛୁ ନରହର ଦୀନ ଦୁଃଖି ହେ ।।୪।।

‘ଛ’

ଛାଡ଼ି ନୀଳଗିର ଛାଡ଼ି ଶରଧା ବାଲି
ଛତିଆ ବଟକୁ ସତେ ଯିବକି ଚାଲି ।।ପଦ।।

ଛାଡ଼ି ଛତିଶା ନିଯୋଗ        ଷାଠିଏ ପଉଟି ଭୋଗ
ଛେତ ରତ୍ନ ସିଂହାସନ ପକାଇ ଖାଲି ।।୧।।

ଛତ୍ରପତି ଉତ୍କଳେଶ        ଶ୍ରୀ ଗଜପତି ନରେଶ
ଛେଷା ପହଁରା ନିଯୋଗ କେମନ୍ତେ ଭୁଲି ।।୨।।

ଛନକା ଲାଗେ ଛାତିକି        ଛଇଲରାଜ କାହିଁକି
ଛଳ କଳି କୁହ ବାରେ ମରମ ଖୋଲି ।।୩।।

ଘୁମୁରେ ମିନଥ ଛାଲ          ଘୁର ନରହର ଷାଲ
ଛନ୍ଦ ଚରଣକୁ ଫନ୍ଦା କରୁଛୁ ବୋଲି ।।୪।।

'ଜ'

ଜଗନ୍ନାଥଆରେ ଜଳା ପୋଡ଼ା କର ମାରୁ
ଝଲାଇ ନ ଦେଇ ଅନାମତ ଖାଲି ଉହ୍ୱଲ ବକଲ କରୁ ।।ପଦ।।

ଜନେ ଜାଣନ୍ତ ତୁ ବଡ଼ ଠାକୁର
ଜଗତ ପାଳବା ଧରମ ତୋର
ଜଡ଼ଭୂତ ହୋଇ ବଡ଼ ଦେଉଳରେ ଆଖି ମିଟିକାଣି ମାରୁ ।।୧।।

ଜପାମାଳି କର ନାମକୁ ତୋର
ଜଞ୍ଜାଳ ଜମ୍ବାଳେ କାଟୁଛୁ କାଳ
ଜାଣିଲିଣି ଭଲେ ପାଇବ ଶେଷକୁ ଆଜୁ ଖୋଜୁ ଖୋଜୁ ସାରୁ ।।୨।।

ଜଗମୋହନରେ ବସି ଆତୁରେ
ଜଣାଉଛୁ ଦୁଃଖ ଅନ୍ତ କାତରେ
ଜୁହାର ଗୁହାର କରେ ନରହର ମାନ ମହତ ନ ସରୁ ।।୩।।

'ଝ'

ଝଣ୍ଟାମାଳିଆ ଠାକୁର
ଝଗଡ଼ା କରବା ପାଇଁ ଭିଡ଼ୁଛୁ କମର ।।ପଦ।।

ଝଗଡ଼ ହୋଇ ଡାକିଲ ଗଜମୂର୍ଖ
ଭେଦିଲ କଣ୍ଠ କୁହର
ଝଟଦରେ ପେଶି ଚକ୍ର ସୁଦର୍ଶନ
ଛେଦଦେଲ ନକ୍ର ଶିର ।।୧।।

ଝିଙ୍ଗାସ ବଚନ ବୋଲି ଶୀରବସ୍ତ୍ର
କରିଲ ପାଦ ପ୍ରହାର
ଝଟକୁଛି ଦେଖ ବକ୍ଷପରେ ଆଜ
ପଦଚିହ୍ନ ବ୍ରାହ୍ମଣର ॥୨॥

ଝାଉଁଳ ପଡ଼ିଲା ଭକ୍ତ ପ୍ରହ୍ଲାଦ
ପାଇ କଷଣ ଅପାର
ଝିଣ୍ଟାରିଲ ନଖେ ହିରଣ୍ୟ ବପୁକୁ
ନରସିଂହ ରୂପଧର ॥୩॥

ଝଗଡ଼ୁ ନାହିଁ ମୁଁ ବଡ଼ ହେବା ପାଇଁ
ନରହରି ଶ୍ରୀଗୁରୁମୁର
ଝାମ୍ପି ନେବ କାଳଯମ କେତେବେଳେ
ମାଡର ସେଥିକି ଡର ॥୪॥

'ଞ'

(ଆରତ୍ତ ଧ୍ୱଂସନ-ବୃତ୍ତେ)

ନନ୍ଦଘୋଷେ ନବ ଜଳଧର ରୂପ ଦେଖି ପୂରୁଛି ନୟନ...
ନ ଥିଲି ପରତେ ସତେ ହନେ ରଥେ ଅବଲୋକିବି ବାମନ,
ଜଗନ୍ନାଥ ହେ ॥୧॥

ନବରୁ ବାହାରି ଭାଇ ଭଉଣୀଙ୍କ ସଙ୍ଗେ ମହାଆଡମ୍ବରେ
ନବଦିନ ଯାତ୍ରା ଜନମ ବେଦୀରେ ସାରିବ ମାଉସୀ ଘରେ,
ଜଗନ୍ନାଥ ହେ ॥୨॥

(ପୋଇ) ନନାଦତ ଶଙ୍ଖ ଭେରୀ ମରଦଳ ମୃଦଙ୍ଗ ଘଣ୍ଟ କାହାଳୀ
ନାରୀଙ୍କର ମୁଖବାଦ୍ୟ ହୁଳେ ବଡ଼ଦାଣ୍ଡ ପଡ଼ୁଛି ଉଛୁଳି ॥୩॥

ଝମ୍ର ଗଜପତି ସମ୍ମାର୍ଜ୍ଜନୀ କରେ କରନ୍ତି ଛେରା ପହଁରା
ଝଖିଳ ଜନତା ଜୟ ଜଗନ୍ନାଥ ନାମ ପ୍ରେମେ ଆମୃହ୍ବରା ॥୪॥

ଝଶାଣ ଉଡ଼ାଇ ଚାଲିଛନ୍ତି ଦଳେ ଦଳେ ସାଧୁସନ୍ଥ ଜନ
ଝପଟ ଅଧମ ନରହର ଦୂରେ ରହି କରେ ଦରଶନ ॥୫॥

'ଟ'

ଟାଣି ଟାଣି ନେବୁ କେତେ ଦୂରେ
ଟାକି ବସିଅଛୁ ଜଣାଇବ ଯେତେ
ଅଭିଯୋଗ ଶ୍ରୀଛମୁରେ ॥୧॥

ଟାଳଟଳ କର କେତେ କାଳ
ଟାହି କଲାପର ଧର ମୋ ଜୀବନ—
ନାଟିକା ଖେଳରୁ ଖେଳ ॥୨॥

ଟିହ୍ବାଇବ ବସି ଦନ ଶ୍ରତ
ଟେମକ ପିଟାଇ ବଡ଼ ଦାଣ୍ଡେ ସାରା
ବଖାଣିବ ତୁମ୍ଭ କୀର୍ତ୍ତି ॥୩॥

ଟଳମଳ ହୋଇବ ଆସନ
ଟାଣ ଭାଙ୍ଗିଥିବ ଅକାରଣେ ଟେକ—
ପାରିବ ନାହିଁ ବଦନ ॥୪॥

ଟପି ଯାଇ ପାରିବନି ଆଉ
ଟଳିବା ଆଗରୁ ନରହର ଦୁଃଖ
ଭର ହର ଟାଉ ଟାଉ ॥୫॥

‘ଠ’

ଠକୁଆ ଠାକୁର ବିଜେ ନୀଳାଚଳ ଧାମରେ
ଠକାଠକି କାରବାର ଲଗାଇଛ କାମରେ ।।ପଦ।।

ଠିକଣା ଦେଲକୁ ଭଣ୍ଡି          ଦାତାଙ୍କୁ ଧରଇ ହାଣ୍ଡି
ଠକ ଖାଇବା ଫିକର ସବୁତୁମ ନାମରେ ।।୧।।

ଠଣ ସୁନ୍ଦର କାଳିଆ          କଳ୍ପବଟ ମୂଳିଆ
ଠିକାଦାରିଆ ପଡ଼ିବ ନନ୍ଦା ବଦନାମରେ ।।୨।।

ଠକାମି ପଣ ପ୍ରମାଣ          ହେଲେ ଯେତେ ବଡ଼ ଜାଣ
ଠୁକି ଦେବେ ଭକ୍ତଗଣ ଭ୍ରମରେ ବା ପ୍ରେମରେ ।।୩।।

ଠକାର ନସ୍ନୁନ ବାରେ          ଠାବ ମାଗୁଛୁ ପସ୍ନୁରେ
ଠେଲି ନଦଅ ଠାକୁରେ ନରହରି ପାମରେ ।।୪।।

‘ଡ’

ଡ଼ାକ ମୁଁ , ନଦେହୁଛ ବାରବାର
ଡରିଲିକି ଦେଖି          ଆହେ ଚକାଆଖି
ମୋ ଗରିଷ୍ଠ ଦୁଃଖଭାର ।।ପଦ।।

ଡେଇଁ ଶ୍ରୁତିପଥ          ହୋଇଥାଅ ଭକ୍ତ
ଡାକରାକୁ ତତପର
ଡେରି କରିବାରୁ          ଜାଣୁଛି ମୋ ପ୍ରଭୁ
ମୋ ପାଇଁ ହେଲେ ବଧିର ।।୧।।

ଡରିଗଲା କଂସ    କାଳୀ ଦଳ ତୋଳି
ଦେଲ ପଦ୍ମ ଲକ୍ଷେ ଶର
ଡୁଣ୍ଡୁଭି ଦଳନେ    କେଉଁ ଯଶ ବାନା
ଉଡ଼ାଇବ ଫରଫର ॥୨॥

ଡବ ଡବ ହୋଇ    ଗୌରବ ଡିଣ୍ଡିମ
ବାଜୁଛି ସଚରାଚର
ଡୁବବକି କରି    ନରହରି ତବ
ପଦ ସାରସକୁ ସାର ॥୩॥

‘ଢ’

ଢମୁଆ ପଣ ବଡ଼ ଠାକୁର
ଢକ୍‌କା ବଜାଇ କରଛ ଜାହିର ॥ପଦ॥

ଢଳିଥିଲି ତବ ଚରଣ ତଳେ
ଢାଲ ହେବ ବୋଲି ପିଠିକି କାଳେ ॥୧॥

ଢୋକ ଦେଇ ରଖିଥିଲି ବଞ୍ଚାଇ
ଢେଉ ମୁହଁରେ ଦେଉଛ ଭସାଇ ॥୨॥

ଢିଲା କାରବାର କର କାହିଁକି
ଢଙ୍ଗ ବଦଳିଛି ଯୁଗ ପାଇଁକି ॥୩॥

ଢାଳେ ନରହରି ପଦେ ପ୍ରଣତି
ଢାଳେ ହରିବ ଗରିବ ଦୁର୍ଗତି ॥୪॥

‘ଣ’

ନୀଳଶୈଳ ନିକେତ ନିବାସୀ ପ୍ରଭୋ
ନୀଳକାନ୍ତ ମଣି ପ୍ରଭ ରୂପ ବିଭୋ
ନୀଳସାଗର ନନ୍ଦିନୀ ପ୍ରିୟବର
ନୀଳ କନ୍ଦର ସୁନ୍ଦର କାନ୍ତିଧର ।।୧।।

ନିଃଶ୍ରେୟ ଆଶ୍ରୟ ଅଭୟ ଦାୟୀ
ନିଗମସ୍ଥ ନିଚୟ ତପସ କ୍ଷୟୀ
ନରକାନ୍ତକ ଅନ୍ତକ ଭୟହର
ନୀଳକନ୍ଦର ସୁନ୍ଦର କାନ୍ତିଧର ।।୨।।

ନଶ୍ୱର ସଂସାର ସାଗର ସରିତେ
ନାବ ଚଳାଇ ନେବ ଅନବରତେ
ନିପୁଣ ତବବିନୁ କେ କର୍ଣ୍ଣଧାର
ନୀଳକନ୍ଦର ସୁନ୍ଦର କାନ୍ତିଧର ।।୩।।

ନିଖିଳ ଜନପାବନ ନାମଧନ
ନିରବଧି ନିରାଲମ୍ବ ନିସ୍ୱଜନ
ନରହରି କରିଅଛୁ କଣ୍ଠହାର
ନୀଳକନ୍ଦର ସୁନ୍ଦର କାନ୍ତିଧର ।।୪।।

‘ତ’

ତକାଉଛୁ ସନ୍ନିଧାନ, ମହାବାହୁ
ତୋର ତନ କଳା ପୂର୍ଣ୍ଣ ପରଂବ୍ରହ୍ମ ରୂପକୁ କରି ଧିଆନ ।।ପଦ।।

ତରକୁଛୁ ଅଣ୍ଡ    ଦେଖି ନଣ୍ଡ ନଣ୍ଡ
ଇନ୍ଦ୍ରକାଳ ଯୁଗ ଖଣ୍ଡ
ଚଣ୍ଡକଳା ପୂର୍ଣ୍ଣ    ପ୍ରପଞ୍ଚ ସମ୍ଭବ
ସଞ୍ଚାରଇ ମହାଖଣ୍ଡ ।।୧।।

ତନ୍ତ୍ର ଗଣିଲଣି    ଜୀବନେ ବହୁତ
ତୁଣ୍ଡ ଖୋଲିନାହିଁ କେବେ
ତଥାପି ତଡ଼ିଲେ    ତଣ୍ଟିଆ ଲଗାଇ
କାହାର ହେବ ମୁଁ ଏବେ ॥୨॥

ତରଳିବ ହେଲେ    ପାଷାଣ କଷଣ—
ଦେଖି ନିରେଖ ଜନର
ତୁରିତ ଦୁରିତ    ନାଶିବ ନରୁବା
ନେବ ଅପଯଶ ଭାର ॥୩॥

ତାମରସ ନେତ୍ର    ସ୍ତୁହିଁ ନରହରି
କୃପାବାରି ବିନ୍ଦୁ ଆଶେ
ତୃଷିତ ସ୍ତୃତକ    ପାଇଁକି ଘାତକ
ବୃତ୍ତି ଆଚରିବ ଶେଷେ ॥୪॥

'ଥ'

ଥୋବରାପଣ କରି
ଥୋଇଛୁ ଯେତେ ଯାହା ହାରିଗୁହାରି ହେ ॥ପଦ॥

ଥସ୍ତୁ କରି ପାରୁନି ହେବ କି ଫଳ
ଥାକିବ ଅବା ଯିବ ତଳକୁ ତଳ ହେ ॥୧॥

ଥଣ୍ଡା ହେଲା ରକତ ଗଲା ବୟସ
ଥବ୍ବର ଜନ କରି ପାରେ ବା କିଂସ ॥୨॥

ଥଳକୂଳ ନ ପାଇ ଭବସାଗରେ
ଥକ୍କା ହୋଇ ବସିଛୁ ଭଙ୍ଗା ନାବରେ ॥୩॥

ଥରହର ହେଉଛୁ ଟଳୁ ସନ୍ତତ
ଥ ବର୍ଣ୍ଣେ ନରହରି ରଚଇ ଗୀତ ॥୪॥

## 'ଦ'

ଦଇନୀ ମୋର ଏତେ, ଦସ୍ଥାନଧି ଗ୍ରାମୁରେ
ଦାସ ପଛେ ସରୁ ଫସାରୁ କଳଙ୍କ
ନ ଲଗୁ ଦାସ ବତ୍ସଳ ନାମରେ ।।ପଦ।।

ଦଦରା ନାବରେ ବସାଇ ଭସାଇ
ଦେଇଛ ଅନନ୍ତ ମହାସାଗରେ
ଦକ ଦକ ଚଉ ହେଉଛି ସତତ
ବୁଡ଼ିବକ ଭେଳା ଲଗିବ ଘାଟରେ ।।୧।।

ଦରଦିଆ ବନ୍ଧୁ ଭକତ ଜନର
ଡିଣ୍ଡିମ ବାଜୁଛି ସଚରାଚରେ
ଦାଉ ସାଧିବାକୁ ହେବ ଆଗଭର
ଆସିବକ କେବେ କଳପନାରେ ।।୨।।

ଦରିଦ୍ରାସ୍ତି ଦଧି— ବାମନ ମୂରତି
ନରହରି ସଦା ଚିନ୍ତ ମନରେ
ଦକ୍ଷିଣ ହୋଇବ ଦରଶନ ଦାନେ
ଦଣ୍ଡ ନଥିବ ଅନ୍ତିମ କାଳରେ ।।୩।।

## 'ଧ'

ଧରାଧରବାସୀ ଆଶାକରି ବସି ବାଇଶି ପାବଛୁ ତଳେ
ଧିଆନ କରିଛୁ ପଦାରବିନ୍ଦକୁ ଯହିଁ ମକରନ୍ଦ ଗଳେ ।।୧।।

ଧଣ୍ଡା ମାଳିଆ ମୁଁ କିଛି ମାଗୁନାହିଁ ମାଗୁଛି କରୁଣା କଣେ
ଧରଣୀରେ ଆଉ ଦେଖୁନ କାହାକୁ ତୁମ ପରି ଦାତା ଜଣେ ।।୨।।

ଧାତା ମହେଶ୍ୱର ଯା'ର ଚରଣର କାଳେ ନ ପାଇଲେ ଅନ୍ତ
ଧୀବର ଧୋଇଦବା କଥା କି ଜଗତେ ରହିଅଛି ଅବିଦିତ ॥୩॥

ଧ୍ୱଜା ଉଡ଼ାଉଛି ବଡ଼ ଦେଉଳରେ ବଡ଼ିମା ଜାହିର କରି
ଧନ୍ଦ ହୋଇ ଯେବେ ମରିବ ଭକତ ଧାରଣା ହେବ କପଟ ॥୪॥

ଧର୍ମଭୀରୁ ନରହରି ଏ ଜଗତେ ଜଣେ ଇତର ପରାଣୀ
ଧର୍ମରାଜ ହାସ ନାଶ ପୀତବାସ ଏତିକି ମାଗେ ମାଗୁଣି ॥୫॥

## 'ନ'

(କୀର୍ତ୍ତନ ସ୍ୱର)

ନବଜଳଧର ବରନ ସୁନ୍ଦର ଦାରୁଭୂତ ମହାମେରୁ
ନବ ନବ ବେଶେ କି ଶୋଭି ବିକାଶେ
ବିଲୋକନେ କେଉଁ ସ୍ୱରୁ
ନଳିନ ନୟନ ସୁଠାମ ଠାଣି
ନ ନେବ କାହାର ମନକୁ ଟାଣି ॥୧॥

ନାଟ ମନ୍ଦିରରେ ବସି କରବଦ୍ଧ ଶ୍ରୀପଦେ ରଖି ଧିଆନ
ନିଉଚ୍ଛୁଳ ହୋଇ ଜଣାଇବ ଯେତେ
ଆବେଦନ ନିବେଦନ
ନିଆଶା ହେବନି ହେବନି କେବେ
ନିକର ଗୁହାରି ଶୁଣିବେ ଲବେ ॥୨॥

ନଶ୍ୱର ଏ ଦେହ ଇହଲୋକେ ଅବା ରହିଥିବ କେତେ କାଳ
ନିରାଲମ୍ବ ଜନ ନିସ୍ତାର କରତା
କରାଇବ ବିଜଞ୍ଜାଳ
ନରହରି ତବ ଶରଣାଗତ
ନିଗ୍ରହ ନୋହିବ ନୀଳାଦ୍ରିନାଥ ॥୩॥

## 'ପ'

ପତିଆରି କରିବା ପାଇଁ
ପତାକା ଖଣ୍ଡେ ଦେଇଛ ଉଡ଼ାଇ
ପାତକୀ ଯେତେକ    ସଞ୍ଚିତ ପାତକ
ଉଡ଼ାଇ ଦେବାକୁ ଆସିଛୁ ଧାଇଁ ||ପଦ||

ପରିଶ୍ରମ ନ ହେଉ ପଣ୍ଡ
ପରିଜନ ନ ପାଉ ଦଣ୍ଡ
ପରମ କରତା    ଗତି ମୁକ୍ତି ଦାତା
ପକ୍ଷପାତେ ହିବ ନାହିଁ ପଗ୍ରୁଇ ||୧||

ପତିତପାବନ ମୂରତି
ପାତ ଜାନୁ ଦେଖିବ ନିତି
ପକ୍ଷିରାଜ ପଛେ    ବସି ମନ ସ୍ୱଚ୍ଛେ
ପଖାଳିବ ପାପ ନୟନ ଧୁଇ ||୨||

ପରଂବ୍ରହ୍ମ ପରମେଶ୍ୱର
ପଦ ଏକା ସଂସାରେ ସାର
ପରକାଳ ଗତି    ଚନ୍ଦ୍ର ନରହରି
ଶ୍ରୀପଦେ ଦେଇଛୁ ମନ ମଜାଇ ||୩||

## 'ଫ'

ଫଟଃ କରମକୁ ଧରି, ଫତୁଆ ହୋଇଲି ଜୀବନ ଭରି
ଫନ୍ଦା କରିଥିଲି    ଫଦାରବନ୍ଦକୁ
ଫିଙ୍ଗି ଦେଲ ଦୂରେ ଗୋଇଠା ମାରି ||ପଦ||

ଫେଡ଼ିଛ ବୋଲି କପଣ ଘୁରୁବେ
ଫୁଲଉଛ ଗ୍ରୁଢ଼ ବଡ଼ ଗରବେ
ଫାର୍କିମର କଥା ଜାଣୁଛ ଅନ୍ୟଥା-
ନୋହେ କେବଳ ଫମ୍ପା ବାହାଦୁରି ॥୧॥

ଫିଟାଇ କହିବ ଯେବେ ମରମ
ଫିକା ପଡ଼ିଯିବ କଳା ବଦନ
ଫଳାଫଳ ଯାହା ହେଉ ନରହରି
ଫାଶୀ ପାଇବାକୁ ଯିବନି ଡରି ॥୨॥

ଫେରଫାର ଫନ୍ଦୀ ଜାଣ ସକଳ
ଫରୁରୁଆ ବୁଦ୍ଧି ଗୁଡ଼ ଚଞ୍ଚଳ
ଫେରାଦୀ ହେଉଛ ଫଳ ଲୋଭ ଆଶେ
ଫଳନ୍ତା ଗଛକୁ ଫୋପଡ଼ ମାରି ॥୩॥

'ବ'

(ରାଗ—କାମୋଦୀ)

ବିହଙ୍ଗରାଜ ଧ୍ୱଜ ବିନାଶି ନନ୍ଦଗଜ-
ରାଜକୁ ଜଳୁ ଉଦ୍ଧାରିଛ
ବିଷମ ବ୍ୟାଧିଭୟୁ ଦୋବାଲନ ବାତାୟୁ
ବଡ଼ ଚଞ୍ଚଳେ ବଞ୍ଚାଇଛ ହେ
ବଳବନ୍ତ
ବଢ଼ିମା ବ୍ରହ୍ମାଣ୍ଡେ ବିଦିତ
ବିପରୀତ ସ୍ୱଭାବ ଏତ
ବାଦ ସାଧିଲ ପରି ମୋ ସଙ୍ଗେ ନୀଳଗିରି-
ବାସୀ ମୁଁ ଆଜି ବିଡ଼ମ୍ବିତ ହେ ॥୧॥

ବିମୁଖ କବିସୂର୍ଯ୍ୟ    ବଳଦେବଙ୍କ ଧୈର୍ଯ୍ୟ-
ବଳ ଦେବାକୁ ଦଣ୍ଡେ ଟାଳି
ବିଧିବାକୁ ହେ ରମା-    ରମଣ ମାଗି କ୍ଷମା
ବ୍ୟାଳ ବୋଲିଣ ଦେଲେ ଗାଳି ହେ
ବଳାନୁଜ
ବରଜନ କଳଙ୍କ ଲଜ
ବୋଲିବେ ବିବୁଧ ସମାଜ
ବିଦ୍ରୂପ କରି ଖାଲି    ବାହାବା ନେବ ବୋଲି
ବିସ୍ମର କି ଦେବାଧିରାଜ ହେ ॥୨॥

ବଖାଣିବାକୁ ଦୋଷ    ବଳୁ ନାହିଁ ମାନସ
ବାଦାନୁବାଦେ ହୋଇ ରତ
ବିଚାର ମତ ଗତ    ବଦଳାଇ ତତ୍ତ୍ୱତ
ବିଧି ବିବେକ ସନ୍ମତ ହେ
ବିଶ୍ୱାଧାର
ବିଶ୍ରୁତ କୀରତି ବିସ୍ତର
ବ୍ୟାଜ ସକଳ ପରିହର
ବରାଭୟ ବିତର    ବିନତ ନିରନ୍ତର
ବିପାକ ଅବହେଳେ ହର ହେ ॥୩॥

‘ଭ’

ଭରି ଏ ଜୀବନ ତରୀ
ଭାସିଯିବ କେଉଁ ଅଜଣା ରାଇଜେ
ନ ବସିଲେ ମଙ୍ଗ ଧରି ॥ପଦ॥

ଭୁକ୍ତଭୋଗୀ ବୋଲି କହୁଅଛୁ ଶିନା
ଭବାବୃଣ ଜଣେ କର୍ଣ୍ଣଧାର ବିନା
ଭଙ୍ଗା ନାବ ଖଣ୍ଡି ଚଳାଇ ନେବ କେ
କଟାଇ ଗଣ୍ଡ ଭଉଁରୀ ॥୧॥

ଭବିଷ୍ୟତ ବଡ଼ ଲାଗେ ଭୟଙ୍କର
ଭଣ୍ଡାଇଲେ ଜାଣ ସରିଲା ଝକର
ଭରସା କରିଛୁ ଭକତ ଭାଗ୍ୟକୁ
ସାଜିବ ନାହିଁ ଭିଗାରି ॥୨॥

ଭଗ ମାଗୁନାହିଁ ଭୋଗ ମାଗୁନାହିଁ
ଭରଣ ପୋଷଣ ପେଟ ଖଣ୍ଡେ ପାଇଁ
ଭକ୍ଷକ ସାଜନ୍ତି ଭଦ୍ରଦାସ୍ମୀ ଭଦ୍ରାଭାଇ
ଭଣେ ନରହରି ॥୩॥

## 'ମ'

ମୁରାରି ତୁ, ମତାଇ ଦେଇଛୁ ମୋତେ
ମନ କହୁଅଛୁ ଘୋଡ଼ା ଚଢ଼ିବାକୁ
ମାତ୍ର ଧନ ନାହିଁ ହାତେ । ॥ପଦ॥

ମେରୁ ଚୂଳେ ନେଇ ବସାଇ ଦେଇଛୁ
ଖସାଇ ଦେବୁନି କାଳେ
ମଶାଚକା ପଛେ ଗୋଡ଼ାଇଛୁ ବୋଲି
ରବ ନ ହେଉ ଜଗତେ ॥୧॥

ମଧୁର ମୋହନ ମୁରଲୀ ବଜାଇ
ମୋହିଥିଲୁ ଗୋପ ଗୋଈ
ମନାଇ ପାରିବ ମୋହନ ରାଜଙ୍କୁ
ମନକୁ ନାହିଁ ପରତେ ॥୨॥

ମନ୍ତ୍ର କରି ଅବା ଯନ୍ତ୍ର ତନ୍ତ୍ର ପରି
ଚଳାଇଛୁ ଇଙ୍ଗିତରେ
ମଝି ଦରିଆରେ ମାରିବୁ ବୁଡ଼ାଇ
ମଙ୍ଗ ଛାଡ଼ିଦେଇ ସତେ ॥୩॥

ମସୀଜୀବୀ ହେବା		ମାନସେ ଧାଇଁଛୁ
ମାନ ମହତ୍ତ୍ୱ ନ ଯାଉ
ମଣିମା ଈଶଙ୍କେ		ଫିଟାଇ କହୁଲି
ଯାହା ଥିଲା ମନୋଗତେ ॥୭॥

ମହୋଦଧି ତୀରେ		ମର୍ତ୍ତ୍ୟ ବୈକୁଣ୍ଠରେ
ମର୍ଯ୍ୟାଦା ପୁରୁଷୋତ୍ତମ
ମହାଣିଆ ନର—		ହରିକୁ ନଶରଣ
ନ କରିବ କଦାଚତେ ॥୮॥

‘ଯ’

ଯୁଗମ ସହସ୍ର କେତେ		ଯଦୁପତି ଜଗନ୍ନାଥେ
ଯମ ଯାତନାରୁ ବଳି		ଯାଉଛୁ ତାଡ଼ନା ଯେତେ ॥ପଦ॥

ଯନ୍ତ୍ରୀ ତୁମେ ଯନ୍ତ୍ର ମୁହିଁ		ଯୁକତେ ଅନ୍ୟଥା ନାହିଁ
ଯାନକୁ ନେବ ଚଳାଇ		ଯେଣେ ଇଚ୍ଛା ନିଜ ହାତେ ॥୧॥

ଯାଚକ ହୋଇନ କେବେ		ଯକ୍ଷରାଜ ବଇଭବେ
ଯଥା ତଥା ଆଦରିଛୁ		ଯେତିକ ଦେଇଛ ମୋତେ ॥୨॥

ଯାପେ ଅସରନ୍ତି କାଳ		ଯା ନାମ କରି ସମ୍ବଳ
ଯବନିକା ପାତେ ସାଥେ		ଯେମନ୍ତ ଜୀବନ ବ୍ରତେ ॥୩॥

ଯାବତ ଥିବି ଏ ଭବେ		ଯଶ ବାଞ୍ଛା ନାହିଁ ଲବେ
ଯନ୍ତ୍ରା ଭିତରୁ ବାହାରି		ଯିବ ନରହରି ସତେ ॥୪॥

## 'ର'

ରଙ୍ଗ କେତନ ଦୋଳେ, ନୀଳ ଚକର ଚୂଳେ
ରନ୍ଧ୍ର ଦୂରେ ଦେଖେ ପାପୀ ଚରମ ଡୋଳେ ॥ପଦ॥

ରାଶୀକୃତ ପାତକ          ଅରଜିତ ଯେତେକ
ରଉରବ ନରକରୁ ନିସ୍ତାର ମିଳେ ॥୧॥

ରନ୍ଧ୍ର ରନ୍ଧ୍ର ମରୁତ          ରଚେ ମଧୁ ସଙ୍ଗୀତ
ରମାଧବ ଗଉରବ ରଟେ ଭୂତଳେ ॥୨॥

ରଙ୍କ ରଖିଛୁ ଆଖି          ବସିଅଛୁ ଅପେକ୍ଷି
ରଜ କଣିକାଏ ପାଇଁ ଚରଣ ତଳେ ॥୩॥

ରଥ ଯାତରା ଦିନ          ରଷ୍ଟ ହେବ ଖଣ୍ଡନ
ରନ୍ଧ୍ର ନରହର ସେହ୍ନ ଦିନକୁ ଭାଳେ ॥୪॥

## 'ଲ'

ଲକ୍ଷ୍ମୀନାହ୍ନା କାହ୍ନା ଆଗେ କହିବ ଦୁଃଖ
ଲୁହ ଲହୁ ଝରାଇ କି ଲଭିବ ସୁଖ ॥ପଦ॥

ଲଣ୍ଡଭଣ୍ଡ କରି କେତେ          ଲଟ ଦେଖୁଥିବ ସତେ
ଲସିଯିବ ମେରୁଦଣ୍ଡ          ହେବ ଜାରେଖ ॥୧॥

ଲଲାଟ ଅଙ୍କିତ ଗାର          ଲଙ୍ଘିବା ଯେବେ ଦୁସ୍ତର
ଲାଞ୍ଛିତ ହେବ କି ଲାଗି          ପଙ୍କଜ ମୁଖ ॥୨॥

ଲୋମ କୂପେ ମାଳ ମାଳ          ଲୋକ ହୋଇଅଛୁ ଠୁଳ
ଲୋଷ୍ଟ୍ରଗୁର ସଙ୍ଗେ          କଳ ବଳ ପରଖ ॥୩॥

ଲୋକାନ୍ତରେ ଠେଲଦିଅ    ଲୋକହସା ନ କରାଅ
ଲଘୁ ନରହରି ଲବେ    ନୋହୁ ବିମୁଖ ।।୪।।

'ବ'

ବଡ଼ ଦଗା ଦେଲୁଣିରେ ଜଗା
ବଡ଼ ହଲ୍ଲସନ୍ତ ହେଲଣି ଏଣିକ
ନାହିଁ ଟିକେ ତୋତେ ଲଗା ।।ପଦ।।

ବିପତ୍ତି ପଡ଼ିଲା ବେଳକୁ କାହିଁ
ବଡ଼ ଦେଉଳରେ ଲୁଚିଲୁ ଯାଇଁ
ବଡ଼ ଦାଣ୍ଡେ ବସି    ମୁଣ୍ଡ ଫଟାଉଛୁ
ରହିଲୁ ହୋଇ ଅଲଗା ।।୧।।

ବଳଗଣ୍ଡି ଠାରେ ବସିବ ମାଡ଼
ବଡ଼ ଦେଉଳକୁ ନ ଦେବ ଛାଡ଼
ବାହୁଡ଼ା ରଥରୁ    ଓଟାରି ଆଣିବ
ଅଣ୍ଟାରେ ଲଗାଇ ପଘା ।।୨।।

ବଡ଼ ଖାଇ ଚୋର ଅଛୁ ମୁରବ
ବଳିଆ ପାଖରେ ବାଢିବ ଦାବ
ବିଟାଳିଆ ବୁଦ୍ଧି    ବରାବର କରି
ନରହରିଙ୍କ ନ ରଗା ।।୩।।

'ଶ'

ଶୁଣିଲ ନାହିଁ, ଶୋଇ ରହିଲ ଗୋସାଇଁ
ଶରଣାଗତେ ତ୍ରାଣ କରିଥିଲ କାହିଁ ପାଇଁ ।।ପଦ।।

ଶରଣପଞ୍ଜର ବାନା ନନ୍ଦାକୁ ଡର ନାହିଁନା
ଶରଣ୍ୟ କରିକ ମୋତେ ପତାକା ଦେବ ଉଡ଼ାଇ ।।୧।।

ଶରଣୀ ଦୂର ଦୁର୍ଗମ ଶଙ୍ଖଳ ବନ୍ଧ ଚରଣ
ଶଇଶବାବଧି ପଦ ଅନୁସରି ଅଛୁ ଧାଇଁ ।।୨।।

ଶାନ୍ତି ଯେବେ ପାଏ ଭକ୍ତ ଶୋଭା ବଢିବ କି ନାଥ
ଶରଣ୍ୟ ଶ୍ରୀ ଜଗନ୍ନାଥ ଆଉକି ବୋଲାବ କେହ୍ନେ ।।୩।।

ଶୁଭଦାୟୀ ଶିଖିପଚ୍ଛ ଶୁଧାଶବ ଦୁରୁଗନ୍ଧ
ଶୋକାକୁଳ ନରହରି ଡାକେ ତୁହ୍ମାଇ ତୁହ୍ମାଇ ।।୪।।

'ଷ'

ଷଣଫଳ ବରଣୀ ଭଦ୍ରେ, ଷଇକୁ ତୁମର କୁହ ବୁଝାଇ
ଷଣ୍ଡାମର ବକାଚର ଧଣ୍ଡାମାଳ ବୁହ୍ମା
ମୋ ଗୁହାରି ଶୁଣିଲ ନାହିଁ ।।ପଦ।।

ଷଟ୍‌ତ୍ରିଂଶ ନିଯୋଗ ଖଣ୍ଡା
ଷଡ଼ଅରି ଗରବ ଗଣ୍ଡା
ଷାଠିଏ ପଉଟି ଅନ୍ନ ଧ୍ୱଂସ କରି
ଦେଉଳେ ବସିଛୁ ନିଦକ ହୋଇ ।।୧।।

ଷୋଡ଼ଶରୁ କନ୍ଧାଏ ଧରି
ଷୋଳ ସହସ୍ର ଥିଲେ ତାରି
ଷୋଳ କଳା ପୂର୍ଣ୍ଣ ପରଂବ୍ରହ୍ମ ପଦ-
ଧ୍ୟାୟୀ ନରହରି ନ ପାଏ କାହ୍ନି ।।୨।।

'ସ'

ସାରଙ୍ଗଧର ଶ୍ରୀଧର ଶୁଣ ମୋ ଗିର
ସଙ୍ଖାଳି କରିଛୁ ମାନ ଅଭୟ ପଦକୁ ତୋର ।।ପଦ।।

ସତ୍ୟରୂପ ସନାତନ ସତତ କରି ଧିଆନ
ସରିଯିବ ଯେବେ ନିନ୍ଦା ହେବକି ଆଉ କାହାର ।।୧।।

ସିନ୍ଧୁ ସୁତା ପ୍ରାଣବନ୍ଧୁ  ସାର୍ଥକ କରୁଣା ସିନ୍ଧୁ
ସିନ୍ଧୁ ଶୁଖିବନି ବନ୍ଧୁ ମାତର ଯେବେ ବତର ॥୨॥

ସେବା ପୂଜା ଜପତପ  ସାଧନା ବା ସଂକଳପ
ସାଧୁ ସୁଧୀ ସମାଗମ ସୁକୃତ ନାହିଁ ମୋହର ॥୩॥

ସଙ୍କଟ କାଳରେ ସଖା  ସଦାଗତ ତୁମେ ଏକା
ସମୀପରେ ଦିଅ ଦେଖା ନରହରଙ୍କୁ ସତ୍ୱର ॥୪॥

## 'ହ'

ହଳଆ ପଦ୍ମରେ ତୋ ସ୍ଥାନ ଖାଇକି
ହଳପଟା ଏତେ ମୋତେ କରେ କାହିଁକି ॥ପଦ॥

ହଜାର ହଜାର ଅଛି ଉଦାହରଣ
ହାତ ଗଣି ଦୁଇଟିର ଦେବ ପ୍ରମାଣ
ହରଣକୁ ତାଡୁଛି ହାତୀକୁ ଉଡାଉଛି
ହରଣାକ୍ଷର ଅନ୍ତ୍ର ହନ୍ତାଳି ଓଟାରୁଛି
ହରିଜନ ଦାସୀଆ ହାତେ ଦେଲା ନଡ଼ିଆ
ହଜୁରଙ୍କର ଏ କଥା ହେଉ ନାହିଁକି ॥୧॥

ହକ ଦାବ ଅଛି ମୁଁ କରବ ଓଜର
ହେଉ ବା ନ ହେଉ ହାନି ହେବ ନଜର
ହନସ୍ତା ହଇରାଣ ହେଉଛି ଅକାରଣ
ହାହାକାରେ ଜୀବନ ଯାପୁଛି ଅନୁକ୍ଷଣ
ହୁଡିଲା ନରହର ନାମକୁ ହେସ୍ତୁ କର
ହାତ ପାଉଥିଲ ଲଞ୍ଚ ଦେଲି ନାହିଁକି ॥୨॥

‘କ୍ଷ’

କ୍ଷମା ମାଗୁ ଛୁ ରମାବର
କ୍ଷିତି ତଳେ ମୁଁ ଜଣେ କରମସ୍ତାନ ନର ।।ପଦ।।

କ୍ଷତ ଉପରେ ସହି କ୍ଷତ
କ୍ଷୁବ୍‌ଧ ହେବାରୁ ଚିତ୍ତ ଅତି
(ପଞ୍ଚ) କ୍ଷତ ସ୍ଥାନରେ ଚୂନ ବିଲେପନ ବିଧାନ
କ୍ଷଣ କୋପେ ଉନ୍ମତ୍ତ ହୋଇ ହାରିଲି ଜ୍ଞାନ
କ୍ଷୀଣ ସ୍ୱର ଉତ୍ତୋଳି ଦେଲିଣି ବହୁ ଗାଳି
କ୍ଷମାନିଧି ମୁଁ ଅପରାଧି ପଦେ ନିକର ।।୧।।

କ୍ଷଣ ଭଙ୍ଗୁର ଏ ସଂସାର
କ୍ଷଣ କ୍ଷଣକେ ଆନ ତାର
(ମଡ଼ି) କ୍ଷୁଦ୍ର ମାନବ ଦେହୀ କ୍ଷଣେ ଯିବ ମିଳାଇ
କ୍ଷୀବ ପରାୟେ ହୋଇ ଜନମଡ଼େ ଭ୍ରମଇ
କ୍ଷେମ ଦାତା ଅନଘ କ୍ଷାଳନ କର ଅଘ
କ୍ଷୀଣଧୀ ନରହରି ପଦ କିଙ୍କର ତୋର ।।୨।।
**

**

# ତୁମେ ବଡ଼ କପଟି

## ଶେଖ୍ ବାକ୍‌ର ମହମ୍ମଦ

(ବିଂଶ ଶତାବ୍ଦୀ)

[ମନ ମୁଷା ହୋ ତୁହ୍ମ ଗସ୍ତାଇ ଖାଇ-ବୃତ୍ତେ]

ବଡ଼ ଧାଁ ହେ, ତୁମେ ବଡ କପଟି
ବଡ ଧାଁ ହେ
କାହାକୁ ହସାଅ କାହାକୁ କନ୍ଦାଅ
କିଏ ଦେଲା ଦୟାନିଧି ନାମଟି ।।ଘୋଷା।।

କେ ହୁଏ ଭୂପତି କିଏ ଚକ୍ରବର୍ତ୍ତୀ,
ଦାସ ଦାସୀ ପୋଇଲି ଆନ୍ତି ଖଟି
କେ ହୋଇ ଫକୀର ବୁଲେ ବାରଦ୍ୱାର
ଯୋଗୀ ହୋଇ କିଏ ମାଗୁଛି ମୁଠି ।।୧।।

କେ ଖିଆ ଖେଚଡ଼ି ଖାଉଛି ହାପୁଡ଼ି
କିଏ ଖାଇ କେତେ ଫିଙ୍ଗି ଦିଏଟି
ଉପବାସେ କିଏ ପେଟକୁ ନପାଏ
କିଏ ଖାଉଅଛି ପତର ଚାଟି ।।୨।।

ପାଟ ମଠା ଧୋତି କିଏ ପିନ୍ଧି ଥାନ୍ତି
କୋଟା ମୋଜାରେ କା' ଲୁଚେ ଗୋଇଠି
କିଏ ବା ବିବସ୍ତ୍ର କିଏ ଚିର୍ଣ୍ଣବସ୍ତ୍ର
କେ ପିନ୍ଧେ ପକାଇ ସତର ଗଣ୍ଠି ।।୩।।

ତୂଳ ପୁଷ୍ପ ଶଯ୍ୟା କେ କରଇ ମଜା
ଶୋଇ ଶୋଇ ଦିନ ଯାଉଛି ଗୁଲି
ଆଜି ଜଣେ କାଏ କାତରି ନ ପାଏ
ତା' ଦିନ ଯାଉଛି ଧୂଳିରେ ଲୋଟି ।।୪।।

କାହାଘରେ ଜନ ବହୁତ ସନ୍ତାନ
ନାହି ଦେଖି ଅଣ ନାହି ଦେଖେଟି
ଆଣ୍ଠୁକୁଡ଼ା ଘରେ ପୁଅଟି ଜନ୍ମିଲେ
ଅନ୍ତୁଡ଼ି ଶାଳରୁ ଚପୁଛି ତଣ୍ଟି ।।୫।।

କହଇ ବାକର ମୁଁ ପାପୀ ପାମର
ପୁଅ ଗୋଟେ ଦେଲ ଝିଅ ପାଞ୍ଚୋଟି
ତାଙ୍କ ପାଇଁ ଖାଦ୍ୟ ନ କଲ ବନ୍ଦୋବସ୍ତ
(ମତେ) ମୋହ ମାୟା ଭବେ ମାରୁଛ ଘାଣ୍ଟି ।।୬।।
**

**

# ନୀଳ ଶଇଳ ନବାସୀ

## ସେଖ୍ ବାକ୍କର ମହମ୍ମଦ

(୧୯ଂଶ ଶତାବ୍ଦୀ

[ଚଲ ଚଲରେ ପତଙ୍ଗ ମେଘ-ବୃନ୍ଦେ]

ନୀଳ ଶଇଳ ନବାସୀ ଦେବ ଶ୍ରୀହରି
ଦୂରୁ ଶୁଭେନା ଏ କ ଗରବ ଗୁହାରି
ବଡ଼ ପାଚେରି ଘେରାଇ ବଡ଼ ଦେଉଳ ତୋଳାଇ
ବସିଛ ମନ୍ଦିରେ ଦାରୁଭୂତ ମୁରାରି ।।ଘୋଷା।।

ଆତଙ୍କରେ ପକ୍ଷୀ ଗଜେନ୍ଦ୍ର ଡାକିଲା ରକ୍ଷ ହେ ଚତୁର୍ଭୁଜ
ଆଉଣ ଲକ୍ଷେ ଯୋଜନେ ତା' ଡାକ ଶୁଣିଲ କର୍ଣ୍ଣେ
ମୋ ବେଳକୁ କଂପା ହୁଅ ବଧିର ପରି ? ॥୧॥

ଘୋର ବନେ ଡାକଲା ମୃଗୁଣୀ ଦୂରେ ଆଇ ପାରିଲ ତା'ଶୁଣି
ବରଷା ଥିଲଟି କାହିଁ ପବନ ଆସିଲା ଧାଇଁ
ବ୍ୟାଧ ନାଶି ମୃଗୁଣୀକୁ କରିଲ ପାରି ॥୨॥

ସୁଦାମାର ଦୁଃଖକଷ୍ଟ ହାସି ମୋର ଲୋଡ଼ାନାହିଁ ସେହିପରି
ଲୋଡ଼ା ତୋ ରଙ୍ଗପଦ୍ମର ଆହେ ପ୍ରଭୁ ଚକ୍ରଧର
ଜଣାଯାଏ ଶୁଣ ତୁମ୍ଭେ ସୁଦାସ୍ଥା କରି ॥୩॥

ସାଗର ସୋ୍ରତ ମୁଖରେ ମୁହିଁ ଭାସି ଯାଉଛୁ ରଖ ଗୋସାଇଁ
ଆତଙ୍କ ନାଶନ ବାନା ମୋପରେ ନୁହଁ ବିମନା
ନାବିକ ହୋଇଣ କୂଳେ ଲଗାଅ ତରି ॥୪॥

ଦ୍ରୌପଦୀକୁ କୁରୁସଭା ତଳେ ଦୁଶା ବିବସ୍ତ୍ର କରିଲବେଳେ
ସତୀର ଆତଙ୍କ ଜାଣି କୋଟି ବସ୍ତ୍ର ଦେଲ ଆଣି
କେତେ ବଡ଼ ଲଜ୍ୟାରୁ ଯା'ନେଲ ସୁଧାରି ॥୫॥

ଯେତେ କୀର୍ତ୍ତି ରଖିଛ ଜଗତେ
ହେଳା ହେଳା ବା କହିବ କେତେ
ନ ଦେଖେ ପୋଥି ପୁରାଣ, ବାକର ମିଆଁ ଯବନ
ପ୍ରାଣଯାଉ ମୋର ମା' ଶାରଳା ସୁମରି ॥୬॥

**

**

# ବାରେ ଚକାନୟନ

## ସେଖ୍ ବାକ୍‌କର ମହମ୍ମଦ

(ବିଂଶ ଶତାବ୍ଦୀ)

[କେସ୍ତ ସାମନେ ତୋ ଆଓ ଚଲସ୍ନେ-ବୃନ୍ଦେ]

ବାରେ ଚକା ନୟନ ଦିଅ ଖୋଲି ହେ
ତୁମକୁ ପସ୍ତୁର ନେବ ନାହିଁକି ?
ସାରା ଦୁନିଆଁ ଗଢ଼ିଛ ପରମାତ୍ମା
ଏଠି ଏଡ଼େ ଅବସ୍ଥର କାହିଁକି ? ॥ଘୋଷା॥

ବୋହୁଯାଏ କା'ର ଘିଅ ମହୁସାର
ନ ପାଉଛି କିଏ ପେଟକୁ ଆହାର
ଆଉ ଜଣେ କିଏ ବୁଲି ବୁଲି ଧାଏଁ
ତାକୁ କେ କରିଲା ଦାଣ୍ଡର ଫକୀର
ଜଣେ ହାକିମ ଆଉ ଜଣେ ମୂଲିଆ
ଏହା କେ କଲା ହେ ଧଣ୍ଡାମାଲିଆ
ଖେଳା ଲଗାଇଛ ଜଗାକାଳିଆ ?
ନୀଳାଚଳେ ବସି ଆଉଁକି ? ॥

ବଡ଼ଆଶା କରି କହେ କନ୍ଦଧାସ୍ୱୀ
ଡାକିଲେ ନ ଶୁଣ ଏ ଦୀନ ଗୁହାରି
ଆଉ କିଏ ଅଛୁ ମୋର ଆପଣାର
କାହା ପାଖେ ଭିକ୍ଷା ମାଗିବି ଭିକାରୀ

ତୁମେ ଧରିଛ ଧରମ ନିକାତ
ଶୁଣିବାକୁ ଦୁଃଖି ଜନ ଆରତ
ନ ଶୁଣିଲ ମୋର ଆପତ୍ତି
ହୁଏ ଏ ନିଷ୍ଠୁର ମୋହ ପାଇଁକ ॥

ଆରାଧନା କରି ପାଇଲେ ଯାତନା
ଶକ୍ତି ଦିଅ ମୋରେ କରିବି ତା ଯେନା
କାନ୍ଦି କାନ୍ଦି ହରି ପ୍ରାଣ ଦେଲେ ମାରି
ତୁମେହିଁ ଶୁଣିବ କନ୍ଦାର ବାଜଣା
ଜଗତ ଠାକୁର ହୋଇଣ
ଭୃତ୍ୟଠାରେ ହେଲେ ପ୍ରଭୁ କୃପଣ
କେଉଁ ଯଶ ଲଭିବ ଯେ ଆପଣ
ଦୁଃଖୀ ମରେ ତୁମ ପଦ ଧାୟୀଁକ ॥

କାଳ ସମସ୍ତରେ ଦୁଃଖୀ ଜନଠାରେ
ନିର୍ଦ୍ଦୟ ନ ହୁଅ ପ୍ରଭୁ ମୋହଠାରେ
କହଇ ବାକର ଆହେ ଚକ୍ରଧର
ଦେଲ ଯେଉଁ ଦୁଃଖ ସହି ମୁଁ ନପାରେ

ତୁମ୍ଭେ ଶୁଣ ବାରେ ମୋର ଆପତ୍ତି
ତୁମ୍ଭ ଶ୍ରୀ ଚରଣେ ମୋର ବିନତି
ଶେଷେ ମାଗୁଣି ଏ ମୋର ଏତିକ ॥

**

**

# ଅନାଥଆ ଜଗନ୍ନାଥ

## ସେଖ୍ ବାକ୍‌କର ମହମ୍ମଦ

(ବିଂଶ ଶତାବ୍ଦୀ)

[ଚକାଡୋଳା କମ୍ପା-ବୃନ୍ଦେ]

ଅନାଥଆ ଜଗନ୍ନାଥ
ତୋର ଖଣ୍ଡିଅ ହାତରେ ଅନାଥଆ ଜଗନ୍ନାଥ
ଭାଇ ଭଉଣୀଙ୍କୁ ପାଖରେ ବସାଇ
(ମତେ) ପଇସା ଲୋଭରେ ବିକାଲୁ ଭାତରେ
ଅନାଥଆ ଜଗନ୍ନାଥ ।। ଘୋଷା ।।

ବସି ନୀଳାଚଳେ ସେ ବର୍ଣ୍ଣ ଦେଉଛଲେ
ବୌଦ୍ଧ ଅବତାର କଳିରେ ଖ୍ୟାତ
ନୀଳଚକ୍ରବାନା କରି ସୁମରଣା
ଉଦ୍ଧାର ହୁଅନ୍ତି କେତେ ପତିତ
ଧନ୍ୟସେ କ୍ଷେତ୍ର
ଦରଶନ ମାତ୍ରେ ପାପ ଦୂରନ୍ତ ରେ ।।୧।।

ଦୀନବନ୍ଧୁ ବୋଲି ନାମ ଶୁଣିଥିଲି
ଦେଖାଇ ପାରିବ ପୁରାଣ ଶାସ୍ତ୍ର
ମୋର ଦୁଃଖ ଦେଖି ଗଲକି ଚମକି
ଫୁଟି ଯାଇଛି କି ତୋ ଚକାନେତ୍ର
ହେ ରମାକାନ୍ତ
କି ଅବା ବଧିର ତୋ ଶ୍ରୁତିପଥ ରେ ।।୨।।

କା ଦୁଃଖ ହରୁଚ୍ଛ          କାହାକୁ ତାରୁଚ୍ଛ
ମନକୁ ପଶୁଣ ହୃଦରେ ଚେତ
ଲକ୍ଷେ ଯୋଜନକୁ          ପଠାଇ ଚକ୍ରକୁ
କୁମ୍ଭୀରକୁ କଲ୍ ପରାଣୁ ହତ
ମିଛ କି ସତ
ରକ୍ଷା କଲ୍ ପୁଣି ଗଜ ଆରତ ରେ ॥୩॥

ଶୁଣି ଯେତେବେଳେ          କୁରୁସଭା ତଳେ
ଦ୍ରୌପଦୀକୁ ଦୁଶା କଲା ବିବସ୍ତ୍ର
ବାହୁ ଟେକଦେଲ          ତାକୁ ରକ୍ଷାକଲ
ତା' ଡାକ ବାଜନ୍ତେ ତୋ ଶ୍ରୁତିପଥ
ଦେଖି ତା ବ୍ୟସ୍ତ
କେ ଯୋଗାଇଥିଲ୍ ଏ କୋଟି ବସ୍ତ୍ର ରେ ॥୪॥

ବନ ପୋଡ଼ି ବେଳେ          ମୃଗୁଣୀ ବିକଳେ
ଡାକଲା ରକ୍ଷା କର ହେ ଅଚ୍ୟୁତ
ଚକ୍ର କୁଟେ ମାୟା          ବିସ୍ତାରଣ କାୟା
ମୃଗୁଣୀକୁ କଲ ବନୁ ମୁକତ
ନୁହେଁ ଗୁପତ
ଶ୍ୱାନସଦ୍ଧ ମନ୍ଦ ଦୃଷ୍ଟ କରାତ ରେ ॥୫॥

ଆହୁରି ଗୋଟିଏ          ପ୍ରମାଣ ଦେଉଛୁ
ଅଜାମିଳ ପାପୀ ତାର ଅଛତ
କସ ନାଆ ଦେଲା          ମୁକତ ପାଇଲା
ମୋ ବେଳକୁ ତରଲେ ନାହିଁ ଚଉ
ତା ଠାରୁ ମୁଁ ତ
ନୁହେଁ ଦାନସାନ ଜନ ପଡତ ରେ ॥୬॥

ଦନ ଗ୍ରାହ ଡାକ          ଭଣିଯାଏ ଶୁଖି
ତେବେ ମୋ ଦୁଃଖ ନହୁଏ ଦୂରତ

ଇଚ୍ଛା ସୁଖେ ଗାଳି    ଦେବ ବନମାଳୀ
ଏଣିକ ଗରମ କଲ ରକତ
ହୁଅ ଶକତ
ଗାଳି ଶୁଣି ସମ୍ଭାଳି ରହିବତ ରେ ॥୭॥

କାଣେ ଖଣ୍ଡି ଖୁଦ    ସୁଦାମା ଦରିଦ୍ର
ଲକ୍ଷ ଦେଇଥିଲ ନୁହଁ ଗୁପତ
ସେଇ ଲକ୍ଷ ପାଇ    ଖୁଦ ଗଣ୍ଡାଖାଇ
ଦେଇଅଛ ତାକୁ ଅମୂଲ୍ୟ ବର
ମନରେ ଚିନ୍ତ
ତାହିକା ଆଦର ସବ ନାହିଁତ ରେ ॥୮॥

ଶବର ଅଇଁଠା    ବ୍ରାହ୍ମଣ ଗୋଇଠା
ଖାଇଛ କି ନାହିଁ କୁହନ ସତ
ନ ବୁଝିଲେ ମନ    ଦେଉଛୁ ପ୍ରମାଣ
ଶ୍ରୀ ବତ୍ସ ବ୍ରାହ୍ମଣ ମାଇଲା ନାତ
ମାଡ଼ ଆଘାତ
ଖାଇ ହୃଦେ ବହିଅଛ କେମନ୍ତ ରେ ॥୯॥

ଆମ୍ଭେ ନରପଶୁ    ରତ୍ନାକର ଦସ୍ୟୁ
କେତେ ପାପ ତାର କହି ନୁହେଁତ
କସ ଲକ୍ଷ ପାଇ    ତାକୁ ଶ୍ରୀବତ୍ସାଙ୍କ
ରାମ ଅବତାରେ କଲ ମୁକତ
ବାଲ୍ମିକୀ ଖ୍ୟାତ
ସେ ରଚିଥିଲେ ରାମାୟଣ ଗ୍ରନ୍ଥ ରେ ॥୧୦॥

ମନରେ ମୋହର    ପଡ଼ିଲା ଆଦର
ଦ୍ୱାପରର କଥା କହି ନାହିଁତ
କଂସର ଭୟରେ    ଜନ୍ମି ବନ୍ଦୀ ଘରେ
ଗୋପ ପୁରେ ବୋଲାଇ ନନ୍ଦ ସୁତ
ଗଉଡ଼ ଜାତ
ଖାଇ କରିଅଛ କାର୍ଯ୍ୟ ବିଚାର ରେ ॥୧୧॥

କ୍ଷୀର ପାନ ଦେଇ　　ପ୍ରାଣ ବଞ୍ଚାଇଲ
ଶେଷକୁ ପୁତନା କଲ ଅଦ୍ଭୁତ
ଭାଙ୍ଗି ଠେକ ବେକା　　ଛଣ୍ଡାଇଲ ଶିକା
ଚୋରି କଲ ସର ଲବଣୀ ଘୃତ
ଖାଇ କେମନ୍ତ
ଗଉଡୁଣୀ କେତେ ମାରନ୍ତି ବେଢି ରେ ॥୧୨॥

ହେଜ କଅ ମନେ　　ଯାଇ ରଘୁବନେ
ଅଙ୍ଗୁଳିରେ ଧରିଥିଲୁ ପର୍ବତ
ବଇଁଶୀ ବଜାଇ　　ମନକୁ ମଜାଇ
ଗୋପୀଙ୍କର ନେଲୁ ମାନ ମହତ
ନୁହେଁ କି ସତ
ପ୍ରମାଣ ଦେଉଛୁ ଶ୍ରୀ ଭାଗବତ ରେ ॥୧୩॥

ପୁଣି ଦାନକରେ　　ଯମୁନା ଘାଟରେ
ଘାଟ ସାଧୁଥିଲୁ ହୋଇ କୈବର୍ତ୍ତି
ରାଧା ପ୍ରେମେ ବାଇ　　ହୋଇ ଭାବଗ୍ରାହୀ
ଯମୁନା ମଝିରେ କଲୁ ଯେ କୃତ୍ୟ
କହୁ ନୁହେଁତ
ନାଶି ଚଉ ଚୋର ଯଶୋଦା ସୁତ ରେ ॥୧୪॥

ଗୋପୀଙ୍କ ପାଲଟା　　ବସ୍ତ୍ର ଚୋରି କରି
ଭାଙ୍ଗି ଦେଲୁ ତାଙ୍କ ରବଙ୍କ ବ୍ରତ
ଜାନୁ ଯଉବନ　　ଦେଖିବା ଛଳରେ
ମୋହନୀ ମନ୍ତ୍ରକୁ ଫୁଙ୍କି ବାରୁତ
ଗୋପୀ ସମସ୍ତ
ବସ୍ତ୍ର ମାଗିନେଲେ ଯୋଡ଼ଣ ହସ୍ତ ରେ ॥୧୫॥

ପଦ୍ମ ଫୁଲ ତୋଳି-　　ଦେଲୁ ବନମାଳୀ
କାଳନ୍ଦୀ ହ୍ରଦରେ କଲୁ ଯେ ନୃତ୍ୟ

କାଳି ଶିରେ ଚଢ଼ି କାଳଦର୍ପ ଦଳି
ମୁରଲି ବଜାଇ ଗାଇଲୁ ଗୀତ
ମୋହିଲୁ ଚିତ୍ତ
କାଳିନ୍ଦୀ ଜଳକୁ କଲୁ ପବିତ୍ର ରେ ॥୧୬॥

ଦିନେ ରାଧା ପୁରେ ଚନ୍ଦ୍ରସେଣା ଡରେ
ରାଧା ଘରେ ହେଲୁ ଚାବନା ଭୂତି
କୁବୁଜା ତାରିଲୁ କଂସକୁ ମାରିଲୁ
ମାମୁଁ ଓପରୋଧ ନ ରଖିଲୁତ
ଧନ୍ୟ ତୋ କୃତ୍ୟ
ଅନ୍ତ ନାହିଁ ଯେଣୁ ନାମ ଅନନ୍ତ ରେ ॥୧୭॥

ରୁକ୍ମଣୀକୁ ସ୍ନେହ କରିଅଛୁ ହରି
ନାରୀ ସ୍ନେହୀ ବୋଲି ରଟେ ଜଗତ
ବୃନ୍ଦାବତୀ ସତୀ ହେ କମଳା ପତି
ନଷ୍ଟ କରିଦେଲୁ ତାର ସତୀତ୍ୱ
ନୁହେଁ କି ସତ
ଯେତେକ ପ୍ରମାଣ ଦେଇ ଗଲିତ ରେ ।।୧୮॥

ଆହୁରି ପ୍ରମାଣ ଦେଉଛି ପୁରାଣ
ଲେଖିଲେ ବାହୁଲ୍ୟ ହେବ ବହୁତ
ତୋର ଆଦିଅନ୍ତ ବ୍ରହ୍ମାଙ୍କୁ ଅଜ୍ଞାତ
ମୁଁ ତୁଚ୍ଛ ମନୁଷ୍ୟ କେତେକ ମାତ୍ର
ହେ ରମାକାନ୍ତ
ମା' ସାରଳା ପାଦେ ରହୁ ମୋ ଚିତ୍ତ ॥୧୯॥

ପଢ଼ି ନାହିଁ ଅଭିଧାନ ବ୍ୟାକରଣ
ଅମର କୋଷ ଭୂଗୋଳ ସାହିତ୍ୟ
ଗ୍ରନ୍ଥକୁ ଡରିଣ ପାଠ ନ ପଢ଼ିଣ
ମା' ସାରଳା ପାଦେ ରଖିଲି ଚିତ୍ତ
ଯବନେ ଜାତ
ବାକରକୁ କଂପା କଲି ଏମନ୍ତ ରେ ॥୨୦॥

**

**✻✻**

# ପ୍ରଭୁ ଦୟାଳୁ ହରି

## ଶେଖ୍ ବାକ୍‌କର ମହମ୍ମଦ

(ବିଂଶ ଶତାବ୍ଦୀ)

[ସ୍ୱରୁ ସ୍ୱନ୍ଧନୀରଛ କାଟେ ମୀରବେ କଛ-ବୃତ୍ତେ]

ପ୍ରଭୁ ଦୟାଳୁହରି ଦୁଃଖ ଦେଖି ମୋହରି
ତୁମେ ଗଲକି ଡରି ଡରନା।
(ମୁଁ) ବଡ଼ ଆଶା କରି ଡାକେ
ଡାକ ଶୁଣନା ॥ ଘୋଷା ॥

ମାଗେନା ମୁଁ ଧନଜନ
ମାଗେନା ମୁଁ ସଂପଦ
ଲୋଡ଼େ ନାହିଁ ଦିଅ ମୋତେ
ଇନ୍ଦ୍ରଙ୍କ ଇନ୍ଦ୍ରପଦ
ଲୋଡ଼ା ତୁମ୍ଭ ପୟର
ଆଶା ଦିଅନ୍ତୁ ମୋରେ
ଆଉ ନାହିଁ କାହିଁରେ କାମନା ॥୧॥

କଏ କସ ଦେଲ ପ୍ରଭୁ
ମୁଁ କି ଅବା ନ ଦେଲି
ସେ ଯୋଗେ ହେ ମହାବାହୁ
ତୁମ୍ଭର ମୁଁ ନ ହେଲି
ଯାହା ଇଚ୍ଛା ତୁମ୍ଭର
ତାହା ଦିଅନ୍ତୁ କରି
ଭଜୁଥିବି ଶ୍ରୀହରି ଭଜନା ॥୨॥

ପତିତ ଜନଙ୍କୁ ପ୍ରଭୁ
ଉଦ୍ଧାରିବା ପାଇଁକି
ପତିତପାବନ ବାନା
ବୋଲାଇଛ କାହିଁକି ?
ଏବେ କରନ୍ତୁ ତାହା
ଦାସ ପ୍ରତିକି ସାହା
ହେଉ ସେ ଚଉବାହା କରୁଣା ।।୩।।

ତୁମ୍ଭ ପଦ୍ମପ୍ରଭୁ ଆଉଁ
ହେଲେ ମୋରେ କୃପଣ
ହସୁଥିବେ ଦେଖୁଥିବେ
ଏହି ଜଗତଜନ
ମୋହ ପରାସ୍ତ ଦୁଃଖୀ
କାହିଁ ଅଛକି ଦେଖି
ନୁହଁ ହେ ଚକାଆଖି ବମନା ।।୪।।

ଗଉରବ କରି କେତେ
ଗାଉଥାନ୍ତି ଭଗାରି
କର୍ଣ୍ଣେ ଭରି ସବୁ ଶୁଣେ
ନେତ୍ରୁ ବୁହାଇ ବାରି
ତୁମ୍ଭେ ରହିଛ ସାକ୍ଷୀ
ମୁଁ ଯେ କହୁଛି ତାକି
ସେତେବେଳକୁ ଫାଙ୍କି ଦେବନା ।।୫।।

ବିପଦର ଧାଡ଼ି ଯେତେ
ଯେତେ ଆସଇ ମାଡ଼ି
କେତେ ବା କହିବ ହେଜି
ମନରୁ ଯାଏ ହୁଡ଼ି
ଭକ୍ତ ବତ୍ସଳ ଦାତା
ତୁମ୍ଭଙ୍କୁ କେଉଁ କଥା
ଛପି ରହୁଛି କି ତା ଅଜଣା ।।୬।।

ମୋର ଶେଷ ସମୟରେ
ଜପିଣ ନାମ ତବ
ଏହୁ ଦୟା ରଖିଥିବ
ଗଲାବେଳେ ଏ ଜୀବ
ଜିହ୍ୱା ଅଗ୍ରରେ ଜାଣ
ଥିବ ହେ ନାରାୟଣ
ତେବେ ପୂରିବ ମନ କାମନା ॥୭॥

ଶେଷେ ମୋର ଦରଖାସ୍ତ
ଅଛେ ପ୍ରଭୁ ଏତକ
କର ଯୋଡ଼ି ଜଣାଉଛି
ଶ୍ରୀ କମଳା ପତିଙ୍କି
ଲୁହେଁ ମଉନ ମୁହାଁ
ଚେଇଁ ସ୍ୱହଁ ନା କଆଁ
ତାକେ ବାକର ମିଆଁ ରଚନା ॥୮॥

**

**

## ନନ୍ଦ ନନ୍ଦନ ହେ ଜଗା କାଲିଆ

### ଶେଖ୍ ବାକ୍‌କର ମହମ୍ମଦ

(୨୦ଶ ଶତାବ୍ଦୀ)

[ବିଭୁ ଭଙ୍ଗି ଦାଅ ଖେଳ ଚଞ୍ଚଳ-ବୃନ୍ଦେ]

ନନ୍ଦ ନନ୍ଦନ ହେ ଜଗା କାଲିଆ
କଳି ଯୁଗେ ହେଲ ନଳ ଚଲିଆ
ମୋର୍ ଫିରାଦକ ନାହିଁ ଶୁଣେଁ ଛେ
(ପ୍ରଭୁ) ଗୋପାଲୁନ ଟୁକ୍‌କ ମେଲିଆ ॥ ଘୋଷା ॥

ଆର୍ କେନ୍ତା କରି ଡାକନ୍ତୁ ହେ ହରି
ସେଇ ଭଲି ଡାକନ୍ତୁ ଶିଖା ଦେ
ଅଶେଷ ଭଲି ହେ ବନମାଲି
 ତୋର୍ ନାମ ରହିଛୁ ଜଗତେ
ସକାଲେ ବେଲ୍ ବୁଡ଼େ ଯେତେ ଡାକଲି
ତୋର ମାୟା ନାହିଁ ଜାନି ପାରଲି
କପାଲେ ଜଣାଅଛୁ ମୁଁ ଭାବଲି
ଜାନ୍ ନାହିଁ ହେଲୁ କାଲ୍ ଭଲିଆ ॥ ୧ ॥

ବନରେ ହରିନ ଡାକଲା ବେଳେ
କେନ୍ତା କରି ଡାକ୍ ଶୁନଲୁ
ହାତି ଯେ ଡାକଲା ତା ଡାକ ଶୁଣିଲୁ
 ରଖିଲୁ କୁମ୍ଭୀର କବଲୁ
ପାଞ୍ଚାଲୀ ଡାକଲା କୁରୁ ସଭାରେ
କୋଟି କୋଟି କପଡ଼ା ଦେଲୁ ତାହାରେ
ଦୟାଳୁ ନାହିଁ ବାହୁଲ ମୋ ପରେ
କେଁ ଦୁଃଖା ଅଛୁ ମୋର୍ ଭଲିଆ ॥ ୨ ॥

ମୋର୍ ପରି ଦୁଃଖୀ ହେ କମଲ୍ ଆଖି
 ହୃନଆତେ ନାହିଁ ନେ ଦେଖି
ଡାକେଁ ଡାକେଁ ମୋର ହଲକ୍ଠା ଶୁଖିଲା
ତୁହ୍ନେ ଯେ ହୋଇଲ ବିମୁଖ
ଭବ ବନୋଦିଆ ପ୍ରଭୁ ଶ୍ରୀ ହରି
ଶୁନ୍ ଶୁନ୍ ଏ ଗରିବ ଗୁହାରି
ବଦନ୍ କାଣ୍ଡା ହେଲାଣି ଝୁରି ଝୁରି
ଆଁ ଖି ଖୁଲି ଦେଖ୍ ମୟୁର ଚୁଲିଆ ॥ ୩ ॥

ଧ୍ରୁବ ପ୍ରହ୍ଲାଦ ବିଷମ ପ୍ରମାଦେ
 ଭଲି ଭଲି ବେଣୁ ରଖିଛୁ
ଇନ୍ଦ୍ରର ଗର୍ବ ଖର୍ବ ଯେ କରି
ଉବରି ହାତେ ପାହାଡ଼ ଧରିଛ

କେନ୍ତା ରୁଷା ହେଲ ମୋର୍ ବେଲ୍‌କୁ
ଯେତେ ଘବ୍ରାଇଁ ଡାକୁଁଛେଁ ତୁମ୍‌କୁ
ଆର୍ ଶୁନବକ ମଲବେଲ୍‌କୁ
ବାକ୍‌କର ଡାଁ କ ଡାଁ କ ହେଲା ହାଲ୍‌ଆ ॥ ୪ ॥

**

**

## ବଡ଼ ଦଅଁ କେ କହେ କାହ୍ନୁଁ କ

### ଶେଖ୍ ବାକ୍‌କର ମହମ୍ମଦ

(ବିଂଶ ଶତାବ୍ଦୀ)

[ଜବ୍ ପ୍ୟାର କ୍ୟାତୋ ଡରନା କ୍ୟା-ବୃତ୍ତେ]

ବଡ଼ ଦଅଁ କେ କହେ କାହ୍ନିକ
ବଡ଼ ଦଅଁ କେ କହେ କାହ୍ନୁଁ କ
ବଡ଼ ଯେ କହେ ମୋ ପ୍ରାଣ ଦହେ
ବଡ଼ ଯେ କହେ ମୋ ପ୍ରାଣ ଦହେ
ଖଣ୍ଡରୁ ଅଧିକ ତୁମେ କ
ବଡ଼ ଦଅଁ କେ କହେ କାହ୍ନିକ ॥ ଘୋଷା ॥

କପଟ ବଟୁ ବାମନ ହୋଇ
ପାତାଳେ ଥୁପିଲ ବଳିକ
ବଳି ସଂପଦ ନେଇ ଗୋବନ୍ଦ
ସଖା ସୁଦାମାକୁ ଦେଲ କ ॥ ୧ ॥

ସୁଗ୍ରୀବେ ମିତ ହେଲ ଅଚ୍ୟୁତ
ଆପଣାର ସ୍ୱାର୍ଥ ପାଇଁକ
କପଟ କର ବାଲୀକୁ ମାର
ରଜା କରଇଲ ସୁଗ୍ରୀବ ॥ ୨॥

ବଇ ଲୋଚନ          ନେଲ ତାଂ ପ୍ରାଣ
କପଟେ ହୋଇ ତା' ନାଶକ
ବୃନ୍ଦାବତୀର          ନେଲୁ ସତୀତ୍ୱ
ଜଳନ୍ଧର ରୂପ ଧରନ୍ତ ॥୩॥

କୁଞ୍ଜ ବନରେ          ବଂଶୀ ସ୍ୱନରେ
ଷୋଳ ସହସ୍ର ଗୋପୀ ମୋହକ
ରଚ କପଟ          ସାଧିଲ ଘାଟ
ଟାପରା କଲ ଯା ମାଙ୍କ ॥୪॥

ଗୋପୀକା ଗଣ          ବସ୍ତ୍ର ହରଣ
ଯାହା ଅପମାନ କଲକ
କୁରୁ ସଭାରେ          ବିବସ୍ତ୍ର ବେଳେ
ଦ୍ରୌପଦୀକୁ ତାହା ଦେଲକ ॥୫॥

ହେ ମାୟାଧର          ମାୟା ତୁମର
ବ୍ରହ୍ମା ଶିବ ନ ପାଆନ୍ତ କ
ମର୍ତ୍ତ୍ୟ ମାନବ          କାହୁଁ ଜାଣିବ
ଆଦ୍ୟଅନ୍ତ ଯାର ନାହିଁକ ॥୬॥

କଳି ଯୁଗରେ          ନୀଳା ଚଳରେ
ଦାରୁବ୍ରହ୍ମ ରୂପ ଧରକ
ମୂକ ଦେବତା          ନ କହେ କଥା
ଏ ବାକରମିଆଁ ପାଇଁକ ॥୭॥

**

**

# କିଏ ଦେଲା ଦୟାନିଧି ନାମଟି

## ସେଖ୍ ବାକ୍‌କର ମହମ୍ମଦ

(ବଂଶ ଶତାବ୍ଦୀ)

[ମନ ମୂଷା ହୋ ତୁହି ଗଞ୍ଜାଇ ଖାଇ-ବୁଲୁ]

ବଡ ଧଇଁ ହେ, ତୁମେ ବଡ କପଟି
ବଡ ଧଇଁ ହେ
କାହାକୁ ହସାଅ କାହାକୁ କନ୍ଦାଅ
କିଏ ଦେଲା ଦୟାନିଧି ନାମଟି ॥ଘୋଷା॥

କେ ହୁଏ ଭୂପତି କିଏ ଚକ୍ରବର୍ତ୍ତୀ
ଦାସଦାସୀ ପୋଇଲି ଥାନ୍ତି ଖଟି
କେ ହୋଇ ଫକୀର ବୁଲେ ଦ୍ୱାର ଦ୍ୱାର
ଯୋଗୀ ହୋଇ କିଏ ମାଗୁଛି ମୁଠି ॥୧॥

କେ ଖିଆ ଖେଚଡ଼ି ଖାଉଛି ହାପୁଡ଼ି
କେତେ ଖାଇ କେତେ ଫିଙ୍ଗି ଦିଏଟି
ଉପବାସେ କିଏ ପେଟକୁ ନପାଏ
କିଏ ଖାଉଅଛି ପତର ବୁଟି ॥୨॥

ପାଟମଠା ଧୋତି କିଏ ପିନ୍ଧୁଥାନ୍ତି
ଜୋତା ମୋଜାରେ କା ଲୁଚେ ଗୋଇଠି
କିଏ ବା ବିବସ୍ତ୍ର କିଏ ଚିରାବସ୍ତ୍ର
କୌପିନେ ପକାଇ ସତର ଗଣ୍ଠି ॥୩॥

ଗୁଲିପୁଷ୍ପ ଶଯ୍ୟାକେ କରଇ ମଜା
ଶୋଇ ଶୋଇ ଧନ ଯାଇଛୁ ଗୁଲି
ଆଉ ଜଣେ କଏ କଚଗୁ ନ ପାଏ
ତା' ଧନ ଯାଉଛୁ ଧୂଳରେ ଲେଟି ॥୪॥

କାହାଘରେ ଜନ ବହୁତ ସନ୍ତାନ
ନାଉ ଦେଖି ଅଣନାଉ ଦେଖେଟି
ଅଣ୍ଡୁକୁଡ଼ା ଘରେ ପୁଅଟି ଜନ୍ମିଲେ
ଅଲୁଡ଼ ଶାଲରୁ ଚପୁଛୁ ତଣ୍ଟି ॥୫॥

କହୁଇ ବାକର ମୁଁ ପାପୀ ପାମର
ପୁଅ ଗୋଟେ ଦେଲ ଝିଅ ପାଞ୍ଚୋଟି
ତାଙ୍କ ପାଇଁ ଖା'ଦ୍ୟ ନ କଲ ବଗ୍ଦ
ମତେ ମୋହ ମାୟା ଭବେ ମାରୁଛ ଘାଣ୍ଟି ॥୬॥
**

**

# ପୁରୀ ଦେଉଳ ମନ୍ଦିର ଭିତର

## ଶେଖ୍ ବାକ୍‌କର ମହମ୍ମଦ

(ବିଂଶ ଶତାବ୍ଦୀ)

[ସମ୍ବଲପୁରୀ ଭାଷାରେ ଗାଇବ]

ପୁରୀ ଦେଉଳ ମନ୍ଦର୍ ଭିତର
କେନ୍ତା ମଉନେ ବସିଛୁ
ହାଏ ମାପୁର କାଁ ଏଁ ହେଲ୍ ଯେ ମୋର୍
ଗୁହାରଟା ନାହିଁ ଶୁ ନୁଛେ ॥ ଘୋଷା ॥

ସତ୍ୟବ୍ରତ ରଜା ଙ୍କେ ରୂପେ
ଯେନ୍ ଭାବେ ପ୍ରାନ ରଖିଲୁ
(ରୁଯେ) ଯେନ୍ ଭାବେ ପ୍ରାନ୍ ରଖିଲୁ
ପ୍ରଲୟ ବେଲେ ନାଆର ପରେ
ବାଞ୍ଚବା ସୃଷ୍ଟି କହ୍ଲୁ
ଶଙ୍ଖାସୁର୍ଟାର ଜାନ୍ ନିକାଲି
ଶଙ୍ଖାସୁର୍ଟାର ଜାନ୍ ନିକାଲି
ବ୍ରହ୍ମାଙ୍କୁ ବେଦ ଦେଇଛୁ
ହାଏ ମାପୁର କାଁ ଏଁ ହେଲା ଯେ ମୋର୍
ଗୁହାରଟା ନାହିଁ ଶୁନୁଛେ ||୧||

ସତ୍ୟ ଯୁଗେ ବାମନ୍ ରୁପେ
ବଲ୍‌କ ଦାନ ମାଗ୍‌ଲୁ
(ରୁଯେ) ବଲ୍‌କ ଦାନ୍ ମାଗଲୁ
ନାହିଁ ଜାନ ସେ ସତ୍ୟ କଲା
କେନ୍ ଭଲ୍ ତାକେ କରଲୁ
ତିନପାଦ ଜମିନ ମାଗି
ତିନପାଦ ଜମିନ ମାଗି
ବଲ୍‌କ ପାତାଲେ ଚାପିଛୁ
ହାଏ ମାପୁର କାଁ ଏଁ ହେଲା ଯେ ମୋର୍
ଗୁହାରଟା ନାହିଁ ଶୁନୁଛେ ||୨||

ତ୍ରେତୟା ଯୁଗେ ରାମ ଅବ୍‌ତାରେ
ତାଡ୍‌କାସୁରୀ ମାଏଲୁ
(ରୁଯେ) ତାଡ୍‌କାସୁରୀ ମାଏଲୁ
ଅହଲ୍ୟାନାରୀ ପଷାନୁ ତାରି
ମିଥିଲାର ଧନୁ ଭାଙ୍ଗ୍‌ଲୁ
ଆଗା ରେକେ ପଶୁରମରାନ
ତା'ଟା ଦପ ହରିଛୁ
ହାଏ ମାପୁର କାଁ ଏଁ ହେଲାଯେ ମୋର
ଗୁହାରଟା ନାହିଁ ଶୁନୁଛେ ||୩||

ତ୍ରୁଆର ସତ୍ତ୍ୟ ଦନଦାସ୍ୱରେ
ଦୋଷ ନାହିଁ ବାଲି ମାଏଲୁ
ସୁଗ୍ରୀବେ ମିତ ବଲଲ୍ଲ ଚଉ
ଏନ୍ତା କାଁଣା ପାଇଁ କରଲୁ
ରାବନ୍ ବଂଶ କରି ବିନାଶ
ବିଭିଷନେ ରାଜା କରଲୁ
ହାଏ ମାପୁର କାଁଏଁ ହେଲ ଯେ ମୋର
ଗୁହାରଟା ନାହିଁ ଶୁନୁଛେ ॥୪॥

ଦ୍ୱାପର ଯୁଗେ ଦେବ୍କି ଗର୍ଭେ
ଗୁପ୍ତେ ହେଇଲୁ ଜନ୍ମ
(ଭୁଯୋ) ଗୁପ୍ତେ ହେଇଲୁ ଜନ୍ମ
କାଁଏଁ ଦେଲ ଯେ ଦୌପଦୀକୁ
ଦେଇଅଛୁ କୋଟିବସ୍ତ୍ର
ପଞ୍ଚ ପାଣ୍ଡବକେ ସଖାହୋଇ
କୌର୍ବ୍ ପରାନ୍ ନେଇଛୁ
ହାସ୍ମ ମାପୁର କାଁଏଁ ହେଲ ଯେ ମୋର
ଗୁହାରଟା ନାହିଁ ଶୁନୁଛେ ॥୫॥

ଧନୁ ଯାଗାକେ ଡାକଲା ମାମୁଁ
ଯେନ୍ତା ସେଠାରେ କର୍ଲୁ
(ଭୁଯୋ) ଯେନ୍ତା ସେଠାରେ କର୍ଲୁ
ଦେଖି ଦେଖି ସେ ପଡ଼ିଲା ମରି
କେନ୍ ମନ୍ତ୍ରକେ ମାଏଲୁ
ସୁଦାମ୍ ଦେଲା ଖାଜ୍ଲା ଖୁଦ୍
ଖାଏ ଦଉଲତ୍ ଦେଇଛୁ
ହାଏ ମାପୁର କାଁଏ ହେଲଯେ ମୋର
ଗୁହାରଟା ନାହିଁ ଶୁନୁଛେ ॥୬॥

କଳିଯୁଗେ ନୀଳାଚଳେ
କଲ୍କି ଲୀଳା ଆସିଲୁ
(ତୁଯେ) କଲ୍କି ଲୀଳା ଆସିଲୁ
ଧନ୍ୟ ତୋ ଲୀଳା ହେ ଚକାଡୋଳା
ଷାଠିଏ ପଉଟି ଖେଳ୍ଲୁ
ବାକର ମିଆଁର ଦୁକ୍ଠା ଦେଖି
କେନ ଗାଁଏ ଲୁକ ରହୁଛୁ
ହାଏ ମା ପୁର କାଁ ଏ ହେଲା ଯେ ମୋର
ଗୁହାରୀଟା ନାହିଁ ଶୁନୁଛେ ॥୭॥

**

**

# ଚାଲ ନୀଳାଚଳ ଦରଶନେ

## ଗୋଲୋକ ଚନ୍ଦ୍ର ମହାନ୍ତି

(ବିଂଶ ଶତାବ୍ଦୀ)

ଚାଲ ନୀଳାଚଳ ଦରଶନେ······
ନନ୍ଦ ଘୋଷେ ନନ୍ଦ-ନନ୍ଦନ ବିଜେର
ପଣ୍ଡିତ ଜନ ଉଚ୍ଚାରଣେ ।।

ଆଗେ ଚାଲେ ରଥ ତାଳଧ୍ୱଜ
ତହିଁ ବିଜେ ବଳଭଦ୍ର ରାଜ
ମଧ୍ୟେ ଚାଲିଛନ୍ତି ସୁଭଦ୍ରା ସୁନ୍ଦରୀ
ବସି ଦେବୀ ରଥ ଯାନେ ।।୧।।

ପଛେ ଚକ୍‌କଣ କାଳିଆ ଜଗା
ଆହା କଳା ଶ୍ରୀମୁଖ କି ଶୋଭା
ଜଳ ଜଳ କାନ୍ତି ଝଟକ ଦଶେରେ
ତା ସମ କଏ ଭୁବନେ ।।୨।।

ଘିଡ଼ି ଘିଡ଼ି ଚାଲେ ଢନରଥ
ଘଣ୍ଟା ମାଦଳ ଝାଞ୍ଜି ଝମକ
ପାପୀ, ତାପି, ତପୀ ତରିବା ଆସରେ
ଚାହିଁ ସେ ଚକା ନୟନେ ।।୩।।

**

**

# ସବୁ ତୁମରି ଲୀଳା

## ଗୋଲୋକ ଚନ୍ଦ୍ର ମହାନ୍ତି

(ବିଂଶ ଶତାବ୍ଦୀ)

ସବୁ ତୁମରି ଲୀଳା, ଚକାଡୋଳା ହେ
ଯାହାତ ଦେଉଚ, ତାହାତ ନେଉଛ, ଜନେ ଜାଣିବାକୁ କରୁଛ ଖେଳା
||ଘୋଷା||

ଦାନ ଦେବା ଛଳେ ବଳିକୁ ନାଶିଲ,
ବଳିଦାନେ କର୍ଣ୍ଣ ସୁତକୁ ଦେଲ
ଦେଇ ଦେଇ ଶେଷେ ଦାତା ହରିଶ୍ଚନ୍ଦ୍ର,
ମଶାଣି ଦୁଆରେ ପ୍ରେତ ଜଗିଲ ||୧||

ଭରତ ସମରେ ହାତ ପତାଇଲ
ଭୀମସୁତ ନିଜ ସୁତକୁ ଦେଲ
ଅସ୍ଥିଦେଇ ମଲ ଦଧୀଚି ମହର୍ଷି
ଆଉ କେଉଁ ଦାନ ବାକୀ ରହିଲ ||୨||

ବଜ୍ଞାମୀ ଧୀବର, ଧୋଇଲ ପୟର
ପରମ ପଦ ସଂପଦ ପାଇଲ
ଅଜ୍ଞାନ ଶବର ପେଷିଡ଼ା ନାଗର
ଛନ୍ଦା ଚରଣରେ ଶରଣ ନେଲ ||୩||

କି କଲ ଗରିବ, ହେ ଦୀନ-ବାନ୍ଧବ
ଦୀନ ଜନେ ଊଣା କରୁଣା ହେଲ
ଦୟାନିଧି ନାମ ବହୁଛ କିପାଇଁ
ଭସିଯାଏ ଦୀନଜନର ଭେଳା ||୪||

**

**

# ପତିତପାବନ ବାନାକୁ ବନ୍ଦ

## ଗୋଲୋକ ଚନ୍ଦ୍ର ମହାନ୍ତି

(ବିଂଶ ଶତାବ୍ଦୀ)।

ପତିତପାବନ ବାନାକୁ ବନ୍ଦ          ନୀଳାଦ୍ରି ଶିଖେ ସଜେ କର ସାଇଁ
ମୁକତ ଧ୍ୱଜାକୁ ବନ୍ଦ ଶିଖରେ          ରତ୍ନ ସିଂହାସନେ ବସି ଦମ୍ଭରେ ହେ
ଲକ୍ଷଲକ୍ଷ ପଶୁପକ୍ଷୀ ହେ
ଦେବାନନ୍ଦି ତୁମ ଚରଣ ସେବାରେ   କରୁଛନ୍ତି ନଉକରି ହେ ॥୧॥

ବଡ଼ ସାଆନ୍ତଙ୍କ ବଡ଼ ମହିମା          କହିଲେ ନ ସରେ ଗୁଣ ଗରିମା
ହୁଣ ପଡ଼ୁଅଛି ସ୍ୱର ଦଗରେ          ସାଗର ସୈକତ ଧୀର ସମୀରେ ହେ
ତୁମର ମହିମା ଗାନ ହେ
ଚଉଦିଗ ଯାକ ଉଚ୍ଛୁଳି ପଡ଼ୁଛି      ତୁମେ ବଡ ମହାଜନ ହେ ॥୨॥

ତୁମପାଇଁ ଖଜା ଖଣ୍ଡ ଶାକର          କ୍ଷିରି ମାଲପୁଆ ଲବଣୀ ସର
ଷାଠିଏ ପଉଟି ଅନ୍ନବ୍ୟଞ୍ଜନ          ଭୋକେ ଛଟପଟ ଏ ଦୀନଜନ ହେ
ନିତି ଉପାସରେ ମରେ ହେ
କଣିକା ମାତର ଦେଲେ କି ତୁମର   ଅକ୍ଷୟ ଭଣ୍ଡାର ସରେ ହେ ॥୩॥

ନ ଜାଣି ବୋଲନ୍ତି ବରଜବାଳୀ        ଶଠ, ଲମ୍ପଟ, ଧୃଷ୍ଟ, ବନମାଳୀ
ଏତେ ନିଷ୍ଠୁର ହେଲେ କି ହୋଇବ      କା ପାଦେ ପାଷାଣ ତରଳିଯିବ
ଅଂଗୁଳି ଅଗ୍ରରେ ଧରି ହେ
କେତେ ମହାବଳୀ ଦେଇଥିଲ ଟେଳି ଅଲକ୍ଷେ ମନ୍ଦରଗିରି ହେ ॥୪॥

ଅନଳ, ଅନିଳ, ସଲିଳ ତୁମେ      କ୍ଷିତି ତେଜ ବ୍ୟୋମ ଏହି ପଞ୍ଚଣେ
ତୁମବିନା କାହୁଁ ରହିବ ପ୍ରାଣ          ଦିଅ ବିଶ୍ୱପତି କରୁଣାଧନ ହେ
ଘୁଞ୍ଚି ଯିବ ଏ ଦୁର୍ଗତି ହେ
ଦୀନଜନେ ଦୟା କଲେ ଚଉବାହା କାଳକୁ ରହିବ କୀର୍ତ୍ତି ହେ ॥୫॥

**

**

# ଦେଇଛ ସବୁ ହେ

## ଶ୍ରୀ ବିଦ୍ୟାଧର ସାମନ୍ତରାୟ

(ବିଂଶ ଶତାବ୍ଦୀ)

[ରାଗ-ରାମକେରୀ]

ଦେଇଛ ସବୁ ହେ ଜଗତ—
ନାଥ କିସ ମାଗିବି
ଦିଅ ସମସ୍ତଙ୍କି ଶକତି
ଖାଲି କାମେ ଲାଗିବି

ହୃଦ ମୋ ରୂମର ବଗିଚା
ତହିଁ ମାଳୀ ହୋଇବି
ବଦଗୁଣେ ବାଛି ଫୋପାଡ଼ି
ସଦଗୁଣ ରୋଇବି ।

ଭକତି ସୁମନ ତୋଳିକି
ସ୍ନେହ ସୂତେ ଗୁନ୍ଥିବି
ଆକୁଳ ଲୋତକ ଜଳରେ
ଧୋଇ ପଦେ ସମର୍ପିବି ।

ଭୋଗ ବିଳାସରେ ନମଜି
ତବ ପଦ ପୂଜିବି
ଅପକାର କେହି କଲେ
ଉପକାରେ ଶୁଝିବି ।

ଗର୍ବ ଅହଂକାର ଯେତେକ
ଖୋଜ ବେକ ମୋଡ଼ବ
ଖଳ ଜନ ପାଶେ ନ ପଶି
ସାଧୁ ସଙ୍ଗ ଲୋଡ଼ିବ

ନ ଜାଣେ କିଛୁ ମୁଁ ତୋ'ଦୟା
କଲେ ସବୁ ଜାଣିବ
ନୀରୁଁ କ୍ଷୀର ହଂସ ବାରଇ
ଭେଲୁଁ ଭଲ ଗୁଣିବ ।

ମୋହନ ବାମନ ମୂରତି
ହୃଦ କଂଜେ ଥାପିବ
ମହା ମୋଦେ ଘୋଷି ତୋ ମଧୁ
ନାମ କାଳ ଯାପିବ ।
**

**

# ଚକାଆଖି ବଡ଼ ଠାକୁର

## ଶ୍ରୀ ବଦ୍ୟାଧର ସଉତରାୟ

(ବିଂଶ ଶତାବ୍ଦୀ)

[ରାଗ-ରାମକେରୀ]

ଚକାଆଖି ବଡ଼ ଠାକୁର
ଛନ୍ଦ ଗୁଡ଼ିଲ ନାହିଁ
ଛନ୍ଦରେ ଯଶୋଦା ବାନ୍ଧିଲ,
ଧନେ ମନେକ ନାହିଁ ।

ଯମଳ ଯାମଳା ଅର୍ଜୁନ
ତରୁ ଭଜିଲ ସାଇଁ
କ୍ଷୀର ପିଇଁ ପ୍ରାଣ ଶୋଷିଲ
ମଲା ପୂତନା ମାଇ ।

ମାଟି ଖିଆ ଛଳେ ମାତାଙ୍କୁ
ଦେଲ ବିଶ୍ୱ ଦେଖାଇ
ରାଧିକା ମାନସ ମୋହିଲ
ପ୍ରେମ ମଧୁ ଚଖାଇ ।

ହଠ କରି ଘାଟୁ ଗୋପୀଙ୍କ
ବାସ ନେଲ ଚୋରାଇ
ହଠ ହଠା କରି ମିଛରେ
ଶେଷେ ଦେଲ ଫେରାଇ ।

ଭକୁଆ କରିଲ ବିରଞ୍ଚି
ଗୋପୁଁ ଚରଉ ଗାଈ
ବାସବ ଗରବ ଗଞ୍ଜିଲ
ଗିରି ଧରି ଗୋସାଇଁ ।

ଶତଦଳ ତୋଳୁଁ ଦଳିଲ
କାଳୀ ମଣ୍ଡିଲ ସାଇଁ
କଂସ କେଶୀ ନାଶିବ ସତେକି
ତୁମେ ହେଲ କଂସାଇ

ଛପନ ପଉଟି ଭୋଗ କି
ଖାଇ ପଡ଼ିଛ ଶୋଇ
ଶୁଣୁଛ ଡାକଲେ ଯେତେ ମୁଁ
ପଦେ ମୁଣ୍ଡ ବାଡ଼େଇ ।

ଗାଢ଼େ ମାଡ ଦେଲେ ଏ ମୂଢ଼
ପଥ ହୁଡ଼ିବ ନାହିଁ
କଷଣ ଭୂଷଣ ମଣିବ
ସଦା ଶ୍ରୀ ପଦ ଧ୍ୟାୟି

**

**

## ତୁମ୍ଭେ ପ୍ରଭୁ ଜଗନ୍ନାଥ

**ଶ୍ରୀ ବିଦ୍ୟାଧର ସଉତରାୟ**

(ବିଂଶ ଶତାବ୍ଦୀ)

[ରାଗ-ପଞ୍ଚମ ବରାଡ଼ି]

ତୁମେ ପ୍ରଭୁ ଜଗନ୍ନାଥ
ଜଗତେ ଏକା ସାରଥ
ତୁମେ ଶିବ ମଧୁମନ୍ତ୍ର ଭବେ
ତୁମ ବିନେ ଅମଙ୍ଗଳ—
ସଂସାର ଆପଦ ସ୍ଥଳ
ତୁମ ଦେଶ ସୁନ୍ଦର ସରବେ
ହେ-ନାହିଁ ଯହିଁ-ମଣିହରା ଫଣୀ ଜାଣ ସେହି
ତବ ହାସେ ହସେ ଫୁଲ ତେଣୁ ତାର ନାହିଁ ମୂଲ
ଦୋଷେ ଥରହର ହୁଏ ମସ୍ତୀ ।

ଧନ୍ୟ ତୋହର ହୁନ୍ଦର—
ସାଗର ରୁଦ୍ର ସୁନ୍ଦର
କାନ୍ତ ଶାନ୍ତ ଅବନୀ ଅମ୍ବର
ତେଜେ ରବ ଦିଏ ଜାଳ—
ଶଶିଯାଏ ସୁଧା ଢାଳି

ଉଷା ସନ୍ଧ୍ୟା ଅତି ମନୋହର
ଏ-ତୋହେ ଖେଳ-ଦେଖି ଦେଖି ଜନ ହୁଏ ଭୋଳ
କଳି ନ ପାରେ ମାନବ—
ତୋହ୍ମ ମହମାସ୍ତୁ ଭାବେ
ଘୁରେ ଖାଲି ମିଛେ ଆର୍ତ୍ତି ରୋଳ ।

ହେ ଠରେ ସତ୍ୟ ସୁନ୍ଦର ଅମୀୟ ଶାନ୍ତ ନିର୍ଝର
ମେଲି ଦିଅ ଦୟା ବାହୁ ଲବେ
ତବ ଅମୃତ ସନ୍ତାନ ମୂଢ଼ ବିଶ୍ୱ ବାସୀଜନ
ଅବଗାହି ତୃପ୍ତି ଲଭୁ ଭବେ
ସେ-ମୁକ୍ତ ସୁଧା-ଚଖା ଅରୁଚି ବିଷୟ ବାଧା
ଢନଗଲ କାନ୍ଦି କାନ୍ଦି ମିଛେ ଖାଲି ହୋଇ ଧନ୍ଦ
(ଏବେ) ଆଚରନେ ବଳାଇ ଶରଧା ।

**

**

# କ୍ଷେତ୍ର ପୁରୁଷୋତ୍ତମ

## ଶ୍ରୀମତୀ ସୁନ୍ଦରମଣି ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ପବିତ୍ର ଭାରତ-ସରସୀ ବକ୍ଷେ "ଉତ୍କଳଧାମ"
ଢଳଢଳ ନୀଳକମଳ "କ୍ଷେତ୍ର ପୁରୁଷୋତ୍ତମ"

ଯହିଁ ଛଳ ଛଳ ଉଚ୍ଛଳ ମହୋଦଧି-ତରଙ୍ଗେ
ନୀଳଗିରି-ଶିର ପତିଙ୍କ ପଦ ଧଉତ ରଙ୍ଗେ ।

ଶୋଭିତ ଯାଁହାରେ ସଉଧମାଳା ପନ୍ତ କି ପନ୍ତ
ଯହିଁ ମନ୍ଦାମାନେ ଦୋଳଇ ମୁକ୍ତି-ବଇଜୟନ୍ତୀ *

କମଳେ କମଳା ସେବନ୍ତି ବିଭୁ ପଦ ଯୁଗଳେ
ଅମ୍ଳାନ ସୁନ୍ଦର ବଦନେ ହାସ-ପୀୟୂଷ ଗଳେ ।

ସେଇ ପୁଣ୍ୟଧାମେ ବିଦିତ ସାରା ପୃଥିବୀନାଥ
ଶ୍ରୀ ଗୁଣ୍ଡିଚ୍ଚ ଯାହା ବିଜୟେ ଆଜି ଶ୍ରୀ ଜଗନ୍ନାଥ

ନବ କଳେବର-ଦେବତା ନବ ଲାବଣ୍ୟ ତନୁ
କରନ୍ତି ଗୁଣ୍ଡିଚ୍ଚ ବିଜୟେ ଚକ୍ଷୁ ଶୋଭା ଅତନୁ

ପ୍ରଥମେ ବିଜୟ ରୋହିଣୀ ସୁତ ଧବଳ ତନୁ
ସପ୍ତ ଫଣୀ-ମଣି ମୁକୁଟ, ତଡ଼େ ତମସା ମନୁ ।

---

* ମୁକ୍ତି ବୈଜୟନ୍ତୀ—ପତିତପାବନ ବାନା

ଶୁକ୍ଳାମ୍ବର ଧର, ସୁନ୍ଦର ସ୍ୱଚ୍ଛ ସୁମନ ଧା'ରୀ
ହଳାୟୁଧ ଶୋହେ ଶ୍ରୀକରେ କୋଟି ତମସା ହାରୀ

କାଦମ୍ବରୀ ପାନେ ଘୂର୍ମନ୍ତ ଗୁରୁ ନୟନ ଛବ
ନବଘନ କୋଳୁଁ ଉଇଁଛୁ କବା ସୌଭାଗ୍ୟ ରବ ।

ମଧ୍ୟେ ଅଲଅଲ ଭଗିନୀ "ଦେବୀ ସୁଭଦ୍ରା" ବଜେ
ଦଳା ହରିତ ସୁବସନା, କଳା-କୁଶଳୀ ନଜେ ।

ନବ ବାସ-ନବଭୂଷଣେ ନବ ଲାବଣ୍ୟବନ୍ତୀ
କୁଙ୍କୁମ, ସିନ୍ଦୂର ଚନ୍ଦନେ ବନ୍ଦନୀୟା ସୁମନ୍ତୀ ।

ଲୋହିତ କାଞ୍ଚଲୀ ଆବୃତ ସ୍ୱର୍ଣ୍ଣ ଘନ ବକ୍ଷରେ
ଅଲକ୍ତ-ଚରଣା ଶରଣାଗତା ଜନ ଲକ୍ଷ୍ୟରେ

ବିଜୟ ବିଶ୍ୱର ମଣ୍ଡନ ବିଭୁ ଜଗତନାଥ
ବିଶ୍ୱ ପାପ-ତାପ ନାଶନ ଲାଗି ସେ ସମରଥ ।

କଳା-କନ୍ତ୍ର ଦଳା ଅଞ୍ଜନ ନବ ଜୀମୂତ କାନ୍ତ
ଶ୍ୱେତ ଶତଦଳ ସୁନ୍ଦର ଯୁଗ୍ମ ନେତ୍ର ପ୍ରଶାନ୍ତ ।

ମନୋରମ ମଣି ମର୍କତ କରେ କଙ୍କଣ ଶୋଭା
ଶ୍ରୀ ବତ୍ସ ଲାଞ୍ଛନ ସୁନ୍ଦର ହୃଦେ "ପଦକ" ପ୍ରଭା

ନିର୍ମଳ ତୁଳସୀ ମାଳାରେ ଝୁରି ଶ୍ୱେତ-ସୁମନ
ଶିର ଦେଶେ ଦୋଳେ କଣ୍ଠ ଧନ୍ୟ ମଣେ ନୟନ ।

କନକ-କେତକୀ ଜନଙ୍କ ମନ ନୟନ ହରେ
ପହଣ୍ଡି ମଣାଇ ବିଜୟ ଶୁଭେ "ଶ୍ରୀରାମ ହରେ" ।

"ହରିବୋଲ" ହୁଳହୁଳିରେ କଂପେ ମହୀ ବନିତା।
ଶୋଭା-ଶଶଧର ଆସନ୍ତୁ ତୁଚ୍ଛ କବି-କବିତା ।

ଘଣ୍ଟା ଘଣ୍ଟି, ଝାଞ୍ଜ, ମୃଦଙ୍ଗ ଭେରୀ ମହୁରୀତାନ
ସହସ୍ର ସିନ୍ଧୁ କି ଉଚ୍ଛୁଳେ ଗାଇ ବନ୍ଦନା ଗାନ ।

ଚତୁର୍ଭୁଜେ ରଚେ ସୁଷମା ସ୍ୱର୍ଣ୍ଣ କମ୍ବୁମଣ୍ଡିତ
ବରଭୁଜ ଯୁଗେ କମଳ ଗଦା ଚକ୍ର ଭୂଷିତ ।

ଚକା ନୟନରେ ଅନାଇଁ ଡକା ଦିଅନ୍ତି ପରୀ
ଆସ ଦୀନ, ଦୁଃଖୀଜନ ହେ, ଯେତେ ରନ୍ଧ୍ରଛଧରୀ ।

ଆସ ଆସ ଭକ୍ତପ୍ରବର ମୁଁ ଯେ ଭକତବନ୍ଧୁ
ତୁମର ପାଇଁକି ଉଚ୍ଛୁଳେ ମୋର କରୁଣାସିନ୍ଧୁ ।

ପାପୀ ତାପୀ ଯେତେ ତନୟ ଆସ ସମୀପେ ମୋର
ନିଃଶଙ୍କେ ବୁଡ଼ିବ ଦୂରିତ ମୁଁ ଯେ କ୍ଷମାସାଗର ।

**

**

# ପତିତପାବନ ବାନା ଉଡ଼ାଇ

## ରଘୁନାଥ ଛୋଟରାୟ

(ବିଂଶ ଶତାବ୍ଦୀ)

[ରାଗ-ରସକୁଲ୍ୟା]

ପତିତପାବନ ବାନା ଉଡ଼ାଇ
ଦେଖାନା ଶ୍ରୀରମା ଗର୍ବ ବଢ଼ାଇ
ଭୃତ୍ୟଙ୍କୁ ବୋଲାଇ ଜଗତନାଥ
ଅନାଥ କରିଛୁ ଜଗତ ଲୋକ
ଦୀନବନ୍ଧୁ ଦଇତାରି ହେ
ଡାକି ଡାକି ପଛେ ଥକିଗଲେ ଦୀନ
ଶୁଣିଲ ନାହିଁ ଗୁହାରି ॥୧॥

ସଂହାରି ରାବଣ ଗର୍ବ ଖରବ
ଭାଙ୍ଗି ଦେଇ ମାନ ନାଶି କୌରବ
ଦାନବ ବଢ଼ାଇ ଭାଙ୍ଗିବା ପାଇଁ
ବଳିକୁ ରୁନ୍ଧିଲ ପାତାଳେ ନେଇ
ଗରବ ଗଂଜନ ହରି ହେ
ନିଜ ବଢ଼ାଇତ ବଜାଇ ରଖିଛ
ଯୁଗେ ଯୁଗେ ଅବତରି ॥୨॥

ଚନ୍ଦ ପେଶି କେବେ ନନ୍ଦେ ବିନାଶି
ରଖିଥିଲ ଗଜ କେ ଅଛୁ ଦେଖି
କୁରୁସଭା ତଳେ ଦ୍ରୌପଦୀ ମାନ
ରଖିଥିଲ ସତେ ହେ ନାରାୟଣ

ସବୁ ସିନା ଶୁଣା କଥା ହେ
ନୀଳାଚଳେ କିପାଁ ମୂକ ପାଲଟିଛ
ନ ଜାଣ ଗରିବ ବ୍ୟଥା ॥୩॥

ହୁଅ ଅବା ତୁମେ କାଠ ପାଷାଣ
ଖଣ୍ଡ ବା ନଖଣ୍ଡ ଧାନ କଷଣ
ହୁଅ ଅବା ତୁମେ ମୂକ ବଧିର
ଶୁଣ ବା ନଶୁଣ ଗୁହାରି ମୋର
ନିତ ସେ ଶ୍ରୀମୁଖ ଚାହିଁ ହେ
ବୁଝ ବା ନବୁଝ ଅଳି କରୁଥିବ
ତୁମବିନା ଗତି ନାହିଁ ॥୪॥

**

**

## କହିବ ପ୍ରଭୁ ହେ

### ରଘୁନାଥ ଛୋଟରାୟ

(ବିଂଶ ଶତାବ୍ଦୀ)

[ପଞ୍ଚର ସନ୍ଧ୍ୟାଗୋ-ବୃନ୍ଦେ]

କହିବ ପ୍ରଭୁ ହେ ମୋ ନୟନ ପଥଗାମୀ
ମନକଥା ଯଦି ମନରେ ମରିବ
କିପାଁ ବୋଲାଇବ ତୁମେ ଅନ୍ତର୍ଯ୍ୟାମି ॥ଘୋଷା॥

ମୁଁ ଜଣେ ଆରତ ଡାକେ ନିରତ
ଟାଳିବା ନେଇ ନାଶିବା ଦୁରିତ
ପତିତେ ଅନାଥ କର ଜଗନ୍ନାଥ
କିପାଁ ବୋଲାଇବ ଜଗତର ସ୍ୱାମୀ ॥୧॥

ବିଳଗଲା ଯେବେ ଦୁଃଖର ଦାଉ
କି ଲାଭ ଥାଇ ସେ ଅନନ୍ତ ବାହୁ
ଅନନ୍ତ ନୟନ କିବା ପ୍ରୟୋଜନ
ନ ଦେଖୁଛ ଯେବେ ଭକ୍ତ ମରେ ଭ୍ରମି ॥୨॥

ତବ କୃପା ବିନ୍ଦୁ ପାଇବା ଆଗୁଁ
ଦୁଃଖୀ ଯେବେ ନାଶ ଯିବ ଏ ଭବୁଁ
ଦାତା ପଣେ କିଁପା ନେତ ଉଡ଼ାଇବ
ବଢ଼ାଇ କରିବ ଏଡ଼େବଡ଼ ନାମୀ ॥୩॥

**

**

# ପ୍ରଭୁ ପୂଜିବି କିତ ହେ

## ଶ୍ରୀ ରଘୁନାଥ ଛୋଟରାୟ

(ବିଂଶ ଶତାବ୍ଦୀ)

ପ୍ରଭୁ ପୂଜିବି କିତ ହେ
ମୋ ଆଖିର ଲୁହଧାରେ
ତୁମ୍ଭ ବିନା କିଏ ମୋ ମନ ଜାଣିବ
ସାହା ହେବ ମୋର କିଏ ସଂସାରେ ॥ଘୋଷା॥

ତୁମ୍ଭେ ପରା ପ୍ରଭୁ ଭକତ ବତ୍ସଳ
ଚିର ସଖା ପରା ତୁମେ ଭକତର
ଏବେ ମୋ ଭକତି ଊଣା ବୋଲି ପ୍ରଭୁ
ଦରଶନ ତବ ନ ଦିଅ ବାରେ ॥୧॥

ବି ଅର୍ଥ ହେବ କି ପୂଜା ଅରଚନା
ବି ଅର୍ଥେ ଯିବକି ମୋ ସେବା ଯାଚନା

ଶୁଣି ଶିବ କହେ କରୁଣା ବାଣୀ
କଣାଏ କରୁଣା ହେଲେ ମୋଠାରେ ॥୨॥

ନ ଦେଲେ ନ ଦିଅ ଦରଶନ ତବ
ପରଶ ମାତର କରେ ଅନୁଭବ
କବା ଦବା କଶି ଗାଉଥିବ ବସି
ତୁମ ନାମ ସୁଧା ହରେ ମୁରାରେ ॥୩॥

ମୁଁ ଯଦି ତୁମର ତୁମେ ଯଦି ମୋର
ମାଗୁନାହିଁ କିଛି ମାଗୁଣୀ ମାତର
ନୟନ ମୁଦିଲେ ଆହେ ଚକାଡୋଳା
ଦେବ ଦରଶନ ମରଣ କାଳେ ॥୪॥
**

**

## ନିରତେ ଯା' ନାମ ଜପିଲେ

### ରଘୁନାଥ ଛୋଟରାୟ

(ବିଂଶ ଶତାବ୍ଦୀ)

[କଳା କଳେବର ହୁହ୍ଲାଇ-ବୃନ୍ଦେ]

ନଦେଖି ଯାହାକୁ ସବୁଠୁ ଏତେ ଭଲ ଲାଗଇ
ନପାଇ ପରଶ ଯାହାର ଶିହରଣ ଜାଗଇ ॥୧॥

ନିରତେ ଯା' ନାମ ଜପିଲେ ନୂଆ ନୂଆ ଲାଗଇ
ନିରତେ ଯା' ନାମ ଶ୍ରବଣେ ସଦା ସୁଧା ଝରଇ ॥୨॥

ସେଇ ମୋର ଜଗନ୍ନାଥ ସେ ମୋ ଗଣ୍ଠିର ଧନ
ସେଇ ମୋ ନୟନ ପିତୁଳା ସେ ମୋ ହୃଦଚନ୍ଦନ ॥୩॥

ତା'ର ବିନା ଆନ ନାହିଁକେ ମାତା ପିତା ମୋହର
ତା'ର ବିନା ଆନ ନାହିଁକେ ବନ୍ଧୁ ସଖା ସୋଦର ।।୪।।

ଡାକିବା ନଡାକ ବିପଦେ ବେଳ ଜାଣି ସେ ଆସେ
ଖୋଜିଲେ ପାଇବା ବିରଳ ସଦା ଥାଇ ସେ ପାଶେ ।।୫।।

ଗର୍ବୀ ଅହଙ୍କାରୀ ମାନଙ୍କଠୁଁ ସଦା ରହେ ସେ ଦୂରେ
ଦୀନ ଦୁଃଖୀଙ୍କର ବନ୍ଧୁ ସେ ବିଦିତ ଏ ସଂସାରେ ।।୬।।

ପ୍ରେମମୟ ତାର ଏ ସୃଷ୍ଟି ଅଟେ ଚିର ସୁନ୍ଦର
ପ୍ରେମ ଫାଶେ ସଦା ବନ୍ଧା ସେ ପ୍ରେମିକର କିଂକର ।।୭।।

ଯେଉଁ ଭାବେ ଯିଏ ଖୋଜଇ ଯେଉଁ ଭାବେ ଡାକଇ
ସେଇ ଭାବେ ଧରା ଦିଏ ସେ ସେଇ ଭାବେ ମିଳଇ ।।୮।।

ଶତ ଶତଦଳ ରୂପକୁ ତାର ନୋହିବ ସର
ଶତ ଶତ ଭାନୁ ତେଜରେ ତାର ଯିବ ମଉଳ ।।୯।।

କି ଉପମା ଦେବି ତା'ସାଥେ କାହିଁ ତୋ ପଟାନ୍ତର
କି ଦେଇ ପୂଜିବି ତା' ପାଦ ସାରା ସୃଷ୍ଟି ଯାହାର ।।୧୦।।

**

**

# ଏହି ଅଳି ତୁମଠାରେ

**ରଘୁନାଥ ଛୋଟରାୟ**

(ବିଂଶ ଶତାବ୍ଦୀ)

[ଖେଳା ଖଂଜରଟ ଦୁଣା-ବୃନ୍ଦେ]

ଧନଜନ ଗୋପଲକ୍ଷ୍ମୀ ଯେତେ ଦେଲେ
ଗରବ ନଦିଅ ମନେ ହେ ପ୍ରଭୁ
ଏହି ଅଳି ତୁମ୍ଭଠାରେ ॥ ଘୋଷା ॥

ସଦା ମଣୁଥିବି ଏ ସବୁ ତୁମର
ମୁଁ ତୁମ ସେବକ ବୋଲି
ଏ ମାୟା ସଂସାର କେହି ନୁହେଁ କା'ର
ସବୁ ମରୀଚିକା ବାଲି ॥୧॥

ଦୁଃଖରେ କାତର ନକର ହେ ପ୍ରଭୁ
ବିପଦରେ ଧୈର୍ଯ୍ୟ ହରି
ସୁଖରେ ଅଧୀର ନ ହେଉ ମନର
ସଂପଦରେ ଆତ୍ମହରି ॥ ୨॥

ଯଶ ପଦରୂପ ଯେତେ ଦେଲେ ପ୍ରଭୁ
ନ ଦିଅ ହେ ଅହଂକାର
ଦାନୀ ମାନୀ ବୋଲି ତୁଚ୍ଛା ଗାରବରେ
ଉନ୍ନତ ନ ହେଉ ଶିର ॥୩॥

ଗର୍ବ ଅହଂକାର ହିଂସା ଦ୍ୱେଷ ଯେତେ
କାଢ଼ି ନିଅ ମୋ ମନରୁ
ରାଜ ବଇଭବ ଅହମିକା ଦେଇ
ରଖନା ତୁମଠୁଁ ଦୂରୁ ॥୪॥

ପର ଦୁଃଖେ ସଦା ଦୁଃଖୀ କର ପ୍ରଭୁ
ପର ହିତେ ଯାଉ ପ୍ରାଣ
ବିଷୟ ବାସନା ମୋ ମନେ ଦଅନା
ଜଗନ୍ନାଥେ ରହୁ ଧ୍ୟାନ ॥୫॥

**

**

# ମନାବୋଧ ହେଉନାହିଁ

ଶ୍ରୀମତୀ ବ୍ରହ୍ମୋତ୍ରୀ ମହାନ୍ତ

(ବିଂଶ ଶତାବ୍ଦୀ)

[ରାଗ-ବଙ୍ଗଳାଶ୍ରୀ]

ଦେଖୁଛୁ ତୁମକୁ ନିରେଖି ଏତେ ମୁଁ
ମନବୋଧ ହେଉ ନାହିଁ
ମନ ହୁଏ ଯେହ୍ନେ ଚକାଡୋଳା ତୁମେ
ମୋତେ କି ରହୁଛ ଚାହିଁ ॥୧॥

ନୀଳାଚଳେ ଘର ତଥାପି ଲଲାଟ-
ଲିଖନ ଏପରି ମୋର
ପ୍ରବାସରେ ରହେଁ ନିତ୍ୟ ଦରଶନ
ଆଶା ନହୁଏ ସଫଳ ॥୨॥

ଦିନ ଯେତେ ଯାଏ ତୁମ ପରିଚୟ
ହୁଏ ନିତ ଅଭିନବ
ଅପୂର୍ଣ୍ଣ ଆକାରେ ପୂର୍ଣ୍ଣ ଏତେ ତୁମେ
ଅପୂର୍ବ ମୋ ଅନୁଭବ ॥୩॥

ବ୍ରାହ୍ମ ମୁହୂର୍ତ୍ତରୁ ରାତି ଅଧଯାଏ
ତୁମ ଲାଗି ସେବା ଯେତେ
ଅଭିଳାଷ ବଡ଼ ନିଜ ସ୍ମୃତି ଗୁଚ୍ଛି
ରଖନ୍ତି ସେ ସବୁ ସାଥେ ॥୪॥

କେତେବେଳେ ଆଖି- ଆଢ଼ୁଆଳେ ପ୍ରଭୁ
ନ କରନ୍ତୁ ପଦ୍ମମୁଖ
କଳା ନୟନକୁ ସ୍ମୃତି ରହୁଥିଲେ
ତା'ଠାରୁ ବଳି କି ସୁଖ ॥୫॥

ନିକଟକୁ କେବେ ଲେଉଟାଇ ନେବ
କୁହ କୁହ ପ୍ରାଣ ସାଇଁ
ନିଜର ବୋଇଲେ ତୁମେ ସାଥୀ ଏକା
ଆନ ଭରସା ମୋ କାହିଁ ? ?

**

**

# ଜୟ ଜୟ ଜଗନ୍ନାଥ

କ୍ଷୀରୋଦ ଚନ୍ଦ୍ର ପୋଥାଳ

(ବିଂଶ ଶତାବ୍ଦୀ)

ଜୟ ଜୟ ଜଗନ୍ନାଥ ଆରତ ଭଂଜନ
ଶ୍ରୀ ଛାମୁରେ ଆଜି ମୋର ଏଇ ନିବେଦନ
କଣ୍ଠତେ କରିବ ଯେନା କାଳୀୟ ଗଂଜନ ॥୦॥

ଶରଧା ବାଲିରେ ମୋତେ ଦିଅ ଖଣ୍ଡେ ଘର
ସେଇଠି ଗଢ଼ିବ ମୋର ସୁନାର ସଂସାର
ବଗଡ଼ା ଅଭଡ଼ା ଖାଇ କଟାଇବ ଦିନ ॥୧॥

ଆଜ୍ଞା ହେଉ ମହାବାହୁ ଆଶ୍ରିତ ଜନକୁ
ଭୁଲିବ ଭ୍ରମର ବଡ଼ ସିଂହାର ବେଳକୁ
ତୁମ ନାମ ଗାଇ ଗାଇ ଯାଉ ଏ ଜୀବନ ॥୨॥

**

**

# ଏଡ଼େ ଦଗାଦିଆ


## କ୍ଷୀରୋଦ ଚନ୍ଦ୍ର ପୋଥାଳ

(ବିଂଶ ଶତାବ୍ଦୀ)


ଏଡ଼େ ଦଗାଦିଆ ତୁମେ ଜଗା କଳିଆ
ଜଗତରେ କେହି ନାହିଁ ତୁମ ଭଳିଆ ॥୦॥

କଏ ଜ୍ଞାନୀ ମହାଜନ, କଏ ମୂରୁଖ ଅଜ୍ଞାନ
କଏ ରୋଗୀ, କଏ ଭୋଗୀ, କଏ ଚିର ବଇରାଗୀ
ତୁମ ନାମ ଗାଇ କଏ ହୁଏ ହାଲିଆ ॥୧॥

କଏ ସୁଖ ଭୋଗ କରେ, କଏ ଦୁଃଖେ କାନ୍ଦି ମରେ
କଏ ଗାଏ ତୁମ ନାମ, କଏ କରେ ନିନ୍ଦାଗାନ
କାହାକୁ କରଛ ତୁମ ପଦ ତଳିଆ ॥୨॥

ସାରା ଜଗତରେ ଏଇ ଲୀଳା ଦେଇଛ ଲଗାଇ
ତୁମେତ ଜଗତ ସାଇଁ, ବସିଛ ମଉନ ହୋଇ
ନୀଳାଚଳ ବାସୀ ପ୍ରଭୁ ଚକା ଡୋଳିଆ ॥୩॥

**

**

# କୋଠ ଭୋଗଖିଆ

## ଶ୍ରୀବେଦଚନ୍ଦ୍ର ପୋଥାଳ

(ବିଂଶ ଶତାବ୍ଦୀ)

କୋଠ ଭୋଗଖିଆ ମୋ ଚକା ଆଖିଆ
ଉଠ ହେ ପହଡ଼ ଖଟି
ପଣ୍ଡା ପଡ଼ିହାରି କରନ୍ତି ଗୁହାରି
ହେବାକୁ ଚନ୍ଦନ ଲାଗି ॥୦॥

ତୁଳସୀର ମାଳ ଦମ୍ଭଣାର ଚୂଳ
ଭଲ ଧଣ ଦେବଦାସୀ
ବଡ଼ ସିଂହାରକୁ ବୃତା ସିଂହାରି ଯେ
ଉଭା ହୋଇଲେଣି ଆସି
ମଣିମା ମଣିମା ଡାକ ପଡ଼ୁଅଛି
ଶ୍ରୀମୁଖ ଦରଶନ ଲାଗି ॥୧॥

କାହା ପଥର ହେ କାଦକେ ଶୋଇଲ
ଷାଠିଏ ପଉଟି ଖାଇ
ଅନାଥ ଜନଙ୍କ ଡାକ ନ ଶୁଣୁଛ
ଜଗତର ନାଥ ହୋଇ
ଆରତୀ ବେଳ ଯେ ଗଡ଼ି ଯାଉ ଅଛି
ଉଠ ହେ ଛପନ ଭୋଗୀ ॥୨॥

ପତିତପାବନ ବାନା ଉଡ଼ାଉଛ
ପତିତ ଉଦ୍ଧାର ପାଇଁ
ମୁଁ ଜଣେ ପତିତ କାନ୍ଦି କାନ୍ଦି ମରେ
ମୋ ଡାକ କି ଶୁଭୁନାହିଁ
ଏଡ଼େ ବଡ଼ ପଣ ବହି ଅଛ ପ୍ରଭୁ
କୁହ ତେବେ କାହା ଲାଗି ॥୩॥

**

**

# ଚାଲ ମନରେ

ନଗେନ୍ଦ୍ର ମହାପାତ୍ର

(ବିଂଶ ଶତାବ୍ଦୀ)

ଚାଲ ମନରେ, ଚାଲି ଯିବା,
ଶ୍ରୀ ଶମ୍ଭୁ ଦର୍ଶନ, କରି ଆସିବା ॥

ଝଡ଼ପୁରର, ସେ ଅଧିପତି,
ମହା ବଳୁଆ, ଭୁଜ ଅଟନ୍ତି,
ସୁମାରି ନାହିଁତ, ସେବକ ସେବା ॥

ଛପନ ଭୋଗ, ଭୋଗି ରାଜନ୍,
ବଡ଼ ନଅର, ଉଚା ମଥାନ,
ଗମ୍ଭୀରୀ ଭିତରେ ଯାଇ ଭେଟିବା ॥

ଦୀନ ହୀନର, ଗଡ଼ ମୁକୁଟ,
ଶୁଣି ଗୁହାରି, ଦୁଃଖ ହରନ୍ତି,
ଶ୍ରୀ ପଦ ପଙ୍କଜେ, ଜଣା କରିବା ॥

**

**

# ଏତିକି ମୋ ନିବେଦନ

## ନଗେନ୍ଦ୍ର ମହାପାତ୍ର

(ବିଂଶ ଶତାବ୍ଦୀ)

ଏତିକି ମୋ ନିବେଦନ, ହେ ଜଗନ୍ନାଥ,
ଏତିକି ମୋ ନିବେଦନ,
ବିଷୟ ବିଷରେ, ବିଷାଇ ଅସାରେ, ନ ଯାଉ ଏଇ ଜୀବନ ॥

ମୋ ମନ ଭଅଁର, ଥାଉ ନିରନ୍ତର, ପାଦପଦ୍ମ ସନ୍ନିଧାନ,
ଅମଳ ଦଳର, ପାଶେ ଅନିବାର, କରୁ ଶାନ୍ତି ମଧୁ ପାନ ॥

ସଂସାରଟା ସାର, ମୋହ ମାୟାଭର, ନାହିଁ ଶାନ୍ତି ଉପାଦାନ,
ଜଞ୍ଜାଳିଆ ହୋଇ, ମଥାତ ଘୂରଇ, ଅଶାନ୍ତିରେ ଯାଏ ଦିନ ॥

ଧାଏଁ ମନ ଯହିଁ, ତିଳେ ସୁଖ ନାହିଁ, ଭରିଛି ତହିଁ କଦନ,
ଶାନ୍ତିର ଆଧାର, ସେ ଶିରୀ ପୟର, ତିଳେ ପ୍ରଭୁ ଦିଅ ଥାନ ॥

**

**

# ଚକା ନୟନ


## ନଗେନ୍ଦ୍ର ମହାପାତ୍ର


(ବିଂଶ ଶତାବ୍ଦୀ)

ଚକା ନୟନ, ହେଲି ଚକିତ, ବାଣ ତୁମ ମନ ॥୦॥

ଚନ୍ଦ୍ରେ କି ଶୀଳ, ଆସିଲି ଚଳି, ଛେଡ଼ି ରତ୍ନ ସିଂହାସନ,
ଯେବେ ଆସିଲି, କଷ୍ଟ ପାଇଲି, ଡୋରରେ ହୋଇ ବନ୍ଧନ ॥

ନାଶୁଛି କ୍ଳାନ୍ତ, ଘୁମର ଛନ୍ଦ, ପଥେ ପୁଣି ପଣା ପାନ,
ବସି ରଥରେ, ଯାଉଛ ଘରେ ଯଜ୍ଞବେଦୀ ଆଦ୍ୟ ଥାନ ॥

ମାଉସୀଘର, ପୋଡ଼ପିଠାର, ଭୋଗକଲେ ବଳବାନ,
ଶୟନ ବେଶ, କଲ ତ୍ୟାଗ, ଚଢ଼ିଲ ରଥେ ବନ୍ଧନ ॥

ପଡ଼ ଛି ହୁର, ଦେବାଙ୍କ ଚାର, ପଣ୍ଡିତ ଆଗତ ଜନ
ରଥ ପଛରେ, ଆସନ୍ତି ଘରେ, ଲଭିବାକୁ କୃପା ଦାନ ॥

ସତେ ଶୁଣିବ, କୃପା କରିବ, ହେଲକି ଚଞ୍ଚଳ ମନ
ଧାଇଁଛି ମୁହିଁ, ଲଭିବା ପାଇଁ, ତୁମ ପଦ ଦରଶନ ॥

**

**

# ଅନାଥର ନାଥ

## ନଗେନ୍ଦ୍ର ମହାପାତ୍ର

(ବିଂଶ ଶତାବ୍ଦୀ)

ଅନାଥର ନାଥ, ତୁମେ ପରା ଜଗନ୍ନାଥ,
ନ ଶୁଣିଲ ଥଲେ, ଡାକ, ହେଲ ମୁଁ ଅନାଥ ॥
ପ୍ରଭୁ ଦୁଃଖହାରୀ,
ହୃଦ୍ୟେ ପଡ଼ି ମୁହିଁ, ଯାଉଛୁ ସର ॥

ଜନେ ବୁଝ ଏବେ, ଭୋଗି, କି ଦୁଃଖ ଦାରୁଣ,
ଛେଚ କଚ ନେଉଛନ୍ତି, ସେବାଯୁକ୍ତ ଗଣ,
ବାନ୍ଧ ଦଉଡ଼ିରେ,
ପଦ୍ମଣି କରନ୍ତି, ଟାଣି ଦାଣ୍ଡରେ ॥

ଆଲଟ ଚାମର ପାଖେ ପାଖେ ପଡ଼ିଅଛି,
ଅଧର ଦଣାଡ ବାଟେ, ଖଣ୍ଡିଆ ହେଉଅଛି ॥
ଭୁଲିବାକୁ କ୍ଲେଶ,
ଏ କଥା କି ମିଛ ହେ ରମାଈଶ ॥

ଅନୁଭବ ବିସ୍ମରତ, ମୁହିଁ ନିରନ୍ତର,
ସହିବାକୁ କେଡ଼େ କଷ୍ଟ, ଦୁଃଖ ଗୁରୁତର ॥
ଏଇତକ କହି,
ହର ମୋର ଦୁଃଖ, କରୁଛି ଅଳି ॥

**

**

# ଜୀବର ଜୀବନ

## ନଗେନ୍ଦ୍ର ମହାପାତ୍ର

(ବିଂଶ ଶତାବ୍ଦୀ)

ହେ ଚକାନୟନ, ଜୀବର ଜୀବନ,
ଆଖି ଆଜି ବୁଜି ଦେଲକି ?
କରୁଣା ସାଗର, ପାଲଟି ପଥର,
ଜଡ଼ା ହୋଇ ବସି ଗଲକି ? ।।

ନୀଳାଚଳ ନାଥ, ହୋଇଲ ଅଚଳ,
ସୁଧା ଶୂନ୍ୟ ହେଲା, ସେ ପଦ କମଳ,
ବଳିୟାର ଭୁଜେ, ନାହିଁ କିବା ବଳ,
ଚକ୍ରଧାର ବନ୍ଦ ହେଲାକି ? ।।

ପ୍ରଭୁ ପଣ ସତେ, ଦେଲକି ପାଶୋରି,
ମଣିଲ ସନ୍ତାନେ, ସାତ ପର ପରି,
ମହିମା ଗୁଣକୁ ନେଲା କିଏ ହରି,
କୃପା ବାରି ଶୁଖି ଗଲାକି ? ।।

ତୁମରି ମନ୍ଦିର, ଦୁଆରେ ମୁଁ ବସି,
ଡାକି ଡାକି ମୋର ଉଡ଼ିଲା ଫଙ୍କାଶି,
ଦାରୁଣ ଦୁଃଖରେ, ହୋଇଯାଏ କଷି,
ମାରିବା ବାଟଟି କଲକି ? ।।

**

**

# ଅଖିଳ ବ୍ରହ୍ମାଣ୍ଡ କରତା

## ଅଧ୍ୟାପକ ଜୟକୃଷ୍ଣ ମିଶ୍ର

(ବିଂଶ ଶତାବ୍ଦୀ)

ଅଖିଳ ବ୍ରହ୍ମାଣ୍ଡ କରତା ପ୍ରଭୁ ହେ      ଜଗତ୍ପିତ ଜଗନ୍ନାଥ
ନିଜ ସୃଷ୍ଟି କିତ ପାଳୁଛ,      ଜଗତ କାହିଁକି ହୁଏ ଅନାଥ ?
ମହାବାହୁ ହେ,
ଅମାପ ସେ ମନଗହନର କଥା, ବୁଝିବ କେ ତୁମ ବିନା ?
ସମାନ ମାନରେ ଆନ କେ ?   ତୁମେ ହିଁ ତୁମର ତୁଳନା ସିନା
ମହାବାହୁ ହେ ॥୦॥

*      *      *      *

ତଥାପି ବ୍ୟଥାର      ଗୁରୁତମ ଭାର      ଆତୁର ବିତୁର ମାନଇ କି ?
କଥା କହିବାରେ      ତୁମ ଏ ସଂସାରେ      ଲଭେ ମୁକ୍ତିକାରେ ଡରଇ କି ॥୧॥

ତୁମ ନିୟନ୍ତ୍ରଣ      ଶୁଭ ଅନୁକ୍ଷଣ      କରେ ବିତରଣ ସମେ ଯେବେ,
ଏତେ ବ୍ୟତିକ୍ରମ      କରଇ କରମ-      କ୍ଷେତ୍ରେ ମତ ଭ୍ରମ କମ୍ପା ତେବେ ॥୨॥

ଦେବାକୁ ଅଭୟ      ଆହେ ଦୟାମୟ      ବିରାଜୁଛ ଭୟ-ବିନାଶନ,
ତଥାପି ମନରେ      ନ ଖେଳୁଛ ଥରେ,      ନିରତେ କାତରେ କାନ୍ଦେ ଜନ ॥୩॥

ଆରତ ପ୍ରାଣର      ଚିର ଅଶ୍ରୁନୀର      ପାଦେ ହିଁ ତୁମର ତାର ଅର୍ଘ୍ୟ,
ସବୁତ ବିଫଳ,      ଶୋକ ମାତ୍ର ଫଳ      ଲଭେ ସେ କେବଳ ହେ ଅନଘ ॥୪॥

ଯେଉଁ ଅଭିଶାପେ      ବିଷମ ସନ୍ତାପେ      ପଡ଼ି ପୁଣ୍ୟପାପେ ବୁଝେନା ସେ,
ତୁମ ଏ ବିଧିର      ବିଚିତ୍ର ପ୍ରକାର,      ବୁଝି ଦୋଷ କା'ର ପରକାଶେ ॥୫॥

ସକଳେ ରଙ୍ଗାଇ ନ ଦେଲେ ବୁଝାଇ ସିଂହାସନେ ଥାଇ କିସ ହେବ ?
ହେବ କି କାଳିକ ସକଳ ପାଳକ ପଥନିର୍ଦ୍ଧାରକ ଦେବଦେବ ? ॥୬॥

ତୁମ କର୍ମଫଳ ଭୋଗୁଛୁ କେବଳ, ନ ହୁଅ ବିଫଳ ଏ ସଂସାରେ ;
ଦୋଷାଦୋଷ ଲାଗି ତୁମେ ଏକା ଭାଗୀ ବୁଝିବାକୁ ଜାଗି ଉଠବାରେ ॥୭॥

ହେ ଜଗତ ସାଇଁ ଦେବାକୁ ଚେତାଇ ରହିଛ ଅନାଇ ଅଚଞ୍ଚଳେ,
ଆହେ ଜଗନ୍ନାଥ ନାମ କର ସାର୍ଥ ନିଜ କର୍ମେ ହାତ ଦେଇ ଭଲେ ॥୮॥

ନିଜ କର୍ମେ ମତି ଦେବାକୁ ଶକତି ନ ଥିଲେ କି ଗତି ତୁମ୍ଭର ହେ ?
ଅଭୟ ଦାୟକ ସକଳ ପାଳକ- ପଦ ଶରର୍ଥିକ ଭାବ ବହେ ॥୯॥

ନ ହୁଅ ଅବଶ, ଯେବେ ତୁମ ଯଶ ତବେ ଅପଯଶ-ଦୋଷ ସରେ,
ଜୟକୃଷ୍ଣ ଭାଷେ,—ପରାଣ ପରସେ ବ୍ୟଥିତ ପରା ସେ ଜୀଇ ମରେ ॥୧୦॥

**

**

# ଅନ୍ତର୍ଯ୍ୟାମୀ ଜଗନ୍ନାଥ

**ଅଧ୍ୟାପକ ଜୟକୃଷ୍ଣ ମିଶ୍ର**

(ବିଂଶ ଶତାବ୍ଦୀ)

ଅନ୍ତର୍ଯ୍ୟାମୀ ଜଗନ୍ନାଥ ମହାପ୍ରଭୁ ଶୁଣ ମୋ ହୃଦସ୍ଥ କଥା,
ଭାବକୁ ନିକଟ, ଅଭାବକୁ ଦୂର, ତୁମେ ସଂସାରେ ସର୍ବଥା,
ମହାବାହୁ, ଭେଦଭାବ କିମ୍ପା ଏତେ ?
ସରବେ ସୃଷ୍ଟିରେ ସମ ନୁହନ୍ତି କି ତୁମର କରୁଣା ନେତ୍ରେ ? ॥୧॥

ସୁଖୀ ଦୁଃଖୀ ଦୋଷୀ ନିର୍ଦ୍ଦୋଷ ଧାର୍ମିକ ଅଧର୍ମୀ ସୁଶ୍ରୀ କୁତ୍ସିତ
ପାପୀ ପୁଣ୍ୟବନ୍ତ ତୁମର ସେ ଭେଦଭାବ ଯେଣୁ ବିରଚିତ,
ମହାବାହୁ, କାହିଁକି ଏ ବିଡ଼ମ୍ବନା ?
ପରମ ସମଦର୍ଶନ ତୁମେ ପରା, କିମ୍ପାଇ ଭେଦ ରଚନା ॥୨॥

ଭାବାଭାବ ସବୁ ପରକାର ସିନା          ତୁମରି ବିଧାନ ଗତ,
ସେ ଯେନ୍ନ କଳଙ୍କ ଲାଗେ ଜୀବେ ଜୀବେ, ନୁହେଁ କି ଏକଥା ସତ,
ମହାବାହୁ, କେ ଜାଣେ କେଉଁ ପରୀକ୍ଷା
କଣବାରେ ତୁମ ଚରମ ଆନନ୍ଦ ?          ବିଚିତ୍ର ତୁମ ଏ ଦୀକ୍ଷା ॥୩॥

ଡାକି ଡାକି କିଏ ଥକିଯାଏ,          କେ ବା ନ ଡାକି ତୁମକୁ ପାଏ,
ଅନାହାରେ ମରେ ନିକଳେ କେ ଜଣେ, ଆନ କେ ଆକଣ୍ଠ ଖାଏ
ମହାବାହୁ, ବିଳାସେ ଯାଏ କା ଦିନ,
ସଙ୍କଟେ କିଏ ସହଇ ସନ୍ତାପେ          ଚିରଦିନ ଦୀନହୀନ ॥୪॥

ଜାତିରେ ଜାତିରେ କେତେ ଯେ ବିଭେଦ, ସମୃଦ୍ଧି ବର୍ଦ୍ଧନ ଲାଗି,
ପ୍ରବଳ ପ୍ରଳୟ ସରଜେ ଦା କିଏ          ଲୋଭ ବଶେ ଉଠେ ଜାଗି,
ମହାବାହୁ, କେ ମରଇ ଅତ୍ୟାଚାରେ
ସ୍ୱାର୍ଥ ପ୍ରଣୋଦିତ ପିଶାଚ କବଳେ,—          ଦେଖି ନାହିଁକି ହେ ବାରେ ॥୫॥

ସତ୍ୟର କେତନ ଉଡ଼ାଇ କେ ଗଲେ          ଅକଳନ ଛଳନାରେ,
କପଟ କୁଟିଳ ଖଳ ସାଧୁତାର ସ୍ୱରୂପେ          ଖେଳେ ସଂସାରେ,
ମହାବାହୁ, ଏତ ତୁମରି ବିଧାନ,
ନ ଦେଖୁଛ ହୃଦେ ହୃଦେ ପଶି କି ହେ          ବିଚିତ୍ର ଏ ଲୀଳାମାନ ॥୬॥

ହେ ସମଦର୍ଶନ ହେ ଅମୃତମୟ          ସମଭାବେ ତୁମ ସୃଷ୍ଟି,
ହସି ଉଠ କୋଟି ବ୍ରହ୍ମାଣ୍ଡ ନାଥ ହେ,          ଢାଳି ଦିଅ ସମଦୃଷ୍ଟି
ମହାବାହୁ, ଭାବାଭାବ ଭେଦାଭେଦ
ସବୁ ଲିଭିଯାଉ, ଭାବେ ଜୟକୃଷ୍ଣ          ତୁମ ବିଧାନେ ସନ୍ଦେହ ॥୭॥

**

**

# ଜଗତ ଜୀବନ ହେ

ଅଧ୍ୟାପକ ଜୟକୃଷ୍ଣ ମିଶ୍ର

(ବିଂଶ ଶତାବ୍ଦୀ)

[ବାଧିଲା ଜାଣି କ୍ଷମା-ବୃତ୍ତେ]

॥ ୧ ॥

ଜଗତ ଜୀବନ ହେ    ଧରିଛ ବିଚିତ୍ର ଏ
ମହିମା ଡୋରି ତୁମ କରେ
କେବଳ ଭକ୍ତଜନେ    ବିଲୋକି ପ୍ରତିକ୍ଷଣେ
ଟାଣୁଛନ୍ତି ତାଙ୍କ ଭାବଭରେ ହେ
ସ୍ୱାର୍ଥବଶେ,
ବିଭୋଳ କି ହେ ତୁମେ ପରି ?
ତୁମ ବିଧାନେ ବସୁନ୍ଧରା
ଧରିଛି ଅକଳନ    ଜୀବେ ଦେଖ ବନ୍ଧନ,
ବିଶ୍ୱର ଭକ୍ତଜନଧରା ହେ ।

॥ ୨ ॥

ପଛରେ ମୁଁ ମାତର,    କର ନାହିଁ ଖାତର
ଇତର ଭାବେ ଅନ୍ୟଜନେ,
ଏ କି ସମ-ଦର୍ଶନ    କହ ବିଶ୍ୱ ଜୀବନ,
ନ ଭାବ ଏହି କଥା କ୍ଷଣେ ହେ
ନିଜ ଲାଗି,
ନିଜ ସ୍ୱାର୍ଥରେ ଯାଅ ହଜି
ସମତା ମମତା ବରଜି,
ଥୋକେ ପରମପ୍ରିୟ    ଥୋକେ ଅତି ଅପ୍ରିୟ,
ବିଚିତ୍ର ଭାବେ ଅଛ ମଜ୍ଜି ହେ ।

॥ ୩ ॥

ଦେଖ ହେ ଜଗନ୍ନାଥ ତୁମ ମହିମା ସାର୍ଥ
ହୋଇ ନ ପାରେ ସ୍ୱାର୍ଥ ଭାବେ,
ବଡ଼ ଦେଉଳେ ବସି ଭୋଗ ବିଳାସେ ରସି
ହସୁଛ, ସେହି କଥା ଭାବେଁ ହେ,
ବଡ଼ ସେବା,
ହେଉଛି ଖାଲି ତୁମ ଲାଗ,
ମହାସୁଖରେ ତୁମେ ଭାଗୀ,
ଅନ୍ୟ ଜନେ ଡାକିଲେ ନ ଶୁଣ ଡାକ ଛଳେ,
କେବଳ ଭକ୍ତ ଅନୁରାଗୀ ହେ ।

॥ ୪ ॥

ଯଥାର୍ଥ ପ୍ରତିକାର କରିବାକୁ ଏଥର,
ଅଧିକ ଟାଣ ଡୋର ଆଣି
ତୁମ ଦେହେ ଲଗାଇ ମନ ମଉଜେ ଗାଇ
ତୁମକୁ ସିଂହାସନୁ ଟାଣି ହେ
ଜଗନ୍ନାଥ,
ଉଚ୍ଚେ ଉତ୍ତୁଙ୍ଗ ରଥପରେ
ଧୂଅନ୍ତି ଉନମାଦ ଭରେ,
କହନ୍ତି,— ହେ ପତିତ- ପାବନ ଅନୁଚିତ
ବସି ରହିବା ଦେଉଳରେ ହେ

॥ ୫ ॥

କହନ୍ତି,— ଆମ ଡୋର ଧରେ ଅଧିକ ଜୋର,
ପଣ ଏ ଜନତା ଗହିଲେ,
ଆହେ ଅନ୍ତର ଯାମୀ ସକଳ ପ୍ରାଣଗାମୀ
ହୁଅ ମଙ୍ଗଳ ବିଧାନରେ ହେ
ଜଗନ୍ନାଥ,
ପୂରାଅ ସଭିଙ୍କ ଲାଳସା,
ଉସାର ଅଶିବ ଏ ଦଶା
ହର ହେ ପରମେଶ, ଧର ଉଚିତ ବେଶ,
ଜୟକୃଷ୍ଣର ଏ ଭରସା ହେ ।

**

✳✳

# ଚକା ଚକା ଆଖି

ଅଧ୍ୟାପକ ଜୟକୃଷ୍ଣ ମିଶ୍ର

(ବିଂଶ ଶତାବ୍ଦୀ)

॥ ୧ ॥

ଚକା ଚକା ଆଖି ଖୋଲି ଆପଣ
ଅଜା ହୋଇ ରୁହଁ, କବା କାରଣ ?
ଦକା ଚଢ଼େ ଅବା ପଡ଼ିଲା ବଳ ?
ଧକା ଦେଲ ମନେ କେବା କି ଭଲ ହେ ?
ପକାଇ ଦିଅ ଦୀନତା
ଅକାରଣ ପ୍ରଭୁ  ଜଗତର ନାଥ
କମ୍ପାଇ ହୃଦୟେ ବ୍ୟଥା ହେ ?

॥ ୨ ।

ପରମପୁରୁଷ ! ସବୁର ଭୟ
ହର ପରମେଶ ! ଦେଇ ଅଭୟ;
ଦରବିନାଶନେ ହୁଅ ତତ୍ପର,
ଦରଧର ପ୍ରଭୁ କମଳାବର ହେ
ମରତେ ବିଜୟଧ୍ୱଜା
ଗଦାଧର ! ତୁମ  ହେଲେ ଅବନତ
କାହାକୁ ହେବ ଏ ଲଜ୍ଜା ହେ ?

॥ ୩ ॥

ଜ୍ୱାଳାମୁଖେ ତୁମ୍ଭ ନିବେଶି ମନ
ହଳାହଳ ହୃଦେ ଘୋଟେ କେମନ ?
ବଳାଗ୍ରତ ବିବନ୍ଧିତ ଚରଣ !
ବଳାତ୍କାରେ ବ୍ୟାପେ ପ୍ରଳୟ ଘନ ହେ ,
ଖଳାଗ୍ନିର ଯାଏ ବଢ଼ି ,
ମଳାବିଳ ମଠ ଅକାଳେ କଳୁଷ —
ଗରଭେ ଯାଉଛ ସଢ଼ି ହେ ।

॥ ୪ ॥

ଅକଳନ ବଳ ତୁମ୍ଭ ଅବଶ ,
ସକଳ ଦେଖି ନ ଦେଖ ଅବଶ୍ୟ ;
ଅକଲ୍ ତୁମ୍ଭ କି ଯାଏ ଉଭାଇ ?
ନ କଲ୍ କରୁଣା ବ୍ରହ୍ମାଣ୍ଡସାଇଁ ହେ ,
ନକଲ ରୂପ କି ଧର ?
ଜକ ଜକ ଖାଲି ବାହାରକୁ ସିନା
ଦକ ଭରିଛ ଅନ୍ତର ।

॥ ୫ ॥

ମାୟାରେ ନଜର ନିଜେ ମୋହିତ ,
ଆୟାସେ କି ଆଜ ପ୍ରବିଚଳିତ ?
ଦାୟାଦେ ଛଳେ ତ ନକର ଦୟା ,
କାୟା କି କଠୋରଭାବେ ନିର୍ଦ୍ଦୟା ହେ ,
ବାୟା ହେଲଣି କି ପ୍ରଭୁ ?
ବ୍ୟାୟାମେ ନିଜାଙ୍ଗ ଚଳାଇ ଜାଗ ହେ
ଜନତା ଅଭୟ ଲଭ ।

॥ ୬ ॥

କନ୍ଦ୍ରବଳି କର୍ମ୍ମା କରମ ବାମ ?
ସନ୍ଦ୍ରି ମରପୁର ଅମରଧାମ
ଚନ୍ଦ୍ରି ବିପଗ୍ରିତ ତୁମ ଏ ଗ୍ରିତ ;
ବନ୍ଧୁଅଛ କବା ହୃଦୟେ ଭୀତ ହେ ?
ସନ୍ଧ ନୁହେଁ ମୀରବତା ,
ମସ୍ତି ହୁଏ ଘାର କାଳ-ଅନ୍ଧ-ବିପେ ,
ଦାନ୍ଧ ଢଏ ମନୋବ୍ୟଥା ହେ ।

॥ ୭ ॥

ଧଗ୍ରିଦୁଃଖ ଭାର ହ୍ଵାଗ୍ରି ଆପଣ ,
ମଗ୍ରିମବୋଦ୍ଧାର ତୁମର ପଣ ;
କଗ୍ରିମଡ କେନ୍ଦ୍ରେ ଯାଉଛ ସରି
ଚଗ୍ରିଚରନାଥ ! କହ୍ନ କପଣ ହେ ?
ପଗ୍ରିପର ଭାବ ତେଜ ,
ପଗ୍ରିପୂର ଜାଗ, ଜନ୍ମକୃଷ୍ଣ ଗ୍ରାପେ—
ପ୍ରଭୁ , ନିଜଗୁଣ ହେଜ ହେ ।
**

✻✻

# ଏ ଜୀବନ ବଡ଼ଦାଣ୍ଡେ

## ଅଧ୍ୟାପକ ଜୟକୃଷ୍ଣ ମିଶ୍ର

(ବିଂଶ ଶତାବ୍ଦୀ)

ଜଗଜ୍ଜୀବନ ହେ ଏ ଜୀବନ ବଡ଼ଦାଣ୍ଡେ
ଧାଇଁଥାଉ କାଳେ କାଳେ ତୁମ ରଥ
ଦଣ୍ଡେ ନ ଅଟକି ଘଣ୍ଟେ (ମହାବାହୁ) ॥୦॥

ଦେଖୁଥିବ କଳାଶ୍ରୀମୁଖ ତୁମର ଲେଖୁଥିବ ତୁମ ଗୀତ,
ଚକା ସେ ଆଖିରେ ମଜାଇ ମନ ମୋ ହଜି ଯାଉଥିବ ନିତ ॥୧॥

ସମୀପେ ଯାଇ ମୁଁ ଶ୍ରୀଅଙ୍ଗ ପରଶେ ଧନ୍ୟ ହେବାର କାମନା
ପୋଷି ନାହିଁ କ୍ଷଣେ, କିଛୁ ମାଗିବାକୁ କଦାଚ ନାହିଁ ବାସନା ॥୨॥

ନ ବାଞ୍ଛଇ ଭୋଗ ବିଳାସ ତଳେ ମୁଁ ଇନ୍ଦ୍ର କୁବେର ସମ୍ପଦ,
ନ ଲୋଡ଼ଇ ଜ୍ଞାନ ମରତେ ସମ୍ମାନ ନ ଇଚ୍ଛଇ ମୋକ୍ଷ ପଦ ॥୩॥

ମହାଭାବେ ନିତ ଦିନ ଯାଉ ବିତି ଜନମେ ଜନମେ ମୋର
ପାଦ ପଦ୍ମେ ମଧୁବ୍ରତ ବ୍ରତେ ନ ଇଚ୍ଛଇ ଛେଦିବାକୁ ମାୟାଡୋର ॥୪॥

ଧ୍ୟାନେ ଡାକେନି,–ଭବପାରାବାରୁ ଆହେ କୃପା-ଅକୂପାର
ପାରକର ମୋତେ, ମରଣ ଦଣ୍ଡରୁ କାଳ ହେ ଆସି ଉଦ୍ଧାର ॥୫॥

ଅଜ୍ଞାନେ ଜ୍ଞାନେ ବା ନ ଇଚ୍ଛଇ ତବ ଶ୍ରୀପଦେ ନିବେଶି ମନ
ସୁଧୀ-ବୁଦ୍ଧି ମନ୍ତ୍ର- ଗୁରୁଗଉରବେ ଲଭିବି ପରମ ଧନ ॥୬॥

ତତ୍ତ୍ୱଜ୍ଞାନ ଲଭି ଜୀବନେ ମୁଁ ଯାଇଁ ଜିତିବାକୁ ପଦେ ପଦେ
ନ ଇଚ୍ଛଇ ବାରେ ଆହେ ଜଗନ୍ନାଥ ନ ପୂର ବିଜୟ ମଦେ ॥୭॥

ନ ହୋଇବ ପ୍ରଭୁ ତୁମ ରୂପ ଗୁଣକୀର୍ତ୍ତନେ ମୁଁ କ୍ଳାନ୍ତିମାନ
ଅନନ୍ତ ଯେ ରୂପ ଗୁଣାବଳୀ କାହିଁ କହିବି ବା ଅବଧାନ ॥୮॥

ପାଗଳ ହୋଇ ମୁଁ ଡେଇଁ ନାଚୁଥିବି ଧରଣୀର ଭବଖେଳେ,
ଭଣେ ଜୟକୃଷ୍ଣ,—ଚକାଡୋଳା ମୋ ମୁଁ ମିଳାଇବି ବେନି ଡୋଳେ ॥୯॥

✻✻

**

# ନିରନ୍ତେ ନୀରବେ ବନ୍ଦେ

**ଡଃ ରମାନାଥ ମହାନ୍ତି**

(ବିଂଶ ଶତାବ୍ଦୀ)

ନୀଳ ଶଇଳ ଶିଖର ବିଳାସୀ
କୋଟି ବିଧୁ ଜିଣେ ବଦନ ଶଶୀ
କେ ତୁଳି ପାରିବ ଶ୍ରୀଅଙ୍ଗ କାନ୍ତି
ଇନ୍ଦ୍ର ନୀଳମଣି ତୁଚ୍ଛ ସେ ଅତି
ଅମଳ କମଳ ଆଖି ଯେ
ଥରେ ବିଲୋକିଲେ ଶୋକ ତାପ ଯାଏ
ଚିତ୍ତ ରହିଯାଏ ଲାଖି ॥

ଅନନ୍ତ କୋଟି ବ୍ରହ୍ମାଣ୍ଡ ଈଶ୍ୱର
ପାଳକ ତାରକ ସାରା ବିଶ୍ୱର
ଶରଣବତ୍ସଳ କରୁଣାନିଧି
ସମ କୃପାଦାନ ଯାହାର ବିଧି
ଯା' ବିଶାଳ ବାହୁ ତଳ ଯେ
ଯେତେ ଦୀନ ହୀନ ପତିତ ପାମର
ସବୁରି ଆଶ୍ରୟ ସ୍ଥଳ ॥

ଚରାଚର ବିଶ୍ୱ ସୃଷ୍ଟି କରତା
ସର୍ବ ଶୁଭମୟ ମଙ୍ଗଳଦାତା
ଗୋପାଳ ଗୋବିନ୍ଦ ଶ୍ରୀବନମାଳୀ
ଗୋକୁଳଚନ୍ଦ୍ରମା ଗୋପସଙ୍ଗାଳୀ ସେ
ବୃନ୍ଦାବିପିନ ବିହାରୀ ଯେ
ବିଶ୍ୱମୋହନ ଯା' ମୁରଲୀ ସ୍ୱନ
ରନ୍ଧ୍ରେ ରନ୍ଧ୍ରେ ଅଛି ପୂରି ॥

ବିଶ୍ୱ ବ୍ରହ୍ମାଣ୍ଡର ଜୀବ-ଜୀବନ
ସବୁର ପରିତ୍ରାଣ ପରାୟଣ
ଚୁପଚେ ଗୁପଚେ ଆଏ ସେ ପାଶେ
ଆରତେ ଡାକିଲେ ତୁରତେ ଆସେ
ଦୂରତେ ଆଉ କେ ସାହା
ଅଛି ତାଙ୍କ ବିନା ସେ ଅନନ୍ୟ ସ୍ୱନା
ଚଉଦଭୁବନ ନାହା

ନୀଳଶଇଳ ଶିଖରେ ବସନ୍ତି
ରସମୟ ରମ୍ୟ ଦାରୁ ତ୍ରିମୂର୍ତ୍ତି
ହଳୀ ବନମାଳୀ ସଙ୍ଗେ ଭଗିନୀ
ଦୀନ କାଙ୍ଗାଳର ଦେବତା ତିନି ସେ
ପତିତଜନ ତାରଣ ଯେ
ମୁନି ମନୋହାରୀ ମୋହନ ମୂରତି
ଉଭା ସ୍ନାନ ସିଂହାସନେ ॥

ଦର୍ଶନେ ହୁଅଇ କଳୁଷ କ୍ଷୟ
ଆଯାଚତେ ମିଳେ ବର ଅଭୟ
ସହଜ ସୁଲଭ ଦର୍ଶନ ଆଜି
ସ୍ନାନ ମଣ୍ଡପେ ଅଛନ୍ତି ବିରାଜି
ଅଶେଷ କରୁଣାମୟ ଯେ
କୋଟି କୋଟି ପ୍ରାଣ ଶୀତଳ ହୁଅଇ
ଲଭି ଯା' କୃପା ଅମିୟ ॥

କେଡ଼େ ବଡ଼ ପ୍ରଭୁ ଆଉ ସହାୟ
କେଉଁ କଥାରେ ଅଛି ଅବା ଭୟ ?
ଖୋଲି ରହିଅଛି କୃପା ଭଣ୍ଡାର
ଧାନ ବଡ ଏଥି ନାହିଁ ବିସ୍ତର
ସେ ପ୍ରଭୁ ପଦାରବିନ୍ଦ ଯେ
ଦୀନ ଅକିଞ୍ଚନ ଅଜ୍ଞାନୀ ଅଧମ
ନୀରବେ ନୀରବେ ବନ୍ଦେ ॥
**

କୃଷ୍ଣ

* *

# ଚକା ଆଖି ହୋ

## ଶ୍ରୀମତୀ ତୁଳସୀ ଦାସ

(ବିଂଶ ଶତାବ୍ଦୀ)

ଚକା ଆଖି ହୋ,        ଲୁହଁ କହୁବ ଆଖି
ସତ କହୁବଟି,        ଜୀଏ ନାହିଁ ବାଛୁ
   କୃପାନିଧି ନାମ ଦେଲା କାହିଁକି ? ।।ଘୋଷା।।

କୃପା ମାଗୁ ମାଗୁ        ଦିନ ବହିଯାଏ
   ନ ମିଳଇ କୃପା କଣିକାଏଟି
ଲୁହ ନ କାଢ଼ ମୁଁ        ଚକଡ଼ କାନ୍ଦଇ
   କରମ ଆଦର ଦୁଃଖ ସହିକ ।।୧।।

ଦୀନ ବନ୍ଧୁ ନାମ        ନିଅନ୍ତି ଆପଣ
   ଦୀନ ଭାସି ଯାଏ ଆଉ ଗୁହିଁକ
ମହାପ୍ରଭୁ ବୋଲି        ଦିବସ ରଜନୀ
   ମିଛେ ମିଛେ ମୁହିଁ ମରୁଛି ଡାକ ।।୨।।

ଭକତର ଭଗ-        ବାନ ବୋଲି ହରି
   ପଡ଼ି ଅଛି କୁହ କାହିଁ ପାଇଁକି ?
ଭକତ ସରଲେ        ଭକତି ଆଉ ଯେ
   କିଏ ସେ ବାଢ଼ିବ କୁହ କାହିଁକି ।।୩।।

ପତିତ ପାବନ-        ନାମ ଉଡ଼ାଇଛ
   ସେ କଥା ପ୍ରଭୁ ହେ ମନେ ନାହିଁକି ?
ପତିତ ବିନାଶ        ହେବଲ୍ ଅପଯଶ
   ରଟିବ ଅନାଦି କାଳ ପାଇଁକି ।।୪।।

* *

**

# ବଡ଼ ଠାକୁର ହେ

## ଶ୍ରୀମତୀ ତୁଳସୀ ଦାସ

(ବିଂଶ ଶତାବ୍ଦୀ)

ବଡ଼ ଠାକୁର ହେ ବଡ଼ ଦେଉଳକୁ
ଆଉ ଯିବ ନାହିଁ
ଧୂପ, ଦୀପ ଦେଇ ଜଉଗ୍ଲାନ ହୋଇ
ଗୁହାରି ଭଣିବ ନାହିଁ ।।ପଦ।।

କି ଲାଗି ପୂଜିବ କୃଷ୍ଣ
ବଚନେ ନ ଶୁଣିଲ ଲୁହ
ତୁମ ପର ପଭୁ ଆଉଁ ଆଉଁ ମୋର
କଷଣ ସହିଲ ନାହିଁ ।।୧।।

କି ଅପରାଧ ମୁଁ କଲି
ମୋ' ଜୀବନ ଦେଲ ଜାଳି
କି ଲାଗି ମଣିଲ ବଣ ବୃକ୍ଷ ମୋତେ
ବୁଝିତ ପାରିଲ ନାହିଁ ।।୨।।

ଅରକ୍ଷ ରକ୍ଷଣ ଦାନା
ଉଡ଼ାଉଛ ମିଛେ ସିନା
ଚକା ନୟନକୁ ଚକାଇ ବସିବା
ଶେଷ ହେଲା ମୋର ସାଇଁ ।।୩।।

**

**

# ଚକାନୟନ

## ଶ୍ରୀମତୀ ତୁଳସୀ ଦାସ

(ବିଂଶ ଶତାବ୍ଦୀ)

ଚକାନୟଁନ, ଚକାନୟଁନ
କର ପଞ୍ଚ ଯୋଡ଼ି ଡାକେ
ଗୁହାରି ଶୁଣ ||ଘୋଷା ||

ମୋର ଦୁଃଖ ବେଳୁ ବେଳ
ହେଉଛି ପ୍ରଭୁ ପ୍ରବଳ
କେତେ ପରଖିବ ଆଉ,
କୁହ କୁହ ରାଧିକାମୋହନ ||୧||

ଜାଣି ହୋଇଲେ ଅଜଣା
ବାଜିବ ନିନ୍ଦା ବାଜଣା
ଖାଉନ୍ଦ ହୋଇ ଭଗାସ୍ତ-
ହେଲେ ହସିବେ ଜଗତ ଜନ ||୨||

ଦିଅ ଯେତେ ଦେବ ଦୁଃଖ
ତାହା ମୁଁ ମଣିବି ସୁଖ
କରୁଣା କର (କର) କରୁଣା
ଶ୍ରୀରଙ୍ଗା ଚରଣେ ରହୁ ମନ ||୩||

**

**

# ଆଉ କାହାକୁ କହିବ

## ଶ୍ରୀମତୀ ତୁଳସୀ ଦାସ

(ବିଂଶ ଶତାବ୍ଦୀ)

ଆଉ କାହାକୁ କହିବି ମୋ' ଦୁଃଖ ହେ
ତୁମେ ନ ଶୁଣିଲେଟି କଳା ଶ୍ରୀମୁଖ ହେ ॥ଘୋଷା ॥

ଜନମ କଲ ଯେବେ
ଭଗାରି ହେବ ତେବେ
    କୃଷ୍ଣକ ବୋଲିବେ ଏ ଜଗତଲୋକ ହେ ॥୧॥

ତୁମେ ମାରିଲେ ମାରିବ
ତୁମେ ତାରିଲେ ତାରିବ
    ତୁମ ହାତେ ଛୁରି ପ୍ରଭୁ ତୁମ ହାତେ ବେକ ହେ ॥୨॥

ମାଗୁନି ମୁଁ ଧନ ଜନ
ଗୋପ ଲକ୍ଷ୍ମୀ ବଡ଼ପଣ
    ପଦ୍ମପାଦେ ଦିଅ ସ୍ଥାନ, ଲୋଡ଼ େନି ମୁଁ ସୁଖ ହେ ॥୩॥

**

**

# ଭାବ ବିନୋଦିଆ

**ଶ୍ରୀମତୀ ତୁଳସୀ ଦାସ**

(ବିଂଶ ଶତାବ୍ଦୀ)

ଭାବ ବିନୋଦିଆ ଆହେ ବଡ଼ ଠାକୁର
କିଏ ଦେଲା ଜଗନ୍ନାଥ ନାମ ତୋହର ||ଘୋଷା||

ଡାକି ଡାକି ଦିନଗଲା ଦିନେ ତୋ' ଦୟା ନୋହିଲା
କାହିଁକି ଏତେ ବଡ଼ିମା ତୁଚ୍ଛା ଗୁମର ||୧||

ସମୁଦ୍ରେ ବର୍ଷି ଜଳ ଟୋପାଏ ନ ପାଏ କୂଳ
କହିବୁକି ଆଖି ଛୁଇଁ କି ସାଧ ତୋର ||୨||

ଚରଣେ ଶରଣ ଦେଇ ତାରଣ କର ହେ ସାଇଁ
ଜୀବନ ବନ୍ଧୁ ମାଗୁଣି ଏତିକି ମୋର ||୩||

**

**

# ଜୁହାର ତାହାକୁ

## ଗୌର ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ଷାଠିଏ ପଉଟି ଭୋଗ		ନଅଣ୍ଟ ଯାହାକୁ
ସିଏବା ବୁଝିବ କାହୁଁ		ଆନର ଭୋକକୁ ॥

ରତ୍ନ ସିଂହାସନ ଲୋଡ଼ା		ବସିବାକୁ ଯାର
କେତେ ନାଚ ଖଟୁଆନ୍ତି		ସେବାରେ ଯାହାର
ଏତେ ସୁଖ ଛାଡ଼ି କିଏ		ଆସେ କି ତଳକୁ ॥

ବଡ଼ ବଡ଼ ଆଖି ଥିଲେ		ଲାଭ କିସ କୁହତ
ଆଖି ଯଦି ନ ଜଗିଲା		ଗଣ୍ଡାବର ମହତ
ସିଏବା ହେଉ ସେ ଦୂରୁ		ଜୁହାର ତାହାକୁ ॥

**

**

# ଷାଠିଏ ପଉଣ୍ଟି ଖାଇ

## ଗୌର ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ବଡ଼ କପଟିଆ ହେଲଣି କାଳିଆ
　　　　ବଡ଼ ଦେଉଳରେ ରନ୍ଦ
ବଡ଼ମାନଙ୍କର ସୁଖ ଦେଖିବାକୁ
　　　　ବଡ଼ ଆଖି ଅଛ ବନ୍ଦ ॥

କାହାକୁ ଦେଉଛ ଧନ ଜନ ମାନ
　　　　କାହାଠୁଁ ନେଉଛ ପୁଣି
କାହାକୁ ଦେଉଛ କେତେ ଯେ କଷଣ
　　　　ପାରୁନ କହୁ ମୁଁ ଜାଣି
ତୁମର ଏ ଖେଳ ଆମ ପାଇଁ କାଳ
　　　　ଲାଭ ନାହିଁ ଏତେ କନ୍ଦ ॥

କେତେ ପାପୀ ତୁମେ ମୁକତ କରିଛ
　　　　ସରଗର ସୁଖ ଦେଇ
ସାଧୁ ଲାଗି ତୁମେ ପାଷାଣ ଦେବତା
　　　　ବସି ଥାଅ ମୂକ ହୋଇ
କେତେ ଦିନ ଆଉ ଠକବ ଠାକୁରେ
　　　　ଷାଠିଏ ପଉଣ୍ଟି ଖାଇ ॥

**

**

# ଜଗନ୍ନାଥଙ୍କୁ

## ଅଧ୍ୟାପିକା ମନୋରମା ରଥ ମହାପାତ୍ର

(ବିଂଶ ଶତାବ୍ଦୀ)

ହେ ପ୍ରଭୁ ଜଗନ୍ନାଥ ଲୋଡେ ମୋ ଚିତ୍ତ
ତୁମର ଶୁଭାଶୀଷ କୃପା ସତତ ।

ଲଭିଲେ ଆହେ ନାଥ ଲିଭିବ ଶୋକ,
ଚିତ୍ତ ନିର୍ମଳ ହେବ ଉଜ୍ଜ୍ୱଳ ମୁଖ ।

କର୍ମ କରିବା ପାଇଁ ଅତୁଳ ବଳ,
କାହୁଁ ଆସିବ ଧାଇଁ, କଷଣ ଦୂର

ହୋଇବ ନିମିଷକେ, ଭରିବ ଆଶା,
ପ୍ରେରଣା ସ୍ରୋତେ ଭାସି ତୁଟିବ ନିଶା ।

ଆଳସ୍ୟ କେଉଁ ଆଡେ ଯିବ ଉଭେଇ,
ସଦା କର୍ମ ତତ୍ପର, ଶୋଚନା ନାହିଁ ।

ଶରୀର ହେବ ସୁସ୍ଥ ଅମାପ ତେଜ,
କାହୁଁ ଆସିବ ମନେ ବିଶ୍ୱାସ ବୀଜ ।

କିଏ ବପନ କରି ମୁହଁରେ ହସି,
ଫୁଟାଇବ ସହସା ଜାଣେ ମୁଁ ଈଶ

କରିବ ତୁମେ ଏକା ଜଗତ ସ୍ୱାଇଁ,
ତୁମର କୃପା କେବେ ଅନ୍ୟଥା ନୋହିଁ ।

ଆନନ୍ଦ ଗୁଣି ନାଥ ଟାଳିବ ସଦା
କାହିଁ ଲୁଚିବ ପ୍ରଭୁ ସକଳ ବାଧା ।

ବିପତ୍ତି କେଉଁ ଆଡେ ଯିବ ଉଭେଇ,
ଲେଖଣୀ ମୂନେ ପ୍ରଭୁ ଆଲୋକ ବାନ୍ଧ ।

ଆଲୋକ ବିତରିବ କରୁଣା-ମୟ,
ଅନ୍ଧକାର ଯେ ପ୍ରଭୁ ନେବ ବିଦାୟ ।

ମରମରୁ ତମସା ହୋଇବ ଦୂର,
ଅନ୍ଧାର ଫେଡ଼ି କାହୁଁ ବିଶ୍ୱାସ ମୂଳ

ଜଳିବ ଦାଉ ଦାଉ ଅନ୍ତର ପୁରେ,
କର୍ମରେ ମତ୍ତ ହେବ ଆବେଗ ଭରେ

ସକଳ ବାସନା ମୋ ଭରିବା ପାଇଁ,
ଧାଇଁବ ଅନୁକ୍ଷଣ ସେ ପଦ ଧ୍ୟାୟୀ ।

ସେ ପଦ ମୂଳେ ଚିତ୍ତ ଥିଲେ ଅଟଳ,
ଝରିବ ସିନା ସଦା ପ୍ରେରଣା ଝର ।

ମରମେ ଭରିଯିବ ଆଶା ପ୍ରତ୍ୟୟ,
ଅନନ୍ତ ଅନ୍ଧକାର ଘୋର ପ୍ରଳୟ ।

ବିଜୁଳି ଘଡ଼ ଘଡ଼ି ହେ ପ୍ରଭଞ୍ଜନ,
ନିମିଷେ ଦୂର ହେବ ମାୟା ଅଂଜନ ।

ଅପସରିବ ନେତ୍ରୁ ସତ୍ୟ ସ୍ୱରୂପ,
ନିରେଖି ଅନୁକ୍ଷଣ ଭୁଲିବ ଶୋକ ।

ସୁଖ ସାଗରେ ପ୍ରଭୁ ଭାସିବ ମୁହିଁ
ଦିବ୍ୟ ଜ୍ଞାନ ଆଲୋକ ସୁଦୟା ବହି ।

ଦେବ ତୁମେ ପରାଣ ସଖା ହେ ସତେ,
ମିନତି ବାଢେ ନାଥ ଚରଣ ପ୍ରାନ୍ତେ ।

ଜଗତ ଜନ ଦୁଃଖେ ହେଲ ଅଧିର,
ମୋ ପାଇଁ ଆହେ ପ୍ରଭୁ ନୁହେଁ କଠୋର ।

ମୋ ଚିତ୍ତେ ନିତ୍ୟ ବଳ ଭର ଗୋସାଇଁ,
କର୍ମ କରିବା ପାଇଁ ନିୟୁତ ଧୀ,ସ୍ଥି

ଜ୍ଞାନ ଅର୍ଜନେ ଚିତ୍ତ ଅତୃପ୍ତ ଥାଉ,
ସନ୍ତୋଷ ମିଳୁ ନାଥ ଶୋଚନା ଯାଉ ।

ଲେଖନୀ ସ୍ଖଳୁ ମୋର ନୋହୁ ନିସ୍ୱଣ,
ହୃଦ ବେଦନା ସବୁ କରେ ପ୍ରକାଶ ।

ସତ୍ୟ ବାଣୀ ସ୍ମରଣେ ଚିତ୍ତ ମୋ ଭରୁ,
କାମନା ପୂରୁ ନାଥ, ବିଦ୍ୱେଷ ସରୁ ।

ଅନନ୍ତ ଲୀଳାମୟ କରୁଣା ନିଧି ,
ଦୟା କରିବ ବାରେ ଲଭିବ ସିଦ୍ଧି ।

କରିବା ପାଇଁ କର୍ମ ବଳୁ ମୋ ମନ,
ଚିତ୍ତେ ବିଶ୍ୱାସ ଦିଅ ଚକାନୟନ ।

ଆତ୍ମବିଶ୍ୱାସ ଦିଅ ଦୃଢ଼ ପ୍ରତ୍ୟୟ,
ଆନନ୍ଦ ଧାୟୀ ନାଥ ତୁମଠି ଲୟ ।

ଅନୁକ୍ଷଣ ହେ ଆଉ ପରାଣ ସଖା,
ଘନ ତମସା ମଧ୍ୟେ ପ୍ରଦୀପ ଶିଖା ।

ତୁମର ସ୍ମିତ ନାଥ ଦେଖାଇ ଦେବ,
ଘୋର ଦୁଃଖରେ ମୁଖେ ବାଣୀ ସ୍ଫୁରିବ ।

ଆଶା ଉତ୍କଳ ମୁଖ ଉଜ୍ଜଳିବ ସୁଖ,
ନିରେଖି ଚକା ଡୋଳା ସେ କଂଜମୁଖ

କର୍ମ ସ୍ରୋତରେ ଚିତ୍ତ ନିଯୁକ୍ତ ଭାସି
ଆନନ୍ଦ ସାଗରରେ ପଡ଼ିବ ଝାସି ।

ଦିବ୍ୟ ଆନନ୍ଦ ରସେ ହୋଇ ମଗନ,
ସଂସାରକୁ ମଣିବ ଯେସନ୍ତେ ସ୍ୱପନ ।

ସରଗ ସୁଖ ଶିର ଆସ୍ୱବ ଫେର,
ଭକତି ଥିଲେ ଚିତ୍ତେ ହେ ଚନ୍ଦଧାସ୍ମି ।

ଅନ୍ୟଥା ହେବ ନାହିଁ ନର ଜୀବନ,
ଦେବ ଦୁର୍ଲଭ ଜନ୍ମ ହେବ ଶୋଭନ ।

ଭକତି ଲୋଡ଼ା ନାଥ କରୁଣାମୟ
ଭକତି ବଳେ ସିନା କରିବ ଜୟ ।

**

**

## ଦେଖେ ନେତ୍ର ମେଲି

### ଅଧ୍ୟାପକ ମନୋରମା ରଥ ମହାପାତ୍ର

(ବିଂଶ ଶତାବ୍ଦୀ)

ଚନ୍ଦଧାସ୍ମି ଚରଣରେ ଚିତ୍ତ ରଖି ମୁହିଁ
ଗାଉଛି ଏ ଗୀତ କ୍ଷମା କର କୃପା ବନ୍ଧୁ ।

ବିଚଳିତ ଚିତ୍ତ ମୋର ଅସ୍ଥିର ସତତ
କୃପା କରିଲେ କରିବ ତୁମେ ଦୀନନାଥ ।

ଦୀନଜନ ଠାରେ ଦୟା ଦୀନବଂଧୁ ନାମ
ଜନାଦିତ ଯୁଗେ ଯୁଗେ ପତିତପାବନ ।

ଅନନ୍ତ ଅମାପ ପ୍ରଭୁ ତୁମର ମହିମା
ମୂକ ମୁଖେ ବାଣୀ ଦିଅ କଲେ ସେ ସାଧନା ।

ସାଧନା ନିମନ୍ତେ ପ୍ରଭୁ ବଳାଅ ମୋ ମନ
ସାଧନାର ପଥ ପ୍ରଭୁ ଅତୀବ ବିଷମ ।

ସେ ବିଷମ ପଥେ ପାଦ ରଖିଛୁ ଗୋସାଇଁ
ଥର ଥର ଥରେ ଦେହ ଦମ୍ଭ ଆସେ ନାହିଁ ।

କ୍ଷୁରଧାର ପଥେ କେତେ କରିବି ଗମନ
ଆଲୋକ ଦେଖାଅ ପ୍ରଭୁ ଦୃଢ କର ମନ ।

ଚିତ୍ତ ସରସୀରେ ଫୁଟୁ ଭକତି ସୁମନ
ତୁମଠାରେ ଆସ୍ଥା ଥାଉ, ସନ୍ଦେହ ମୋଚନ

କରିବ ତୁମେହିଁ ପ୍ରଭୁ କରୁଛୁ ଗୁହାରି
ସନ୍ଧାନର ପଥ ନାଥ ଦେଖେ ନେତ୍ର ମେଲି ।

**

**

# ଦିଅ ହେ ଜଗନ୍ନାଥ

## ଅଧ୍ୟାପିକା ମନୋରମା ରଥ ମହାପାତ୍ର

(ବିଂଶ ଶତାବ୍ଦୀ)

ନେତ୍ର ଉତ୍ସବେ ଚକ୍ଷୁ ଦିଅହେ ଚକା ନୟନ
ଅନ୍ଧ ମୁଁ ଆହା ନେନେ ବୋଲୁଛୁ ମାୟା ଅଞ୍ଜନ ।

ପାରୁନାହିଁ ଦେଖି ସେ ରୂପ ମୂରତି ନିତ୍ୟ ଅମୃତ
ସୁଧାମୟ ରୂପ ପ୍ରେମର ପ୍ରତୀକ; ସତ୍ୟ ସ୍ୱରୂପ ।

କେବଳ ଦିଶଇ ଅନ୍ଧ ନୟନେ ଅନ୍ଧକାର
ଘୋର ଦୁର୍ଦ୍ଦିନ ରୋଗ ଜରା ଦୁଃଖ ନର୍କ ଦ୍ୱାର ।

ମଣିଷ କେମିତି ଛୁଟୁଛି ବକଳେ ହଜାଇ ଦିଗ
ମାୟାରେ ଝଟକ ରୂପ ଦିଶେ ସତେ ସୁଖ ସୋହାଗ ।

ଏଇ ଘର ଏଇ ସଂସାର ଏଥି ଆସିଛୁ ମୁହିଁ
ଭୋଗ ମୁଁ କରିବ ଗ୍ରାସିବ ସକଳ ମତ୍ତ ହୋଇ

ଅହମିକା ଭରେ ଗରବରେ ଭୁଲି ମରଣକଥା
ସମ୍ଭୋଗ ଶିର ଲୁଚି ନେବ ଭୁଲି ଟେକିଲି ମଥା ।

ଶ୍ରବଣେ ବାଜିଲା ମରମ ଭେଦିଲା ଅମିୟ ବାଣୀ
ଜାଣିଲି ହେ, ପ୍ରଭୁ ହେ ଚକାନୟନ ପଦ୍ମପାଣି ।

ପଦ୍ମ ପତରେ ଟଳ ଟଳ ଟଳ ବିନ୍ଦୁ ସମାନ
ସଂସାରେ ଥାଇ ବିଭୁ ପୟରରେ ଢାଳିଲେ ମନ ।

ଆସକ୍ତ ମୋହ ପାଶରେ ନପଡ଼ି ସତ୍ୟ ରୂପ
ନଦେଖି ଦେଖିଲେ ମନ ଗହ୍ୱଳରୁ ଲଭିବ ଶୋକ ।

ଅନ୍ଧାର ଭରା ଅନ୍ତଃକରଣ ଉଠିବ ଭରି
ଆଲୋକ ଝରଣା ଅମୃତମୟ ପୁଣ୍ୟଶିରି ।

ଆନନ୍ଦମୟ ଆନନ୍ଦଧାରା ଛୁଟିବ ମନେ
ଦିବ୍ୟ ଲୋଚନ ଚକ୍ଷୁ ଦିଅ ହେ ଏଇ ଲଗନେ ।

ଦର୍ଶନାୟନ ଲଭିବ ଜାଣିବ ମିଥ୍ୟା ମାୟା
କଷଟି ପଥରେ କଷିବ ମରମ କର ସୁଦୟା ।

ନେତ୍ର ଉତ୍ସବେ ନେତ୍ର ଦିଅହେ ଜଗନ୍ନାଥ
ଜଗତର ହିତେ ଯାପିବ ଜୀବନ ପୁଣ୍ୟ ପଥ ।

ବାଛି ନେବ ପ୍ରଭୁ ଶକ୍ତି ଦିଅ ହେ ଚିତ୍ତ ମୋର
ଆକୁଳ ପରାଣେ ଡାକୁଛି ହେ ପ୍ରଭୁ ଦିବସ ଘୋର

ବିପଦେ ଅନ୍ଧ ଦୃଷ୍ଟି ଦିଅ ହେ ଜଗତନାଥ
ନିବେଶି ଚିତ୍ତକଞ୍ଜ ଚରଣେ ପାଳିବ ବ୍ରତ ।

**

**

# ହେ ଚକା ଡୋଳା

ଅଧ୍ୟାପିକା ମନୋରମା ରଥ ମହାପାତ୍ର

(ବିଂଶ ଶତାବ୍ଦୀ)

ଶ୍ରୀ ଜଗନ୍ନାଥ ପଦେ ନମିଲି ପ୍ରଭୁ,
ସେ ନାମ ମୁଖେ ଧରି ଅପାର ଭକ୍ତି ।

ଉଙ୍କରିବ ହେ ନାଥ ବକ୍ଷରେ ଚିତ୍ତ,
ରଚନା କରିବାରେ ଚିତ୍ତ ନିଯୁକ୍ତ ।

ଆଉ ଠାକୁର ଆହା ଏତିକ ଆଶା,
ରଖିବ ମରମରେ ମୁଖରେ ଭାଷା

ଦେବ ତୁମେ ଗୋସାଇଁ ହେ ଜଗନ୍ନାଥ
କବି ହେବାକୁ ମୋର ବଳିଛି ଚିତ୍ତ ।

ତୁମ ଚରଣେ ପ୍ରଭୁ ଭକତି ଥାଉ,
ଯାହା ଦେଇଛ ପ୍ରଭୁ ଅନ୍ୟଥା ନୋହୁ ।

ହସ୍ତରେ ଲେଖନୀ ମୋ ହେଉ ଚଞ୍ଚଳ,
ଆନନ୍ଦ ବିତରି ମୁଁ ଜୀବ ସକଳ ।

ସେବାରେ ରତ ହେବି କରୁଣା-ମୟ
ଜୀବନ ଥିବା ଯାକେ ତୁମଠି ଲୟ ।

ମୋ ମୁଖେ ବାଣୀ ଦିଅ ଲେଖନ ଶକ୍ତି,
ତମେ ପାରିଲେ ଦେବ ଜଗତ ପତି ।

ପତିତପାବନ ହେ କରେ ମାଗୁଣି,
ଅଧମା ଜନମ ଖୀ ଯୋଡ଼ି ମୋ ପାଣି ।

ସତ୍ୟ ପ୍ରଗ୍ଧରେ ମୋର ଲେଖନୀ ସଦା
ମାନବ ସେବା ପାଇଁ ନପାଇ ବାଧା

ଅନୁକ୍ଷଣ ହେ ପ୍ରଭୁ ଗ୍ଧଲୁ ଲେଖନୀ,
ସାହିତ୍ୟ ସାଧନାରେ ପୂଜିବ ବାଣୀ

ବୀଣାପାଣିଙ୍କ କୃପା ମୋଠାରେ ଥାଉ,
ଲେଖନୀ ମୁନେ ପ୍ରଭୁ ବେଦନା ଯାଉ

ତୁମର ଗୁଣ ନାଥ ପାରଲେ ଗାଇ,
ଭବ ସଂସାରେ ଦୁଃଖ ରହିବ ନାହିଁ ।

ସଫଳ ହେଇବ ମୋ ନାରୀ ଜନମ,
ରଚନା ଶକ୍ତି ଦିଅ ହେ ଅଭିରାମ ।

ପତିତ ପାବନ ହେ କରୁଣାନିଧି
କୃପାସିନ୍ଧୁ କର ହେ ଲଭିବ ସିଦ୍ଧି ।

ଶକତି ଦିଅ ନାଥ କରୁଣା-ନିଧି,
ପୁରୁ ମୋ ମନୋରଥ ଲଭେ ମୁଁ ସିଦ୍ଧି ।

ମାନସେ ବିଶ୍ବରେ ଯା' ଲେଖିବ ତାହା,
ଶକତି ଦିଅପ୍ରଭୁ ଦେଖିବ ସ୍ବାହା ।

ଏତିକ ଶ୍ରୀଚରଣେ ମାଗୁଛି ମୁହିଁ,
ଆନ ବରରେ ମୋର ମାନସ ନାହିଁ

ହେ ପ୍ରଭୁ ମାଗୁନାହିଁ ଧନ ସଂପତ୍ତି
ମାଗୁଛି ଚରେ ଦିଅ ଅଚଳ ଭକ୍ତି

ତୁମ ଠାରେ ହେ ନାଥ ଥିଲେ ବିଶ୍ୱାସ,
ମନରୁ କ୍ଲେଶ ସବୁ ହୋଇବ ନାଶ ।

ଯାହା ବିଶ୍ବରେ ହିତ କରିବା ପାଇଁ
ଦମ୍ଭ ମନରେ ଆହା ଆସଇ ନାହିଁ ।

କର୍ମ କରିବା ପାଇଁ ମନର ବଳ,
ନ ପାଇ ପ୍ରଭୁ ହୁଏ ସଦା ବିକଳ ।

ମିଳିବ ଏ ଭରସା ନ ପାଇ ସଖା,
ଜନ୍ମାନ୍ତର ଯନ୍ତ୍ରଣା ଲଲାଟେ ଲେଖା ।

ଅପାରଗ ହେ ପ୍ରଭୁ ପ୍ରବଳ ଇଚ୍ଛା
ହୁଏଚ ନାହିଁ ଚିତ୍ତେ ଅଟଳ ବାଞ୍ଛା ।

ପୂରଣ ହେବ କେହ୍ନେ ହେ ଜଗଦୀଶ
ଦୁର୍ବଳ ଚିତ୍ତେ ପ୍ରଭୁ-ଭର ସାହସ ।

ଭକତି ଶକ୍ତି ଦିଅ ଅଟଳ ଦମ୍ଭ
କରୁଣା ପ୍ରୀତି ଭରେ ସବୁ ସମ୍ଭବ

ହୋଇବ ଏ ଜଗତେ କରୁଣା ସାଇଁ
ମୋ ଚିତ୍ତେ ନିତ୍ୟ ବଳ ଭର ଗୋସାଇଁ ।

ମିନତି କରେ ନାଥ ଯୋଡ଼ି ମୋ କର,
ଲେଖନୀ ଶକ୍ତ କର, କର୍ମ ସକଳ ।

ଭରିବା ପାଇଁ ମତି, ଦିଅ ଗୋସାଇଁ,
ଧିକଳ ଜୀବେ ସ୍ନେହ ଢାଳିବା ପାଇଁ ।

ଜନ୍ମାନ୍ତର ମୋ ଚିତ୍ତ ହେଉ ବ୍ୟାକୁଳ,
ଈର୍ଷା ବିଦ୍ୱେଷ ମନୁ କରହେ ଦୂର ।

ହାରଲ ବୋଲ ଯେହ୍ନେ ନ ପଡେ ଲାଜ,
ଲଢିବା ପାଇଁ ଟାଣେ ଉଠିବ ସାଜ ।

ପାଦରେ ଦମ୍ଭ ଆହା ଆସଇ ନାହିଁ
ଚଳେ ବିଶ୍ୱାସ ଭର ଜଗତ ସାଇଁ ।

ଆପଣାକୁ ଚହ୍ନିବ ସାଧନା ବଳେ,
ନ ଚହ୍ନି ହଁୁ ଅଛୁ ଆହା ବିକଳେ ।

କସ୍ତୁର ମୃଗସମ ଘୂରୁଛୁ ସିନା,
ସୁରଭ କାହୁଁ ଆସେ ନ ପଡେ ଜଣା ।

ଚିତ୍ତ ମୋହର ପ୍ରଭୁ ହୁଏ ବିକ୍ଷିପ୍ତ,
ଅନନ୍ତ ଲୀଳାମୟ କରିଅ ଶାନ୍ତ ।

ଶାନ୍ତ ସଲିଳ ଭଳି ଦିବ୍ୟ ଆନନ୍ଦ,
ବରଷ ଆହେ ପ୍ରଭୁ, ତୁଟୁ ଏ ଦ୍ୱନ୍ଦ ।

ଆନନ୍ଦ ଲୋଡା ଖାଲି କରୁଣା ମୟ,
ଆନନ୍ଦ ସାଗରରେ ସଦା ମୋ ଲୟ ।

କର୍ମ ସାଧନା ବଳେ ସେ ସୁଖ ପାଇ,
ଜଗତ ଜନ ହିତେ ନସୃତ ଧାଇଁ ।

ଲେଖନୀ ଚଳାଇବ ନୋହି ବିରଣ,
ବରଷି ଦିଅ ପ୍ରଭୁ ଏହି ଆଶିଷ ।

ହେ ଚକାଡୋଳା କରେ ଏହି ପ୍ରାର୍ଥନା
ନସୃତ ମୁଖେ ଫୁଟୁ ତୁମ ମହିମା ।

**

**

# ମୋ ଚକା ଆଖିଆ

## ଶଙ୍କର୍ଷଣ ମଂଗରାଜ

(ବିଂଶ ଶତାବ୍ଦୀ)

ମୋ ଚକା ଆଖିଆ
ଟାହୁଆ ଚୂଳିଆ
ହେ ମୋ କାଳିଆ ଠାକୁର,
ଭାଇ ଭଉଣୀଙ୍କୁ
ରଥରେ ବସାଇ
ଏପରି କରୁଛ ଉଛୁର
    ଏଇକି ବିବେକ ତୁମର ॥୧॥

ଇନ୍ଦ୍ର ଡାକୁଛନ୍ତି
ମଣିମା ମଣିମା
ବ୍ରହ୍ମା କରୁଛନ୍ତି ଗୁହାରି,
ତୁମ ଗଜପତି
ଘୁମୁରେ ହାଜର
ନୟନୁ ଲୋତକ ଝରାଇ
    ନ ଦିଅ ମିନତି ଏଡ଼ାଇ ॥୨॥

ବଡ଼ଦାଣ୍ଡେ ଆଜି
ଜାଗା ଟିକେ ନାହିଁ
ସୋରିଷ ପଡ଼ିବା ପାଇଁକି
ଏତେ ଭକତଙ୍କ
ଆକୁଳ ମିନତି
କର୍ଣ୍ଣକୁ ତୋ ଶୁଭୁ ନାହିଁକି
    ତେବେ ତୋ ବିଳମ୍ବ କାହିଁକି ? ॥୩॥

ଛେଚ୍ଚ କଚ୍ଚ ଖାଇ
ପହଣ୍ଡି କୁ ବଳେ
ନନ୍ଦଘୋଷ ପାଖେ ରହୁଛ,
ସ୍ବର ଝପରକୁ
ନ ଚଢ଼ି କପାଇଁ
ଏପର ହତାଶା କରୁଛ
ମନେ ଅବା କସ ପାଞ୍ଚୁଛ ।।୪।।

**

**

## କେଉଁଠି ଦେଖିଛି

**ଶଙ୍କର୍ଷଣ ମଙ୍ଗରାଜ**

(ବିଂଶ ଶତାବ୍ଦୀ)

କେଉଁଠି ଦେଖିଛ ହନେ କେଉଁ ଜୀବନେ
ପଡ଼ୁଛୁ ମନେ…
ଏ ନୁହେଁ ସୀତାଙ୍କ ରାମ          ଏ ନୁହେଁ ରା[illegible]
ଲକ୍ଷ୍ମୀ ନାରାୟଣ ବାନା ଆକାଶ ଚୁମେ ।।୧।।

ମତ୍ସ୍ୟ କଚ୍ଛପତ ନୁହେଁ          ବରାହ ନୃସିଂହ ନୁହେଁ
ବାମନ ବା ଭୃଗୁରାମ ନ କହେ ଜଣେ
ନୁହଇ ବଉଦ୍ଧରୂପ          ନୁହେଁ କଲକୀ ସ୍ବରୂପ
ଭାଇ ଭଉଣୀଙ୍କ ସାଥେ ରହେ ମଉନେ ।।୨।।

ଏକ ଯୀଶୁ ମହମ୍ମଦ          ନ ଶୁଭେ ଶୂନ୍ୟ ଶବଦ
ଅଣାକାର ବ୍ରହ୍ମ ନୁହେଁ ଆକାର ବହେ
ନୁହେଁ ଚଣ୍ଡୀ କାଳି ଅବା          ଲିଙ୍ଗ ରୂପୀ ବିଶ୍ବ ଦେବା
ଦୀନବନ୍ଧୁ ନାମ ବହୁ ଗୁହାରି ଶୁଣେ ।।୩।।

**

**

# ଲେଢ଼ାନାହିଁ

## ବଂଶୀଧର ମିଶ୍ର

(ବଂଶ ଶତାବ୍ଦୀ)

ଚକାଡୋଳା, ଚକାଆଖି, ଚକାନୟନ,
ସେ ଆଖିକୁ କେଉଁ କଥା ନାହିଁ ଗୋପନ ॥୦॥

ସେ ଆଖିରେ ନାହିଁ ଛନ୍ଦ
ନାହିଁ ଦିନରାତ୍ର ଭେଦ
ତା ଆଖିର ପୁଅ କରେନାହିଁ ଶୟନ ॥୧॥

ବସି ଅନ୍ଧାର ଦେଉଳେ
ସବୁ ଦେଖେ ତାର ଡୋଳେ
ଆଲୁଅ ଅନ୍ଧାର ତାର ସବୁ ସମାନ ॥୨॥

କାନ ନାହିଁ ସବୁ ଶୁଣେ
ସମସ୍ତଙ୍କ ଦୁଃଖ ଜାଣେ
ତାର ମନ ହେଲେ ସିଏ କରେ ମୋଚନ ॥୩॥

ତା ଆଖିରେ ଦେଇ ଧୂଳି
କିଏ ଯିବ ତାକୁ ଛଳି
ତା ଆଖିରେ ଦେଖେ ସିଏ ତିନି ଭୁବନ ॥୪॥

ଅହ ରହ ଥାଏ ଚାହିଁ
ପଲକ ପଡ଼ଇ ନାହିଁ
ଚକା ଚକା ଆଖି ତାର ପତା ବିହୀନ ॥୫॥

ସେ ଆଖିକୁ ଥରେ ଚାହିଁ
ଧ୍ୟାନ ବଂଶୀ ଯିବ ଶୋଇ
ଲେଢ଼ା ନାହିଁ ମୋର ଧନ, ଜନ ସମ୍ମାନ ॥୬॥

**

**

# ତୁମେତ ଜଗତନାଥ

## ବଂଶୀଧର ମିଶ୍ର

(ବିଂଶ ଶତାବ୍ଦୀ)

ଜଗନ୍ନାଥ

ତୁମେ ତ ଜଗତ ନାଥ
ତୁମର ଦୁଆରେ ଆରତେ ମୁଁ ଡାକେ
ଯୋଡ଼ି ମୋର ଦୁଇ ହାତ ।।୦।।

ଆସିଅଛୁ ଧାଇଁ ବହୁଦୂରୁ ମୁହିଁ
ଦୁଃଖ ଜଣାଇବା ପାଇଁ
କର୍ଣ୍ଣ ଡେରିବାରେ ଶୁଣ ତୁମେ ଥରେ
ଆହେ ବ୍ରହ୍ମାଣ୍ଡ ଗୋସାଇଁ ।।୧।।

ଗହନ ବନରେ ଡାକିଲା ହରିଣୀ
ଜଳରେ ଡାକିଲା ଗଜ,
କୁରୁ ସଭା ତଳେ ଦ୍ରୌପଦୀ ଡାକିଲା
ନବାରିଲ ତାର ଲାଜ ।।୨।।

ପାଞ୍ଚ ବର୍ଷର ବାଳକ ଧ୍ରୁବର
ଡାକେ ତୁମେ ଆସିଥିଲ,
ଭକତ ପ୍ରହ୍ଲାଦ ଭକ୍ତିରେ ଡାକିଲା
ସ୍ତମ୍ଭରୁ ବାହାର ହେଲ ।।୩।।

ଗଜପତି ଡାକେ ଗଲ ଦୁଇଥର
କଲ କାଞ୍ଚି ଅଭିଯାନ,
ସାକ୍ଷୀ ଦେବା ପାଇଁ ଡାକିଲା ବ୍ରାହ୍ମଣ
ରଖିଲ ତାହାର ମାନ ॥୪॥

ଯେ ଯେତେ ଡାକିଲେ ସେ ଡାକ ଶୁଣିଲ
ମୋ ଡାକ କିମ୍ପା ନ ଶୁଣ
ନ ଶୁଣିବା ଯାକେ ଡାକୁଥିବ ପାଖେ
ଏଇ ମୋର ଶେଷ ପଣ ॥୫॥

ମାଗୁନାହିଁ ଧନ ଅଥବା ସମ୍ପଦ
ଏତିକ ମାଗୁଣି ଜାଣ
ତୁମର ସମ୍ମୁଖେ ଯାଉ ଏ ଜୀବନ
ବଂଶୀ ଲଭୁ ପରିତ୍ରାଣ ॥୬॥

**

**

# ଜଗନ୍ନାଥ ବନ୍ଦନ

**ଶ୍ରୀମତୀ କଳାବତୀ ଦେବୀ**

(ବିଂଶ ଶତାବ୍ଦୀ)

ଜଗବନ୍ଧୁ ହେ ଜଗନ୍ନାଥ ବନ୍ଦନ
ବଡ଼ ହଟିଆ ଯଦୁ ନନ୍ଦନ ।।୦।।

ତୋ'ପରି ଖାଉନ୍ଦ ଥାଇ
କି ଲାଭ କହ
ହେ ହରି କି ଲାଭ କହ
ନରଜେ ନୟନୁଁ ଯେବେ ଝରିଲା ଲୁହ
ପ୍ରବଳ ହେଲା ଦୁଃଖ ଆହେ କଳାଶ୍ରୀ ମୁଖ
ସୁଖ ହୋଇଲା ସାତ ସପନ ।।୧।।

ପତିତ ଉଦ୍ଧାର ପାଇଁ ଉଡ଼ାଉ ବାନା
ମୁଁ ଜଣେ ପତିତ ଡାକେ ନ ଶୁଣୁ କିନା
ବଡ଼ ବୋଲାଉ ଲାଜ ନାହିଁଟି ଦେବରାଜ
କୃପାଳୁ ହୋଇ, ହେଉ କୃପଣ ।।୨।।

ଦୀନବନ୍ଧୁ ବୋଲାଇ ଦୀନକୁ ମାରୁ
ହେ ହରି ଦୀନକୁ ମାରୁ
ଜଗତ ଜନ ହସିବା କଥା ତୁ କରୁ
କିଏ ହେବ କାହାକୁ ପଚାରେ ତୋ ମନକୁ
ମହାପ୍ରଭୁ ରାଧିକା ମୋହନ ।।୩।।

**

**

# ଜଗତଜୀବନ ସ୍ୱାମୀ


## ଶ୍ରୀମତୀ କଳାବତୀ ଦେବୀ

(ବିଂଶ ଶତାବ୍ଦୀ)


ମାନ ଉଦ୍ଧାରଣ ମୋ'ରମା ରମଣ
ଜଗତ ଜୀବନ ସ୍ୱାମୀ
ହେ ଦୁଃଖ ନାଶନ ଗରୁଡ଼ ଆସନ
ସକଳ ମଂଗଳ କାମୀ ।।୦।।

ବଡ଼ ଦେଉଳର ହେ ବଡ଼ ଠାକୁର
ପଥର ଗଲ କି ହୋଇ
ମୁଁ ଜଣେ ପତିତ ଡାକୁଛି ନିରତ
ମୋ' ଡାକ କି ଶୁଭୁ ନାହିଁ ?
ନୀଳ ଚକ୍ରେ ନେତ ବାଂଧି ଅଛ ନାଥ
କାଲାଗି ଦିବସ ଯାମୀ ।।୧।।

ଲକ୍ଷ ଯୋଜନରେ ଆରତ ସୁରରେ
ଡାକ ଦେଲା ପଶୁ ଗଜ
କୁରୁ ସଭାତଳେ ଦ୍ରୌପଦୀ ଆକୁଳେ
ସ୍ମରିଲ ହେ ଦେବରାଜ
ମୁଗୁଣୀର ସ୍ତୁତି ସୁଦାମା ମିନତି
ଶୁଣିଲ ଅନ୍ତର ଯାମୀ ।।୨।।

**

**

# ଚକାନୟନ ଠକାଉଛ କାହିଁକି ?

**ପ୍ରେମାନନ୍ଦ କର**

(ବିଂଶ ଶତାବ୍ଦୀ)

[ରାଗ-ମାଳବ ଗୌଡ଼ା]

ତାଳ-ଆଦିତାଳ

ଚକା ନୟନ ଠକାଉଛ କାହିଁକି
ଡକା ପକାଏ ଟିକେ ଦେଖା ନାହିଁକି ॥୦॥

ମାଗିବି ବୋଲି କିଛୁ ତୁମ ଭଣ୍ଡାରୁ ବାଛୁ
ଜାଣି ହାତ ଦୁଇଟି ଦେଲ କାଟିକି
ଥିଲେ ଅବା ଚରଣ ନେବି ଭାଲେ ଶରଣ
ପାଦ-ପଦ୍ମ ଲୁଚାଅ ସେଥିପାଇଁକି ।୧।

ଶୁଣିବନି ଗୁହାରି ବୋଲି କି ହେ ଶ୍ରୀହରି
କାହିଁ ଗୁପତ କଲ କର୍ଣ୍ଣ ଦୁଇକି
ନୀଳକନ୍ଦରେ ଲୁଚି କପଟ ଲୀଳା ରଚି
ମାୟାଧର ମାୟା ଲଗାଅ କାହିଁକି ॥୨॥

ତୁମ ରତ୍ନଭଣ୍ଡାର କି ଲୋଡ଼ା ଲକ୍ଷ୍ମୀଧର
ଆଶା, ତୁମ କରୁଣା-ସ୍ନେହ ବା[illegible]କି
ଥାଉ ନଥାଉ କର୍ଣ୍ଣ ଚକ୍ଷୁଃଶ୍ରବା ଆପଣ
ମୋର ଡାକ ନଶୁଣ କାହିଁ ପାଇଁକି ॥୩॥

ବ୍ରହ୍ମା-ଶିବେ ଗୋଚର ନୁହେଁ ତୁମ ପୟର
କର୍ମ୍ମା ବଳାଇବ ମନ୍ଦ ତହିଁକି
ତୁମ ଚକାନୟନ କରୁ ଥରେ ଦର୍ଶନ
ଜୀବ ଯାଉ କାମନା ଏତିକି ॥୪॥

**

**

# କଉଦିଅଁ ବୋଲି ପରା ପଡ଼ୁଚି ହୁରି

## ପ୍ରେମାନନ୍ଦ କର

(ବିଂଶ ଶତାବ୍ଦୀ)

[ ରାଗ-କାମ୍ବୋଜ]

ତାଳ-କହରବା

କଉଦିଅଁ ବୋଲି ପରା ପଡ଼ୁଚି ହୁରି···ହରି ହେ
କଣାଠି ବସିଚ ଦାରୁ ହୋଇ ମୁରାରି ॥୧॥

ଘଣ୍ଟା, ଭେରି, ମର୍ଦ୍ଦଳ, ଗିନି, ପଖଉଜ, ଖୋଳ
ଝଣିମା ଝଣିମା ତାଳେ ଉଚ୍ଛୁଳେ ବଡ଼ ଦେଉଳ
କରିଛ କହେ ମାନ ଆହେ କମଳାନନ···ହରିହେ
ମଉନେ ବସିଚ ଭକ୍ତ ଅନନ୍ତ ଘେରି ॥୨॥

କୁରୁକ୍ଷେତ୍ରେ ସାରଥୀ କାହିଁ ଯୁଦ୍ଧରେ ରଥ
କଉଣପେ ନାଶିଲ ଲଙ୍କାପୁରକୁ ମନ୍ଥି
ନୀଳ କନ୍ଦରରେ ଲୁଚି କାହାଡରେ ବରଷି···ହରି ହେ
ନାମ ବୋଲାଇଲ ନୀଳାଦ୍ରି ବିହାରୀ ॥୩॥

ଦାସିଆ ଠାରୁ ହାତେ ଶ୍ରୀଫଳ ନେଲ ରଥେ
ଚରଣ ରେଣୁ ଲାଗି ଅହଲ୍ୟା ତରିଲି ପଥେ
ଆଜହେ ଜଗନ୍ନାଥ କାହିଁ ସେ ଗୋଡ଼ ହାତ
ମୋ ବେଳକୁ ମାଦଳ ବିଶ୍ୱବିହାରୀ ॥୪॥

**

**

# ନଲୋଡ଼େ କିଛି

## ପ୍ରେମାନନ୍ଦ କର

(ବିଂଶ ଶତାବ୍ଦୀ)

[ରାଗ-କାମୋଦ]

ତାଳ-ଝିପଟା

ନ ଲୋଡ଼େ କିଛି ମୁଁ ଆନ···ଚକାନୟନ
ଦେଖୁଥିବି ତୋର ରାସ ପୀତବାସ
ଗାଉଥିବି ତୋ ଭଜନ ||୦||

ଭିକ୍ଷା ମାଗୁଥିବି ଚରଣ ରେଣୁରେ
ଶ୍ରୀପଦରେ ଥିବ ଧ୍ୟାନ
ନିଦ୍ରା-ହାର ଗ୍ଲାନ ଥିଲେ ତୋ ପାଶରେ
କି କରିବ ଜନ୍ତୁରାଣ ||୧||

ରହିଥିବି ପ୍ରଭୁ ଦସ୍ତୁଣା ମାଳରେ
ଏତିକି ମାତର ମନ
ତୋ ଅଂଗରେ ଜଡ଼ି ପଡ଼ନ୍ତୁ ମୁଁ ଝଡ଼ି
ଧ୍ୟାୟି ପତିତପାବନ ||୨||

ହେ ଜଗା କାଳିଆ ତୋଦୁଆରେ ଠିଆ
ହୋଇଥିବି ନିଶିଦିନ
ଶ୍ରୀନେତ୍ର ପଙ୍କଜ ମଧୁପାନ କରି
ଯାଉ ମୋର ଏ ଜୀବନ ||୩||

**

**

# ଜଗତ ଶେଠ

ସୁଜାତା ମହାନ୍ତି

(ବିଂଶ ଶତାବ୍ଦୀ)

ନୀଳାଚଳେ କାଳିଆ
ହାଟ ଲଗାଏ ଭକତ ଜନେ    ହଟିଆ ଚକା ଡୋଳିଆ ।

ବଡ଼ ଦେଉଳେ ପଡ଼େ ଚହଳ
ଲାଗିଛି କେଡ଼େ ଦେଖ ଗହଳ
ବଡ଼ ପଣ୍ଡାଙ୍କ ବଡ଼ ମୁଣ୍ଡଟା    ହେଉଛି ଗୋଳମାଳିଆ ।

ମନରେ ନାହିଁ ଟିକେ ହରଷ
ଘରରେ ବସି ହୋଇ ବିରସ
…ବ ଖବ ସେ ପାଇଲେ ନାହିଁ    ଉତ୍ତର ଦେଲା ଭଲିଆ ।

ଯାହାର ଦାଣ୍ଡ ବଡ଼ ଦାଣ୍ଡଟା
ବଡ଼ ଭୋଗ ସେ ବଡ଼ ଭାଣ୍ଡଟା
ବଡ଼ ଦେଉଳ ବଡ଼ ଠାକୁର    ବଡ଼ ପଣ୍ଡା ଯେ ବଳିଆ ।

ଦୂରରୁ ଆସି ଜଗତ ଶେଠ
କରିଛି ବସା ଏମାର ମଠ
ଆଣିଛି ହାତେ ମଣୋହି ପାଇଁ    ଲକ୍ଷେ ଟଙ୍କାର ଥଳିଆ ।

କହୁଛି ବଡ଼ ପଣ୍ଡାଙ୍କୁ ଆଗ
ଲକ୍ଷେ ଟଙ୍କାର କରିବ ଭୋଗ
ଗୋଟିଏ ଦିନେ ହୋଇବ ଭୋଗ    ପୂରିବ ଏକ ବେଳିଆ ।

ପଣ୍ଡାଙ୍କ ବାଟ ନଗଲା ଦେଖା
ଭାବି ଭାବି ସେ ହୋଇଲେ ବୋକା
ଲକ୍ଷେ ଟଙ୍କାର ଭୋଗ ହୋଇବ        ଏ ଯୁଗେ କେଉଁ ଭଳିଆ ।

ଟଙ୍କାରେ କାହିଁ କେତେ ଚହଳ
ପନ ପଣସା ପାଚିଲା ଫଳ
ଦଶ ଟଙ୍କାରେ ପୂରେ ଦେଉଳେ        କି ହେବ ଟଙ୍କା ଅଳିଆ ।

ଶେଷକୁ ପଣ୍ଡା ଭାବିଲେ ମନେ
ଜଗନ୍ନାଥଙ୍କୁ କହିବ କାନେ
ବତାଇ ଦେବେ ମୋତେ ସେ        ବାଟ ସୁନ୍ଦର ବାଙ୍କ ଚୂଳିଆ ।

ବଡ଼ ଠାକୁର ଆଗରେ ରଡ଼ି
କରିଲେ ପଣ୍ଡା ଅଧିଆ ପଡ଼ି
କି ଭୋଗ କୁହ କରିବି ନାଥ        ଏବେ ମୋ ବୁଦ୍ଧି ଗୋଳିଆ ।

ବଡ଼ପଣକ ତଳେ ଘଡ଼ିବ
ଏ ଆଖି କୋଣୁ ଲୁହ ଗଡ଼ିବ
ଛୋଟର ଟେକ ତୁ ଏବେ ରଖ ଦେଖି ମୁଁ ହୁଏ ହାଲିଆ ।

ଏମାର ମଠେ ଜଗତ ଶେଠ
ଭାବିଲେ ବସି କି ଲାଗି ମଠ
କରିଲେ ପଣ୍ଡା, କହିଲେ ଡାକ ଥିଲେ ଯେ ଲୋକ ଢଳିଆ ।

ଯାଆରେ ଦେଖ ମାଧିଆ, ରାମ
ହରି, ଗୋପାଳ, ମଧିଆ ଦାମ
କି ଲାଗି ଡେରି ଭୋଗ ନ କର ରହିଲେ ପଣ୍ଡା ବଳିଆ ।

ଏତିକି ବେଳେ ପଣ୍ଡା ଆସିଲେ
ନରମେ ଶେଠ ପାଶେ ଭାଷିଲେ
ତୁମ ଗୁହାରି କରିଲ ଶେଠ ଶୁଣିଲେ ଜଗା କାଳିଆ ।

ଶେଠ କହିଲେ ମୋର ମିନତି
ଶୁଣିଲେ ସତେ ଜଗତ ପତି
ଡେରି ନ କରି କୁହ ପଣ୍ଡାଏ ସେ ମୋର ଜପା ମାଳିଆ ।

କହିଲେ ଜଗତର ଠାକୁର
ଜଗତ ଶେଠ ଭକତ ମୋର
ଲକ୍ଷେ ଟଙ୍କାର ଭୋଗ ପାଇଁ ସେ ଆଣିଛି ଟଙ୍କା ପୁଳିଆ ।

ଶେଠଙ୍କୁ କୁହ ମୋହର ମନ
ପହିଲୁ ଖଣ୍ଡେ ଦେବାକୁ ପାନ
ଗୋଟା ପାନରେ ହୋଇବ ଖିଲି ନ ହୋଇ କେଉଁ ଫାଳିଆ ।

ସବୁ ଦିନେ ତ ବଡ଼ିଆ ପାନ
ଖାଉଛୁ ଆଜି ବଳୁଛି ମନ
ଭାଇ ଭଉଣୀ ଖାଇବୁ ବସି ଲାଗିବ ଭାରି ବଢ଼ିଆ ।

ପାନରେ ଖାଲି ଗୁଆ ଓ ଚୂନ
ସେଥିକରେ ମୋ ପୂରିବ ମନ
ଅଦ୍ଭୁତ ଆଜି କରିଛି ତେଣୁ କି ହେବ ଭୋଗ ଥାଳିଆ ।

ସେ ଚୂନ ପାନେ ହୋଇବ ଲଗା
ଏ ଚୂନଠାରୁ ସେତ ଅଲଗା
ଗଜମୋତିର ହେବ ସେ ଚୂନ ନ ଥିବ ଟିକେ ମଇଳିଆ ।

କଥାଟି ଶୁଣି ଶେଠ ଚମକି
ପଣ୍ଡାଙ୍କୁ ଚାହିଁ ରହିଲେ ଥକି
ଇଏ କି କଲେ ନୂଆ ଆଦେଶ ମୋତେ ସେ ଘନ କାଳିଆ ।

ଭାବିଥିଲି ମୁଁ ଟଙ୍କାରେ ବଶ
କରି ଜିଣିବି ତାଙ୍କ ଆଶିଷ
ହିଏ ତ ତାତ ଜଗତ ନାଥ ଯା ଭୁଜ ବଳ ଶାଳିଆ ।

ତାଙ୍କ ମାଗଣ ଟିକିଏ ଚୂନ
ତାକୁ ନଅଣ୍ଟ ମୋ ପର୍ବଧନ
କି ହେବ ଧାନ ଗହମ ନଜ ନଅରେ ହେଲେ ଅଳିଆ ।

ମାରିଲେ ଆଣି କେତୋଟି ହାତୀ
ମିଳିବ ପୁଣି ଗୋଟିଏ ମୋତି
କେତେ ମୋତିକୁ ପୋଡ଼ିଲେ ଚୂନ ପୂରିବ ପାନ ଫାଳିଆ ।

ଲକ୍ଷେ ଟଙ୍କାର ଗୋଟିଏ ହାତୀ
କେତେ ଲକ୍ଷର ପୋଡ଼ିଲେ ମୋତି
ପାନରେ ଚୂନ ଲାଗିବ ଜାଣି ନପାରେ ତକା ଢୋଳିଆ ।

ହା'ର ମାନୁଛି ମୋ ବଡ଼ପଣ
ପଶୁଛି ତାଙ୍କ ପାଦେ ଶରଣ
ତାରଣ ମୋତେ କରିବେ ସେହି ହସ୍ତିଆ ବନ ମାଳିଆ ।

ପାଦରୁ କାଢ଼ି ପକାଇ ଜୋତା
ଚଟାଣ ପରେ ପିଟିଲେ ମଥା
ଡାକିଲେ ହରି ରଖ ମୁରାରି ତୁ ନାଥ ନୀଳାଚଳିଆ ।

ସାଗର ବିଚ ଯାହାର ପଦେ
ଜୁହାରେ ନଚ ପରମ ମୋଦେ
ଶେଠର ବଡପଣ ୮। ପାଶେ ରହିବ କେଉଁ ଭଲିଆ ।

ଜୟ ପତିତ ପାବନ ଜୟ
ଜୟ ନୀଳାଦ୍ରି ବିହାରୀ ଜୟ
ଜୟ ଭକତ ମନ ମୋହନ ଜୟ ହେ ଶିଖି ଚୂଳିଆ ।

**

**

# ତିମି ଓ ଝଡ଼

## ସୁଜାତା ମହାନ୍ତି

(ବିଂଶ ଶତାବ୍ଦୀ)

[ରାଗ ରାମକେରୀ]

ଝଲ ଦରିଆର ମଝିରେ ଦିନେ ଜାହାଜଟିଏ
ଆସିଲା ଫରାସୀ ଦେଶରୁ ଯିବ ବାରୁଣା ଯାଏ

କ୍ୟାପଟେନ୍ ବର୍ଟ୍ ସାହେବ ସେହି ଜାହାଜଟିରେ
ଦରିଆର ଶୋଭା ନିରେଖୁଥିଲେ ଆନନ୍ଦ ଭରେ

ବଙ୍ଗୋପ ସାଗର ଜଳକୁ ଦୁଇ ଭାଗରେ କାଟି
ଦକ୍ଷିଣକୁ ଭାସି ଚାଲିଛି ଭରା ଜାହାଜ ଗୋଟି

ଆଗକୁ ପଛକୁ ଅନାଇ ଦୂର ବୀକ୍ଷଣ ଧରି
କ୍ୟାପ୍ଟେନ ବର୍ଟ୍ ସାହେବ ସତେ ଉଠିଲେ ଥରି

ଚାହୁଁ ଚାହୁଁ ସ୍ଥିର ନୟନ କଂପି ଉଠିଲା ବକ୍ଷ ।
ଥରଥର ହାତେ ନିରେଖି ବାରେ କରିଲେ ଲକ୍ଷ୍ୟ

ତିମି ମାଛ ଏକ ବିରାଟ ଆସେ ଆଗକୁ ଧସି
ନିମିଷକେ ସତେ ଯିବ ସେ ଏହି ଜାହାଜ ଗ୍ରାସି

ଖାଲିତ ଏ ତିମି ନୁହେଁ ତା ପଛେ ଆସୁଛି ଝଡ
ସାଗର ବକ୍ଷରେ ପବନ ସୃଜେ ଜଳ ପାହାଡ

ଅଥୟ ଲହରୀ ନାଚୁଛି ପାଣି ଫୁତ୍କାର ଗୁଣ୍ଡ଼ି
ଅଳପ ସମୟ ଭିତରେ ସେତ ଆସିବ ମାଡ଼ି ।

କଳାମେଘ ଘୋଟି ଆସୁଛି ଦୂର ଆକାଶୁ ଛୁଟି
ଅଥଳ ସାଗରେ ସମାଧି ନେବ ଜାହାଜ ଗୋଟି ।

ଅତି ନିକଟରେ ଉମିଁଠା ଝଡ ତା'ର ନିକଟେ
ଜାହାଜ କପର ରହିବ ମହାଘୋର ସଂକଟେ

ଖେଳିଗଲା ଏଇ ବାରତା ଯାତ୍ରୀ ଜାହାଜ ଦେହେ
କାତର ଯାତ୍ରୀଙ୍କ ଅନ୍ତର ଆଖି ପୂରୁଛି ଲୁହେ

ହତାଶାରେ ଭାଙ୍ଗି ପଡ଼ୁଛି ବିଟ୍ ସାହେବ ମନ
ସତର୍କ ଘଣ୍ଟି ସେ ବଜାଇ ଡାକି କହିଲେ ଶୁଣ

ଜୀବନର ଶେଷ ସମୟ ହୋଇ ଆସିଲା ପର
ବିପଦ ଉପରେ ବିପଦ ଦେଖ ରହିଛି ଘେର

ଆସୁଅଛି ଉମି ସାଙ୍ଗକୁ ଏକ ବିରାଟ ଝଡ
ବଞ୍ଚିବାକୁ ସର୍ବେ ଉପାୟ ନଜେ ଦାହାର କର

ପାଗଳଙ୍କ ପରି ସାହେବ ଧାଇଁ ଗଲେ ଭିତରେ
ଘେରିଗଲେ ଲୋକ ଆକୁଳେ ତାଙ୍କ ଗୃର ପାଖରେ

ନାରୀମାନଙ୍କର ବିକଳ ଆଉ ନ ହୁଏ ସହ୍ୟ
ସାହେବଙ୍କ ଆଖି କୋଣରୁ ଲୁହ ଯାଉଛି ବହି

ବାତୁଳ ପରାଏ କଏ ସେ ଧାଇଁ ବୁଲୁଛି ଖାଲି
ଗୁହଁ ଗୁହଁ ସିନା ଉମିଁଠା ଦେବ ଜାହାଜ ଗିଳି ।

ବିଚଳିତ ମତି ନ ହୋଇ ଜଣେ ଯାତ୍ରୀ ଜାହାଜେ
ବସିଛି ନୀରବ ମନରେ ସତେ କାହାକୁ ଭଜେ ।

ହଠାତ ଦେଖିଲେ ସାହେବ ସେଠ ଲୋକଟି ଖେଳେ
ଗୁଣୁ ଗୁଣୁ ଗୀତ ଗାଉଛି କାହିଁ ନ ଚାହିଁ ଢଳେ ।

ଆଗରେ ଥୋଇଛି ଗୋଟିଏ ଫଟୋ ମୂରତ ତିନି
ବହିଯାଏ ଆଖି କୋଣରୁ ଲୁହ ବାଧା ନ ମାନି

ଚାଲି ଗଲେ ସେଠ୍ ସାହେବ ଛବି ଦେଖିବା ପାଇଁ
ଦେଖିଲେ ଆହୁରି ପାଖକୁ ସେତ ଆସୁଛି ଧାଇଁ

ଚକ୍ ଚକ୍ କରେ ଆଖି ତା ନିଆଁ ଗୋଲାର ପରି
ପାଣି ଫାଟି ଯାଏ ରକତ ମରଣକୁ ସୁମରି

ଆଖି ଆଗେ ନାଚି ଉଠିଲା ନିଜ ଶିଶୁର ମୁଖ
ଆଜିଠାରୁ ସରିଗଲାରେ ମୋର ସରବ ସୁଖ

ଫେରି ଆସିଲେ ସେ ଭିତରେ ଥରଥର ପାଦରେ
ଦେଖିଲେ ଲୋକଟି ତଥାପି ବସିଛି ନୀରବରେ

ତିନି ଫଟୋଟିକୁ କହୁଛି କଥା ନିଜ ଭାଷାରେ
ସାହେବ ଭାବିଲେ ଏ ଫଟୋ ନିଶ୍ଚେ ଶିଶୁ ତାହାରେ

ଦେଖିବେ ବୋଲି ସେ ଫଟକୁ ଥରେ ଝୁଙ୍କି ପଡ଼ିଲେ
ଦେଖୁ ଦେଖୁ ତିନି ଫଟକୁ ଠିକେ ଘୁଞ୍ଚି ଆସିଲେ

ତିନି ମୂରତ ସେ ଦେଖିଲେ ଲାଗି ଲାଗି ଅଛନ୍ତି
ଏକ କଳା ଏକ ଧୋବଲା ଏକ ହଳଦୀ କାନ୍ତି

କି ଭୀଷଣ ଏହି ମୂରତ ଯା'ର ଦେହ କାଳିଆ
ଦେହର ଉପର ଆଖିକୁ ଚାହିଁ ଲାଗେ ହାଳିଆ

ଛବି ଆଖିଠାରୁ ଏ ଆଖି ସତେ କି ଭୟଙ୍କର
ଝଡ ଛବିଠାରୁ ସେ ରୂପ ତାଙ୍କୁ ଲାଗିଲା ଡର

କି କରୁଛ ତୁମେ ଏଠି ହୋ ସାହେବ ଦେଲେ ଡାକ
ଲୋକ କହେ ଏହି ବିପଦୁଁ ରକ୍ଷା ପାଇଁ ମୋ ଡାକ

ଡାକୁଛି ମୁଁ ଜଗନ୍ନାଥଙ୍କୁ ଯେହ୍ନେ ରକ୍ଷା କରିବେ
ଏ ମଝି ସାଗରେ ଆମକୁ ସେତ ସହାୟ ହେବେ

ସାହେବ କହିଲେ କିଏ ସେ କେଉଁଠି ତାଙ୍କ ବାସ ?
ଗୁଳା ଓ ବାରୁଦ ଧରିକ ଭୂମି କରିବେ ନାଶ ?

ପରବଳ ଘଣ ଝଡ଼ର ଜାହାଜ ଦେବେ ରଖି
ହସି କହେ ଲୋକ ଏକା ସେ ଏହି ଜାହାଜେ ସାକ୍ଷୀ

ଶରଣ ହୋଇ ମୁଁ ଜଣାଉଅଛି ତାଙ୍କ ପାଦରେ
ଶୁଣିଲେ ନିଶ୍ଚୟ ଉଦ୍ଧରି ଯିବୁ ବିପଦ୍ ବାରେ

ବିଷ୍ଫାରିତ ହେଲା ନୟନ ସାହେବ ହେଲେ କାବା
କହିଲେ ଯଦିଏ ବିପଦ୍ ଆମେ ଉଦ୍ଧରି ଯିବା

ଆଗ କୋଠରୀରେ ଯେତେକ ନିଜ ରହିଛି ଭରି
ଦେଇଦେବି ଜଗନ୍ନାଥଙ୍କୁ ଏହା ସତ ମୋହରି

ଫଟ ନିକଟରେ ସରବେ ମିଳି ଉଚ୍ଚେ ଡାକିଲେ
ଜଗନ୍ନାଥ ଚରଣତଳେ ଶରଣ ପଶିଗଲେ

ସାହେବ ଧାଇଁଲେ ଉପରେ ଭୂମି ଦେଖିବା ପାଇଁ
ଦେଖିଲେ ଭୂମିର ଗଢଣା ଯାଉଛି ଥିର ହୋଇ

ଧୀରେ ଧୀରେ ମୁହଁ ବୁଲାଇ ଭୂମି ଗଳି ଯାଉଛି
ସାହେବଙ୍କ ମନ ଏଥର ଟିକେ ଖୁସି ହେଉଛି

ତଥାପି ଦେଖିଲେ ଝଡ଼ର ଗଢ ବଢ଼ି ଚାଲିଛି
ପବନ ବେଗରେ ଜାହାଜ ଦୋହଲି ଯାଉଅଛି ।

ଆଖି ଆଗେ ନାଚ ଉଠିଲା ସେହି ଚନ୍ଦ୍ରପଟ୍ଟି
ରକ୍ଷ ଜଗନ୍ନାଥ ବୋଲି ସେ ଉଚ୍ଚ କରିଲେ ପାଟି

ଏତିକି ବେଳରେ ଶୂନ୍ୟରୁ ଏକ ଶବଦ ହେଲା
ମନେ କଲେ ସତେ ଆକାଶ ଏଠି ଛିଡ଼ି ପଡ଼ିଲା

ଦେଖିଲେ ସେ ଉର୍ମି ପର୍ବତ ଝଡ଼ଯାଏ ଦୂରେଇ
ଲହରୀକୁ କାଟି ଜାହାଜ ଜୋରପଦେ ଚାଲଇ

ଧାଇଁ ଆସି ବଟ୍ ସାହେବ ସେହି ଯାତ୍ରୀ ପାଖକୁ
କହିଲେ କେ ତୁମେ ମହାତ୍ମା ରକ୍ଷାକଲ ଆମ୍ଭଙ୍କୁ

ଚାଲିଯିବା ପରେ ଦେଖିବା ସେହି କଳାଠାକୁର
ଜାହାଜର ଗତି ବୁଲିଥ ବେଳ ହୁଏ ଉତ୍ତର

ଧୀରେ ଧୀରେ ଯାଇଁ ଜାହାଜ ଲାଗେ ପୁରୀ ଘାଟରେ
କୋଠରୀ ଜନନା ସହିତ ସେତ ଗଲେ ମନ୍ଦିରେ

ଜଗନ୍ନାଥ ପାଦ ତଳରେ ଥୋଇ ଜନନା ମାନ
ବଟ୍ ସାହେବଙ୍କ ସହିତ ସର୍ବେ ଆନନ୍ଦ ମନ

ତାହାର ଦେହର ବର୍ଟ ଘଣ୍ଟା ଏବେବି ଅଛି
ଗନ୍ତାଘରେ ରହି ପ୍ରଭୁଙ୍କ ଗୁଣ ସଦା ଗାଉଛି

**

**

# ହୃଦୟ ତୀର୍ଥ

## ରାମକୃଷ୍ଣ ପାଢ଼ୀ

(ବିଂଶ ଶତାବ୍ଦୀ)

ହରିହର ପୁର ଗ୍ରାମେ
ଅଶୀ ବରଷର କାଳୀ ବୁଢ଼ୀଟିଏ
ଥିଲା " ରାଧୀନାମୀ ନାମେ ।
ଅତୀତର କେଉଁ ଆଷାଢ଼ ରାତ୍ରେ
ବୃନ୍ଦାଆଧା ଜଣେ କୁଳୀନ ପାତ୍ରେ

ନଅ ବରଷର "ରୋହିଣୀ ଯେବେ ସେ
ହୋଇଥିଲା ବଧୂ ତାର
ଛଅ ମାସ ପରେ ଛାଡ଼ି ପତି ତାକୁ
ଗଲେ ସ୍ୱର୍ଗ ଭବ ପାର ।
ବରଷ ସତର ଯାଏ
ବଧୂ ନଣନ୍ଦର କଳହ ବିବାଦେ
କାଳ ଗଲା ପଳ ପ୍ରାୟେ

ସେହି ଧନଠାରୁ ଆଉ ଜନକୁଳେ ତାର
କହିବାକୁ କେହି ନାହିଁ ଆପଣାର ।
ଗ୍ରାମର ମଝିରେ ଆପଣା କୁଡ଼ିଆରେ ପଡ଼ିଥାଏ ବୁଢ଼ୀ ଏକା
କଦାପି ତାହାର ଘରଛଡ଼ା କେହି
ନ ଲଭଇ କାହିଁ ଦେଖା ।

ପ୍ରଭଞ୍ଜନ ଖରବେଳେ
ଘରେ ତାର ହୁଏ ମହା କଳରବ
ବାଳକ ବାଳିକା ମେଳେ
ଝୁଲା, ଝୁଲୁ, ଶମ, ଭବାନୀ ପାଲୁଣୀ
ବାନା, ହାଡ଼ିଆଣୀ, ଚେମି ଓ କାଳୁଣୀ

ଗପ ଶୁଣିବାକୁ କେତେ ଶିଶୁ ଆସି
ତୋଷାମଦ କରେ ଆଜି
ଜଡ଼ ଏହୁପରି ଅଟଳ ଜନ୍ମେ
ଉଠେ କୋଳାହଳ ବାଜି ।
ଅଗଣା ପାଖରେ ବାଡ଼
ପୋଇ ଲତା ତା'ର ଆବରିଛି ଦେହ
ଶିଜୁଗଛ ତା'ର ହାଡ ।

ତାହାର ପାଖରେ କୋଳିଗଛ ଡାଳେ
କାକୁଡ଼ି କଖାରୁ ଝୁଲେ ମଳେ ମାଳେ
ଅରଅର ଝୁଲି ମୂଳେ ପାଣି ଢାଳି
ଜଡ଼ ହୁଏ ବୁଢ଼ୀ ଥକା
ସବୁଜ ଓଢ଼ଣି ସତେକ ତାହାର

ଜୀବନର ପ୍ରିୟ ସଖା ।
କେବେହେଁ ଭ୍ରମରେ ଛଳେ ଘର ଛାଡ଼ି
ଭ୍ରମେ ନାହିଁ କାହିଁ ବାରେ
ଆଠୋଟି ପ୍ରହର ଜଗିଥାଏ ବୁଢ଼ୀ
କବାଟ ପକାଇ ଦ୍ୱାରେ
କାଲେ କେତେବେଳେ ପଥ ଖୋଲିପାଇ
ପଶିବ ବାଡ଼ିରେ ବୁଲା ଗୋରୁ ଗାଈ

ଅଥବା ବାଳକେ ଲୁଚିଲୁଚି ଆସି
କାକୁଡ଼ି ଚୋରାଇ ନେବେ
ଏହି ଭାବନାରେ ଦବ, ଜଗି ତାର
ନ ହୁଅଇ ନିଦ କେବେ

\+ +

ଆଷାଢ଼ ମାସର ରଥେ
ଗ୍ରାମରୁ ଅନେକ ବାହାରିଲେ ଲୋକ
ପୁରୀକୁ ଯିବାର ପଥେ

ପାଣ୍ଡ ପାଣିଘର ବଡ଼ବହୂ ଉମାଶଣୀ
ସୁଧୀନାନୀ ପାଶେ ଆସି କହେ ହସିହସି
"ଆମର ତ ସବୁ ଠିକ୍‌ଠାକ୍ ନାନୀ
କହ ତୁମ ଯିବା କଥା
ସୁଧୀନାନୀ କହେ "ଘର ଛାଡ଼ି ଯିବି"
କେଉଁପରି ହୋଇବ ତା ? ॥

ଉମାଶଣୀ କହେ ନାନୀ
ଆଜୀବନ ଖାଲି ଖଟି ଖଟି କଲ
ମହାପାପ ଆମଦାନୀ
ନ ଜାଣିଲ କିଛି ତୀର୍ଥ ଧର୍ମ
ପ୍ରଭୁର ମହିମା ପୁଣ୍ୟ କର୍ମ

ନୀଳାଚଳ ନାଥ ଚରଣ ସେବାରୁ
ଘର ହେଲ ବଡ ଆଜି
କେତେ ମନେ ଭାବି ଅବଶେଷେ ବୁଢ଼ୀ
ହେଲ ତା' ପାଖରେ ରାଜି ।

ଗୋଧୂଳିରେ ରେଳ ଧରି
ପୁରୀରେ ସେଦିନ ମିଳିବାକୁ ଲୋକେ
ବାହାରିଲେ ଭିଡ଼ି କରି
କମାର, ବାଉରୀ, ପାଣ, ଦ୍ବିଜ ତେଲି
ଦେଢ଼ କୋଡ଼ି ନାରୀ ହେଲେ ଠେଲାଠେଲି

ଦୁ'କୋଡ଼ି ନଅଟି ବିବିଧ ପ୍ରକାର
ବୋକସ୍ତୁ ହୋଇଲା ସଜ
ସାଥୀ ହେଲେ ମୋଟେ ଯୋଡ଼ିଏ ପୁରୁଷ
"ବଳୀ ସାହୁ" ଆଉ "ଭଜ" ।

\+ +

ଯଥାକାଳେ ଯେବେ ବିଶାଳ ରଥରେ
ବସିଲେ ଜଗତନାଥ
ପୂତ ହେଲା ମାଟି ଘେନ କୋଟି କୋଟି

ମାନବର ପ୍ରଣିପାତ
ପୁଲକେ ରଥକୁ ଅନାଇ ଅନାଇ
ଉଠିଲେ ସକଳେ ବିଭୁ ଗୁଣ ଗାଇ
"ଜୟଜୟ" ନାଦେ ପୂରିଲା ଗଗନ
ପବନ ଘୋଷିଲା ଖ୍ୟାତି
ଉଚ୍ଛୁଳାଇ ଦବା ଗୀତ ।
"ସ୍ୱାଧୀନାଜ୍ଞା" ଦେଖେ ସ୍ୱହିଁ-

ପୋଇ କାକୁଡ଼ି ଓ କୋଳଗଛ ଡାଳ
ରଥରେ ବେଢ଼ିଛି ଯାଇଁ
ତାହାର ପାଖରେ ଘରଟି ତାହାର
ଯୋଡ଼ା କୋଳପରେ ବସିଛେ ଦୁଆର

ଭାବେ,-ଏ କି କଥା ! ଏହି କି ଦେବତା
ଏହି କି ସେ ଭଗବାନ !
ତା' ହେଲେତ ପ୍ରଭୁ ! ଅଛ ତୁମେ ମୋର
କୁଟୀରେ ବିରାଜମାନ ।

+ +

ସକଳେ ଆସିଲେ ଚାଲି
ସ୍ୱାଧୀନାମ୍ନା ଆସି ଦେଖଇ ତା'ନିଜ
ଅଗଣା ବାଡ଼କୁ ଖାଲି

ଅତିପ୍ରିୟ ତା'ର ଫସଲର ଭୂଇଁ
ଚପଳ ନୟନ ବୁଲେ ଛୁଇଁ ଛୁଇଁ
କୁହେ "ଦୟାମୟ"-ଏହିତ ତୁମର
ଆସନ ଏଠାରେ ଅଛି
ଦକ୍ଷିଣାଦିଶି ଦେଖେ ଖୋଜଇ କିପାଁ ମୁଁ
ଅନୁମାନେ ରୂପ ରଚି...
ନତ ହେଲା ତା'ର ମଥା-
ଧୀର ପବନରେ ନମିଲେ ସକଳେ
କୋଳି ଡାଳ ପୋଇ ଲତା ।

+ +

ହାୟରେ ଅବୋଧ ଜୀବ
ଗୋଟା ଜଗତର ପଥେ ଘାଟେ ବୁଲି
ବୃଥା ସିନା ଖୋଜି ଶିବ ?
ନାହିଁ ସେ ଧୂପେ ଓ ଝୁଣାର ଗନ୍ଧେ
ବେଦେ ଓ କୋରାଣେ ବାଣୀର ଛନ୍ଦେ
ବୁଦ୍ଧ-ଯୀଶୁର ସ୍ୱଧା ଓ ଦ୍ୱନ୍ଦ୍ୱେ
ନାହିଁ କାହିଁ ଜଳେ ସ୍ଥଳେ
ସେ ଯେ ମାନବର ହୃଦୟ ଦେବତା
ରହିଛି ପ୍ରାଣର ତଳେ !

**

**

# ଚକାଡୋଳା ତୁମେ

## ନରସିଂହ ମହାପାତ୍ର

(ବିଂଶ ଶତାବ୍ଦୀ)

ଚକାଡୋଳା ତୁମେ ହେଇଚ କଳକା
                    ଦୁଃଖୀ ଜନ ଦୁଃଖ ଶୁଣି
କହି ପାରବନି, ଶୁଣି ପାରବନି
                    ପଥର ହେଇଛ ଜାଣି

ଜାଣେ ବଡ ଭାଇ ଭଉଣୀଙ୍କ ସାଥେ
                    ରଖି ବୋଲାଉଛ ବଡ ଏ ଜଗତେ
ଦୂର ହେଲେବି ମୁଁ ଛାଡିବି ନାହିଁତ
                    ତୁମ ଗୁଣ ନେବି ଗୁଣି ॥୧॥

ଠକଛ, ଠକୁଛ, ଠକିବ ମୁଁ ଜାଣେ
                    ଅଲକ୍ଷ୍ୟ ସେ ତୁମ ହସିବାର ଗୁଣେ
ଅଙ୍ଗେ ନଖଇଲ କଥା ଭୁଲ ନାହିଁ
                    ଆସନ୍ତୁ ଆଣିବ ଟାଣି ॥୨॥

ତୁମ ବଡପଣ ତୁମଠେଇଁ ଥାଉ
                    ସେଥିକୁ ଡର ମୋ ଢଳେ ନାହିଁ ଆଉ
ଯେତେ ବଡ ହୁଅ ଆପଣା ମନକୁ
                    ତୁମେ ଯେ ଅସଲ ଖୁଣୀ ॥୩॥

**

**

# ଏତେ ବଡ଼ ବଡ଼ ଆଖି

## ନରସିଂହ ମହାପାତ୍ର

(ବିଂଶ ଶତାବ୍ଦୀ)

ଏତେ ବଡ଼ ବଡ଼ ଆଖି ଭରିକ
ଚାହିଁଚ କାହାକୁ କୃଷ୍ଣ
ଶ୍ରୀକ୍ଷେତ୍ରେ କାଳିଆ
ମଝିରେ ସୁଭଦ୍ରାଛନ୍ତି କାହିଁକି
କାହିଁକି ରଖିଚ ତୁମ ବଡ଼ଭାଇ ବଳିଆ ॥ ଘୋଷା ॥

ଏତେ ପୂଜା ପରବରେ ଥାଅ ତୁମେ ଠାକୁର
କେତେ ଜନ ଠାରୁ କୃଷ୍ଣ ନିତ୍ୟ ପାଅ ଜୁହାର
ଶତେକ ଗୁହାରି ଶୁଣି ତୁମେକି
ଜଣଙ୍କ କାହାର ଦୁଃଖ ହର ଚନ୍ଦ୍ର ଚଳିଆ ॥୧॥

କଥାତ ନାହିଁ ମୁହଁରେ ଚାହିଁ ସତେ କଳକା
ଅଲଗା ହସଟି ଅଛୁ ନାହିଁ ଆଉ ବଳକା
ଶବଦ ନାହିଁତ କଣ୍ଠୁ ତୁମର
ନିରମଳ ମନ କିଆଁ କର ମିଛେ ଗୋଳିଆ ॥୨॥

**

**

# ଏତେ ବାଟ ଚାଲି ଚାଲି

**ନରସିଂହ ମହାପାତ୍ର**

(ବିଂଶ ଶତାବ୍ଦୀ)

ଏତେ ବାଟ ଚାଲି ଚାଲି
ତୁମକୁ ଦେଖିବି ବୋଲି
ଆସିଛି ଏ ଶ୍ରୀକ୍ଷେତ୍ର ଦେଶକୁ
କୁହାର ଗୁହାର କରି
ମନେ ମୁଁ ଭରସା ଭରି
ଦେଖିବି ମୁଁ ତୁମ ଏଇ ବେଶକୁ ।।ଘୋଷା।।

ଚକାଡୋଳା ଜଗନ୍ନାଥ ପଲକ ନ ପକାଇ
ଭାଇ ଭଉଣୀଙ୍କ ସାଥେ ହସୁଥାଅ ଅନାଇ
ସଭିଁ ଏ ମୋ ଭଳି ଆସି
କହୁଥିବେ ଦୁଃଖ ରାଶି
ଭୁଲୁଥିବେ ଦେଖି ତୁମ ହସକୁ ।।୧।।

ମୁହଁ ଖୋଲି ନ କହିଲେ ଧରିଥିବି ଚରଣ
ଶରଣ ନ ଦେଲେ ତୁମେ ଦିଅ ପଛେ ମରଣ
ସବୁ ଆଶା ଛାଡ଼ିପରା ଧରିଛି ତୁମ ଆସରା
ଯାହା ହେବ ହେଉ ଥାଉ ଶେଷକୁ ।।୨।।

**

**

# ଶଙ୍ଖ କ୍ଷେତ୍ର ବାସୀ

**କବି ଶେଖର ଚିନ୍ତାମଣି ମହାନ୍ତି**

(ବିଂଶ ଶତାବ୍ଦୀ)

[ରାଗ-ଶଙ୍କରା ଭରଣ]

ଶଙ୍ଖ କ୍ଷେତ୍ରବାସୀ ପ୍ରଭୁ ଶଙ୍ଖ ଚକ୍ରଧାରୀ
କାନ ଡେରି ଶୁଣୁଅଛ ଜଗତ ଗୁହାରି
ବନ୍ଦି ଜଗନ୍ନାଥ ନାମ
ଆକର୍ଷୁଛ ଜଗତର ଭକ୍ତ ଅନୁଯାମ ।।୧।।

ମହାମନ୍ତ୍ର ମହୋଦଧି ଜପି ରୁଦ୍ର ନାଦେ
ଭକ୍ତିରେ ଦେଉଛି ଧୋଇ ତବ ପୂଣ୍ୟ ପାଦେ
ଯୋଡ଼ି ବନ୍ଧୁ ବୀଚି-ହାତ
ଉଚାରୁଛି ଜୟ ଜୟ ଜୟ ଜଗନ୍ନାଥ ।।୨।।

ଚକା ବଇଠିରେ ବସେ ପ୍ରଭୁ ଚକାଡୋଳା
କି ଶୀତଳ ଦୃଷ୍ଟି ତବ ସ୍ନେହ ମଧୁବୋଳା
କେଡେ ଗୁରୁ କୃଷ୍ଣ କାନ୍ତି
ଢାଳୁଛି ଜଗତ ପ୍ରାଣେ ପ୍ରେମ ଶୁଭ ଶାନ୍ତି ।।୩।।

ସେ ଶାନ୍ତି କଣିକା ଲାଗି ଆଜ ମୁଁ ଭିକାରୀ
ବିଶ୍ୱ କୋଳାହଳେ ପ୍ରାଣ ଗଲାଣି ମୋ ଘାରି
ବଡ଼ ଦୁଷ୍ଟ ଏ ସଂସାର
ସଂସାର ନୁହେଁ ଏ ନଷ୍ଟେ ଅସାରୁ ଅସାର ।।୪।।

ବୁଝିଲିଣି ନିଜ ଭ୍ରମ ଚହ୍ଲିଲିଣି ଭବେ
ମରୁସ୍ଥଳ ମହୋତ୍ସବ ଭୀଷଣ ଆହବେ
ଅହୋ କି ଅଦ୍ଭୁତ ସ୍ଥଳ
କରକା ଭିତରେ ଥିଲା ପ୍ରଚଣ୍ଡ ଅନଳ ।।୫।।

ଏଣିକି ତୃଷ୍ଣାଆ ବଢ଼ି ଲାଗୁଛି ନିରତେ
ଢନକ ଯୁବକ ସବ ହେଉଅଛି ପ୍ରତେ
ପ୍ରାଣ ହେଉଛି ଉଚ୍ଚାଟ
ବାହାର ଯିବାକୁ ମାର୍ଗ ପାଉନାହିଁ ବାଟ ।।୬।।

ମୁଁ ସିନା କୁପୁତ୍ର କିନ୍ତୁ ତୁମ୍ଭେ ତ ସୁପିତା
କିମ୍ପାଇଁ ନଶୁଣ ନାହିଁ ହୃଦୁ ତୀବ୍ର ଚତା
ପିତୃ ପଦ ତାଙ୍କୁ ମାନେ
ଅଧିକ ଦୟା ଯେ କରେ ଅକ୍ଷମ ସନ୍ତାନେ ।।୭।।

ତୁମ୍ଭେ ତ ଜଗତ ପିତା ଏହା ଥିବ ଜାଣି
ପିତୃ ପଣେ ତୁମ୍ଭଙ୍କୁ କେ ସର ଚନ୍ଦ ପାଣି
ଶୁଣି ମୋ ଆତୁର ବାଣୀ
ଦୋଷଥିଲେ କ୍ଷମାକର କ୍ଷମାପାତ୍ର ଜାଣି ।।୮।।

ଧରୁଅଛୁ ତୁମ୍ଭଙ୍କୁ ମୁଁ ଯେତେକ ଆକଟି
ତେତେକ ଦୂରକୁ ତୁମ୍ଭେ ଦେଉଅଛ ତ୍ରୁଟି
ଅରେ ବନ୍ଧୁର ଅନ୍ତରେ ।
ହେଲ କି ସୁନ୍ଦର ଏହା ସୁପିତା ପକ୍ଷରେ ।।୯।।

ଯେତେଅର ତତ୍ତଦେବ ବିରକ୍ତ ପ୍ରକାଶି
ତେତେଅର ଆଦରିବ ସେ ପଛରେ ଆସି
ବେଣି କହିବ ବା କିସ ।
ସେ ବିରକ୍ତ ମୋ ସ୍ୱର୍ଗୀୟ ମଙ୍ଗଳ ଆଶିଷ ।।୧୦।।

**

**

# ଜଗନ୍ନାଥ ଜଗବଂଧୁ ହେ

## କବି ଶେଖର ଚନ୍ଦ୍ରାମଣି ମହାନ୍ତ

(ବିଂଶ ଶତାବ୍ଦୀ)

[ରାଗ-ରାମକେରୀ]

ଜଗନ୍ନାଥ ଜଗବଂଧୁ ହେ ଦାରୁ ବ୍ରହ୍ମ ପ୍ରତିମା
ବିଖ୍ୟାତ ଜଗତେ ତୁମ୍ଭର ମହାଦାନ ମହିମା

ଯେ ଯାହା ମାଗୁଛି କରୁଛ ତାର ବାଞ୍ଛା ପୂରଣ
ମୋ ଭାଗ୍ୟକୁ ଏକା କପାଇଁ ହେଲ ଏଡ଼େ କୃପଣ

ମାଗୁନ ନାହିଁ ମୁଁ ତୁମ୍ଭଙ୍କୁ ଧନଜନ ଗୌରବ
ମାଗୁନାହିଁ ଆୟୁ ପ୍ରାଧାନ୍ୟ କମ୍ବା ସ୍ୱାସ୍ଥ୍ୟ ବିଭବ

ମାଗୁଅଛି ଖାଲି ଏତିକ ମୋର ଚର୍ମ ନୟନ
ସବୁସ୍ଥାନେ ସଦା ତୁମର ରୂପକରୁ ଦର୍ଶନ

କର୍ଣ୍ଣ ଶୁଣୁ ତୁମ୍ଭ ମହିମା ଘୋଷି ପୁଣ୍ୟ ପୁରାଣ
ନାସା କରୁ ବାସୀ ତୁଳସୀ ଛଡ଼ାଫୁଲ ଆଘ୍ରାଣ

ତବ ପୁଣ୍ୟପାଦ ସେବାରେ ଲାଗୁ ଏ ବେନିହସ୍ତ
ଉଚ୍ଚାରୁ ରସନା ହରି ହେ ତୁମ୍ଭ ନାମ ସତତ

କସ ଜଣାଇବି ତୁମ୍ଭରେ ତୀବ୍ର ମର୍ମ ବେଦନା
କାହମାଡ଼େ ତାହା ସ୍ମରଣେ ଫାଟିଯାଏ ମୂର୍ଚ୍ଛନା

କାନ୍ଦିଲେ ହାଲୁକା ହୁଅନ୍ତା ଦୁଃଖ ଦୁର୍ବହ ପ୍ରାଣ
ମାତ୍ର ପାଉନାହିଁ କାନ୍ଦିବ ଯୋଗ୍ୟ ନିର୍ଜନ ସ୍ଥାନ ।

ଅକିଞ୍ଚନେ କୃପା ପ୍ରଦାନେ ନୁହ ବିମୁଖ ହରି
ସିନ୍ଧୁ ଏତ ଅଛୁ ବିନ୍ଦୁ ଏ ଦେଲେ ଯିବନି ସରି ।

ପର ନୁହେଁ ପ୍ରଭୁ ମୁଁ ପରା ତୁମ୍ଭ କିଣା କିଂକର
ଭୟଙ୍କର ଭବକାରାରୁ ଦେବ ଖରେ ଉଦ୍ଧାର

ଉଡ଼ିଯାଉ ବନ୍ଧ ବିହଙ୍ଗ ଖେଳୁ ଆକାଶେ ବୁଲି
ଛଣ୍ଡାଇ ଦିଅ ତା ପୟରୁ ଦୃଢ଼ ବଜ୍ର ଶିକୁଳି ।

ସ୍ୱାଧୀନତା ତାର ବାଞ୍ଛିତ ସେ ଯେ ଚିର ସ୍ୱାଧୀନ
ଦୁଷ୍ଟା ମାୟା ସନ୍ନିବାସରେ ସିନା ହୋଇଛି ହୀନ ।।

**

**

## ଜପମନ ଜଗନ୍ନାଥ

### କବି ଶେଖର ଚନ୍ଦ୍ରମଣି ମହାନ୍ତି

(ବିଂଶ ଶତାବ୍ଦୀ)

ଜପମନ ଜଗନ୍ନାଥ ଚତୁରକ୍ଷର
ସେହି ଏକା ଜଗତର ମୁକ୍ତି ମନ୍ତ୍ର ।।ପଦ।।

ସେହି ଜଳ ସେହି ସ୍ଥଳ ସେହି ବୃକ୍ଷ ସେହି ଫଳ
ସେହି ଶକ୍ତି ସେହି ବଳ ଏ ଜଗତର ।।୧।।

ସେହି ସତ୍ୟ ସେହି ଶୁଭ ସେହି ନିତ୍ୟ ସେହି ଧ୍ରୁବ
ପୁଣି ପ୍ରାଣ ପିଣ୍ଡ ଉଭୟ ସେ ନିଖିଳେଶ୍ୱର ।।୨।।

ଯେତେକ ଦେଖା ଅଦେଖା ସବୁ ସିନା ଏକା ସେହି
ତାଙ୍କ ବିନା ନାହିଁ କେହି ଭବେ ଅପର ॥୩॥

ଏ ସଂସାର ପର ଘର ସମସ୍ତେ ଏଠାରେ ପର
କିଏ ବି ନୋହୁ କାହାର ଜାଣ ନିକର ॥୪॥

ଡାକ ତୁ ହୋଇ ଆତୁର ହେ ପ୍ରଭୁ ବଡ଼ ଠାକୁର
ଭବ ଭୟ କର ଦୂର ତାର ସତ୍ୱର ॥୫॥

**

**

## ଜଗନ୍ନାଥ ଜଗୁ ଜୀବନ

### କବି ଶେଖର ଚିନ୍ତାମଣି ମହାନ୍ତି

(ବିଂଶ ଶତାବ୍ଦୀ)

[ରାଗ-ରସକୁଲ୍ୟା]

ପ୍ରଭୁ ଜଗନ୍ନାଥ ଜଗୁ ଜୀବନ
ଭକ୍ତ ହୃଦ-ସର-ପଦ୍ମ ତପନ,
ନୀଳ ସିନ୍ଧୁଧର ମର୍କତ ମଣି
ଅପାର ସଂସାର ସିନ୍ଧୁ ତରଣୀ
ଭକ୍ତର ଚିର ଅଧୀନ ଯେ
ଭୃତ୍ୟର ମହିମା ପ୍ରଶ୍ଵରୁଛ ବକ୍ଷେ
ବହୁଣ ଚରଣ ଚିହ୍ନ ଯେ ॥୧॥

ସକଳ ମାନବ ତୁମ୍ଭ ସନ୍ତାନ
ପିତୃନେତ୍ରେ ତବ ସର୍ବ ସମାନ,
ପ୍ରଶ୍ଵରୁତ ଏହି ନୀତି ଉଦାର
କ୍ଷେତ୍ରରେ ନରଖି ଜାତି ବିଚାର

ଏକାନ୍ତେ ଶୂଦ୍ର ବ୍ରାହ୍ମଣ ଯେ
ନିର୍ବିକାର ଚିତ୍ତେ ଶ୍ରୀ ମହାପ୍ରସାଦ
କରନ୍ତି ସୁଖେ ଭୋଜନ ଯେ ॥୨॥

ଉତ୍କଳ ଅବନୀ କି ତପକରି
କୃତାର୍ଥ ତୁମ୍ଭଙ୍କୁ ବକ୍ଷରେ ଧରି
ଛଡ଼ାଇ ଆଣିଛି ସ୍ୱର୍ଗ ସଂପଦ
ଲଭିଛି ମର୍ତ୍ତ୍ୟରେ ବୈକୁଣ୍ଠ ପଦ
ଧନ୍ୟତା ପୁଣ୍ୟ ମହିମା ଯେ
ଜଗନ୍ନାଥଙ୍କୁ କରି ରଖିଛି ଯାଁ
ପ୍ରୀତିର ପୂଜାପ୍ରତିମା ଯେ ॥୩॥

ବେଳା ବାଲିଶେଯେ କରିଛି ବକେ
ଝଟିଛି ପଯ୍ସୂରେ ବାରିଧି ନିକେ
ନିତି ସନ୍ଧ୍ୟା ପ୍ରାନ୍ତେ ନିଦ୍ରବ ବାସୀ
ସ୍ୱର୍ଗଦ୍ୱାର ପଥେ ଓହ୍ଲାଇ ଆସି
ଦେଖନ୍ତି ପୁଣ୍ୟ ଆଳତି ଯେ
ପାଦୋଦକ ସେବି ଶ୍ରୀମୁଖ ନିରେଖି
ଲଭନ୍ତି ମହା ତୃପତି ଯେ ॥୪॥

ଖେଳେ ଭକ୍ତ ତୁଣ୍ଡେ ପ୍ରାର୍ଥନା ବାକ୍ୟ
ଦୁଃଖୀ କଣ୍ଠୁ ଉଠେ ମଣିମା ଡାକ
ଉଚ୍ଛୁଳି ପଡ଼ଇ ବାଦନ ସ୍ୱନ
ସାଧକେ କରନ୍ତି ସ୍ତବ କୀର୍ତ୍ତନ ।
ସେ ସ୍ୱରେ ମିଶାଇ ସ୍ୱର ଯେ
ଦୀନ ଚିନ୍ତାମଣି ଦୂରେଥାଇ ଡାକେ
ହେ ପ୍ରଭୁ ଉଦ୍ଧାର କର ଯେ
✱✱୍

ଶ।୨

**

# ଜଗବନ୍ଧୁ ଜଗନ୍ନାଥ

## କବି ଶେଖର ଚନ୍ଦ୍ରାମଣି ମହାନ୍ତି

(ବିଂଶ ଶତାବ୍ଦୀ)

[ରାଗ-ଚୋଖୀ]

ଜଗବନ୍ଧୁ ଜଗନ୍ନାଥ     ଜଣାଉଛି ଯୋଡ଼ିହାତ
ଭବ-କାରାଗାରୁ ମୁକ୍ତ କର ଏ ଦାସେ
ବହୁ ଦିନୁ ପଡ଼ି ପଡ଼ି     ଗଲାଣି ଶରୀର ଝଡ଼ି
ହେଉଅଛି ଆୟୁକ୍ଷୟ ପ୍ରତି ନିଶ୍ୱାସେ
ଦୁଷ୍ଟ ଜରା ସାଧୁଛି ଦାଉ
ତୁମ୍ଭେ ନ ତାରିଲେ କିଏ ତାରିବ ଆଉ ॥୧॥

ଛନ୍ଦିଅଛି ଯେଉଁ ବେଡ଼ି     କିଏ ତା' ପାରିବ ଫେଡ଼ି
ଶ୍ରୀ ହସ୍ତରେ ତୁମ୍ଭେ ତାହା ନ ଦେଲେ ଭାଙ୍ଗି
ତୁମ୍ଭେ ପ୍ରଭୁ କୃପାମୟ     ହରୁଛ ଆତୁର ଭୟ
ଡାକେ ମୁଁ ତୁମ୍ଭଙ୍କୁ ସାରା ଜାମିନୀ ଜାଗି
ଶୁଣ ପ୍ରଭୁ ରଙ୍କ ଗୁହାରି
କର ଏ କିଙ୍କରେ ଭବ ସାଗରୁ ପାରି ॥୨॥

କେଉଁ କାଳୁ ତୁମ୍ଭ ପାଶୁ     ଆସି ଏବେ ଏ ପ୍ରବାସୁଁ
ବାହୁଡ଼ି ଯିବାକୁ ଚିତ୍ତ ଉଛନ୍ନ ଅତି
ଛାଡ଼ିପ୍ରଭୁ ପାଦସେବା     ସେବକ ହୋଇଣ କେବା
ରହିପାରେ କାହିଁ ହୋଇ ନିଶ୍ଚିନ୍ତ ମତି
ପ୍ରଭୁ ଏକା ପ୍ରାଣ ତାହାର
ପ୍ରଭୁ ପାଦପଦ୍ମ ତାର ହୃଦୟ-ହାର ॥୩॥

ଅନ୍ତର୍ଯ୍ୟାମୀ ନାରାୟଣ ନ ଜାଣନ୍ତି ଭୃତ୍ୟମନ
ବଞ୍ଚିପାରେ କି ସେ ତୁମ୍ଭ ଖଟଣି ତେଜି
ଛାଡ଼ି ତୁମ୍ଭ ସହବାସ ଆର୍ତ୍ତେ ଛାଡ଼େ ଦୀର୍ଘଶ୍ୱାସ
ଝୁରି ଝୁରି ମରେ ହୃଦ ସୈରାଗ୍ୟ ହେଜି
ଚନ୍ଦ୍ରାମଣି ବୋଲେ ଭାଷେ
କଥ ପ୍ରଭୁ ସେବକଙ୍କୁ ପଥର ପାଶେ ॥୪॥

**

**

# ରଥଯାତ୍ରା

## ସଚ୍ଚିଦାନନ୍ଦ ରାଉତରାୟ

(ବିଂଶ ଶତାବ୍ଦୀ)

ଅନେକ କପୋତ ପକ୍ଷୀ ରଂଗ ପରି
ଆଜି ପାଣି କୁହୁଡ଼ିଆ ଖରା
ହଠାତ୍ ସେ ଦେଖାଗଲା ପଶ୍ଚିମ ମୁହାଁଣୁ
ଦୁଇ ଚକା ଡୋଳା
ମୃଦଂଗର ଆଖି ପରି ।
ସବୁ ଶବ୍ଦ ହୋଇଗଲା କ୍ଷଣେ ଶୁନ୍‌ଶାନ ।
ଲକ୍ଷ ଲକ୍ଷ ଲୋକଙ୍କର ଜୟଧ୍ୱନି, ହୁଳହୁଳି
ଶଂଖ ବାଦ୍ୟସ୍ୱନ
କ୍ରମେ ସବୁ ଲିଭିଗଲା, ଶବ୍ଦ ଆଉ ଦୃଶ୍ୟ
ଏଠି ବସି ପଞ୍ଚଶେକ କୋଶ ବ୍ୟବଧାନେ
ମୁଁ ଦେଖିଲି ସେଇ ମୁହଁ, ସେ ଅଦ୍‌ଭୁତ ଆସ୍ୟ
ଦୁଇ ଗୋଟି ଡୋଳା ।
ଦୁଇ କଳା ଚକ୍ଷୁ !
ସେ ଆଖିହିଁ ଦେହ, ତାହା ମନ, ତାହା ଆତ୍ମା
ତାହା ପରଂପରା ।
ତାହା ଏକ ସମୁଦ୍ର-ଝଖୋଲା
ଲୌକିକ ଗବାକ୍ଷ ।
ଦୁଇଟି ବ୍ରହ୍ମାଣ୍ଡ ପରି ସେଇ ଦୁଇ ଡୋଳା,
ଯା'ର ଚତୁର୍ଦ୍ଦିଗେ ଘୂରେ ସୂର୍ଯ୍ୟ, ଘୂରେ ଚନ୍ଦ୍ର ତାରା ।
ଗ୍ରହ, ଉପଗ୍ରହ, ବ୍ୟୋମ ବାୟୁ
ଶୂନ୍ୟ, ମହାଶୂନ୍ୟ

ତାହା ଏକ ଶୂନ୍ୟର ତାକସ୍ତ ମହାଶୂନ୍ୟ ଆଡ଼େ
(ଯେଣୁ ତାହା ପରଂପରା-ରୂପାଂତର ଧାରା-
ଯାହା ହୋଇ ଚାଲିଥାଏ)
ସେ ଆଖିର ପଲକରେ
ମୁଁ ଦେଖିଲି ଧ୍ୱଂସ ହୋଇଯାଏ ମୋର ସ୍ଥିତି
ଅଣୁ ପରମାଣୁ
ଦେଖେଁ ସ୍ୱୟଂ ମଘବାନ
ଆସି ଆରଂଭଂତି ସ୍ତୁତି ।
ମହେଶ୍ୱର କରଯୋଡ଼ି ଠିଆ
ବ୍ରହ୍ମାଏ ପଢ଼ଂତି ବେଦ ।
କିନ୍ନର କିନ୍ନରୀ ଢାଳଂତି ଚାମର ।
କାହିଁଗଲେ ଲୋକମାନେ
କୁଆଡ଼େ ଉଭେଇ ଗଲା ଏତେ କୋଳାହଳ ?
ତଥାପି ରେଡ଼ିଓ କହେ—
ବଢ଼ି ଚାଲେ ଜନ ସୁଅ-ପୂର୍ଣ୍ଣ ବଡ ଦାଂଡ଼
କୋଠା ବାଡ଼ି ଗୃହ ।
ସବୁ ଲୋକ, ଅଜସ୍ର ଅଦ୍ଭୁତ ମୁହଁ
ଆଖି କାନ ହାତ
ଅସଂଖ୍ୟ ଜଣାଣ, ଚାମର ଆଲଟ୍ଟ
ନିମିଷକେ ହୋଇଗଲା ଲୀନ
ସେଇ ନେତ୍ର ବିଂଦେ ।
ସବୁ ଶୂନ୍ ଶାନ ।
କାଳପାତ୍ର ସ୍ଥାନ
ତିନ ଯୁଗ, ଲକ୍ଷ ଯୋଜନ, ତିନି ଲୋକ ଏବଂ ଚାରିବେଦ ।
ନିଶ୍ଚିହ୍ନ, ନିଶ୍ଚିହ୍ନ ।
ଛିନ୍ନ ମୋର ସମସ୍ତ ବଂଧନ ।
ମନେ ହୁଏ ମୁଁ ଯେପରି ମୁକ୍ତ
ମନେ ହୁଏ ନିଃସମସ୍ତ ଏକ ଦୂରତ୍ୱରେ
ସେ ଆଖି ଓ ମୁଁ ମୁହାଁମୁହିଁ ।
ଯେଉଁପରି ବ୍ୟାଘ୍ର ଓ ବାଛୋଇ
ପରସ୍ପରେ ରହିଛଂତି ଚାହିଁ ।

ଅପଲକ, ଅନିମେଷ ଦୃଷ୍ଟି
ସେ ଦୃଷ୍ଟି ହିଁ ବଂଚିବାର ଅର୍ଥ, ତାହା ସ୍ଥିତ
ତଥାପି ଉଭୟେ
ପରସ୍ପର ରହନ୍ତି ଆଚ୍ଛନ୍ନ ।
କାଳକୁ ଆବୃତ କରି
ଯଥା କାଳହୀନ ।

**

**

## ପ୍ରଭୂତ ଅବକାଶ

### ସଚ୍ଚିଦାନନ୍ଦ ରାଉତରାୟ

(ବିଂଶ ଶତାବ୍ଦୀ)

ଅରୁଣ ସ୍ତମ୍ଭର ପାଖେ ଏବେବି ସେ ସ୍ୱର
ସମୁଦ୍ରର ମୁହାଁମୁହିଁ ହେବା ପାଇଁ ଚାହେଁ
ଛୁଟି ଚାଲେ ସମୁଦ୍ରକୁ
କାରଣ ସମୁଦ୍ର ହିଁ ଉତ୍ସ
ସମସ୍ତ ହିଁ କାରଣ କେବଳ
ମୁଁ ଛଟପଟ କରେ ନିଜ କୋଠରୀରେ
ଉପରକୁ ଚାହେଁ, ଏବଂ ପ୍ରାର୍ଥନା କରେ
ପ୍ରାର୍ଥନାର ଶବଦ୍ ସବୁ ତୀବ୍ରତର ହୁଏ
ଚ଼ବନ ପରକା
ତା'ପରେ ଜଣାଣ ମୋର ହୁଏଇ ଅବୋଧ୍ୟ
କ୍ରମେ କ୍ରମେ—।।
କୋଠରୀର ଝର୍କା ଆଉ ରେଲିଂ ଏବଂ ଆସବାବ
କ୍ରମଶଃ ପ୍ରସ୍ତରୀଭୂତ ହେଲା ପରି ଲାଗେ,
ଏବଂ ସେ ସ୍ୱର କାନରେ ବାଜେ

ସମୁଦ୍ର ଅଙ୍କୁ ମୋହିଁ
ସମୁଦ୍ରହିଁ ଉତ୍ସ
ସମୁଦ୍ରହିଁ କାରଣ ସବୁର
ରୋମନ୍ଥ ପରି ସେ ଶବ୍ଦ ସବୁ
ଛଂଦା ଛଂଦ ହୋଇ
ଫେରିବାକୁ କରଂନ୍ତି ଆରଂଭ
ସମୁଦ୍ର ଆଡ଼କୁ
ମୁକ୍ତ ନୀଳିମାରେ ଗାଧୋଇ ।
ଏଥର ମନେ ହୁଏ ତା' ମୋର ନିଜସ୍ୱ କଥନ
ମୋ'ର ଆକୁଳ ପ୍ରାର୍ଥନା
ସମସ୍ତର ଅଶ୍ରୁଭୂତ
ମାନବୀକରଣ
ମୋର ଉଚ୍ଚାରଣ
ଏବଂ ମୋର ଉତ୍ସର ସଂଧାନ ।

**

**

## ଶ୍ରୀ ଗୁଂଡ଼ିଚା

### ସଚ୍ଚିଦାନନ୍ଦ ରାଉତରାୟ

(ବିଂଶ ଶତାବ୍ଦୀ)

ଅଦୋ ଯଦ୍ଦାରୁ ସିଂଧୋପାରେ ଅପରୁଷମ୍
ତଦା ଭରସ୍ୱ ଦୁର୍ହଣୋ ତେନଗଚ୍ଛ ପରସ୍ତରମ୍ ।

—ଋକ୍‌ବେଦ ୧୬।୧୦ମ ମଂଡଲ

ଅକାଶର ବାଣୀ ଶୁଣିବ କଣ୍ଠୀ
କ୍ଷୀରେନ୍ଦ୍ରେ ମେଲିବ ନେଇ କୃଷ୍ଣ ଅଂଗ ଗୋଟି

—ଶାରଳା ଦାସ

ହେ ପ୍ରାର୍ଥନା ! ତୁମେ ଆଜ ହୁଅ ଉଥରୂତ
ଜନ୍ମ ଯାତ୍ରା କର ମଣିଷର ଚଲାପଥେ
କେଉଁ ଗୂଢ଼ ଗୋଷ୍ଠୀର ଇଚ୍ଛାରୁ
ତୁମେକ ଛୁଟିଛ କହ ବ୍ୟକ୍ତିର ଗୋଷ୍ପଦେ
ନା ଅନାର୍ଯ୍ୟ ଅରଣ୍ୟ ପ୍ରାଂତୁ ଯୌଥ ପାରବଶ୍ୟ
ନୀଳ ପଥରର କେଉଁ ଅନାହତ ସ୍ଥାଣୁ
ରହସ୍ୟ ଚକ୍ଷୁରୁ
ଆର୍ଯ୍ୟର ଜଂଗମେ
ସମୁଦ୍ର ସଂଗମେ ।
ନୀଳ ନାସ୍ତିକ ଆକାଶ ପ୍ରଦେଶେ
ତୁମେତ ନେଇଛ ରୂପ ଶବ୍ଦମନ୍ତ୍ର କୋଷେ
ବର୍ଣ୍ଣର ବକାର ଗ୍ରନ୍ଥି ।
ତା' ଉତ୍ସରୁ ପୁଣି ଦେହଲୋକେ
ଆସିଛ ଓହ୍ଲାଇ
*¹ ଯୁଗନଦ୍ଧ ମହାସୂତ୍ରେ ଚୂର୍ଣ ଦେହକାସ୍ତି
ଦେହ ସ୍ରୋତେ
ଜାଗେ ଯହିଁ ଭୃଶଣା ଉତ୍ପାଟି ପଣ
*² ମୁକ୍ତ ଲକ୍ଷ୍ମୀଂକର
ଆଜ ଏଠି ମଣିଷର ଜୀବନ ପଥରେ
ବର୍ତ୍ତି ନୁହେଁ ଶବ୍ଦନୁହେଁ ନୁହେଁବ ଶସ୍ତ୍ରରେ
ହେ ପ୍ରାର୍ଥନା ! ହେ ବିଶ୍ୱାସ
ଦିଗ୍‌ବିଜୟ କର
ସାଧାରଣ ଜୀବନର ଉଲ୍ଲୁଧ୍ୱନ ସୁରେ ।
ଆବିଶ୍ୱ କଳ୍ପନା ନେଇ ତୁରଂଗ ଶ୍ରେଣୀରେ
ଜ୍ୟୋତ୍ସ୍ନାର ମଂଜିଷ୍ଠି ପଣ ନଗୂଢ଼ ପ୍ରତ୍ୟୟେ ।।
ନାହିଁତ ଟ୍ରାଇବ୍ । ମରିଅଛି ସଂଘ
ଲଭିଅଛି ଷଷ୍ଠି ଦେହର ତନ୍ତ୍ର
(ତା'ସଂଗେ) ପତନ ସହଜ
ତେଣୁ ବଜ୍ର ସ୍ୱପ୍ନ
ଭୈରବରୁ ନୂତନ ମୈତ୍ରେୟ
ହୁଅ ପରିଣତ

ବିଗ୍ରହ ଏ ମଣିଷ ଜୀବନ
ତାର କ୍ଷେତ୍ର କି ବିଚିତ୍ର
ମୁକ୍ତ ଏ ସମାଜ ।
ଏ ଦୁଇର ବନ୍ଧନମଧ୍ୟେ
ବିରୋଧେ, ଅନ୍ୱୟେ
ଅଛି, ଅଛି ଏକ ସାଧାରଣ
ହେ ପ୍ରାର୍ଥନା ମୋର
ହୁଅ ତୁମେ ତହିଁ ଫଳବାନ ।

**

*୧ ତାଂନ୍ତ୍ରିକ ଚର୍ଯ୍ୟାଗୀତିର ସାଧକମାନେ ଯୋଗୀ-ଯୋଗିନୀ ମିଳନାବସ୍ଥାକୁ ଯୁଗନଦ୍ଧ ନାମିତ କରିଥିଲେ । ଏହି ଯୌନସଂଗମ ମାଧ୍ୟମରେ ମହାସୁଦ୍ଧ ବା ମହାସୁଖ କିଂବା ଆଧ୍ୟାତ୍ମିକ ଅର୍ଥରେ ନିର୍ବାଣାବସ୍ଥା ଲଭନ୍ତି ଏ ବୋଲି ବର୍ଣ୍ଣିତ ଅଛି ।

*୨ ଲକ୍ଷ୍ମୀଂକରା-ଉଡ୍ଡୀୟାନର (ଯାହା ହରପ୍ରସାଦ ଶାସ୍ତ୍ରୀ ଓ ଡଃ ଭଟ୍ଟାଚାର୍ଯ୍ୟଙ୍କ ମତରେ ପ୍ରାଚୀନ ଓଡ଼ିଶା) ପ୍ରସିଦ୍ଧ ବଜ୍ରଯାନ ବିଶାରଦ ଇନ୍ଦ୍ରଭୂତିଙ୍କ ଭଉଣୀ ଲକ୍ଷ୍ମୀଙ୍କରା ସେ ବଜ୍ରଯାନ ବିଷୟରେ ବିଶେଷଜ୍ଞ ଥିଲେ ।

**!

## ନିଶମାଖି ପୁଅ ମାଦଳା ବାଉଁ

### ମହାପାତ୍ର ନୀଳମଣି ସାହୁ

(ବିଂଶ ଶତାବ୍ଦୀ)

ତୁମେ କଣ ସେଇ ଯମୁନା କୂଳର
ଗୋପୀମନ ଚୋର, ଗୋକୁଳ ଚନ୍ଦ୍ର ନନ୍ଦବାଳା ?
ତୁମେ କଣ ସେଇ ମୟୂରଚୂଳିଆ ପୀତ ଦୁକୂଳିଆ
ବନ ଫୁଲମାଳ, ଧୂଳି ଧୂସରିଆ
ମୁରଲୀ ଧରା, ଚକ୍‌କଣ କଳା ?

ତୁମେ କଣ ସେଇ
ଯଶୋଦା ମାଈର ଗେଲବସରିଆ ଲବଣୀ ଖିଆ ?
ଇନ୍ଦ୍ର ବ୍ରହ୍ମାଙ୍କ ଗର୍ବ ହରି
ପୂତନା ଝାଣ୍ଟର ପରାଣ ପିଆ
ଗୋରୁ ଗୋପାଳଙ୍କ ପରାଣ ଧନ
ନିଆଁ ଗିଳା ସେଇ ଗଉଡ଼ ପିଲା ?
ବକା ଧେନୁକାର କଲିଜା ଚିରା ?
ତୁମେ କଣ ସେଇ ରସିକ ଶେଖର ପରମ କାରୁଣ
ଶ୍ରୀ ରାଧା ମଧୁର ଅଧର ପିଆ ?

ତୁମେ କଣ ସେଇ ପଦ୍ମ ପଲାଶଲୋଚନ କୃଷ୍ଣ ଦ୍ୱାରକାଧୀଶ ?
ସୁଦାମାର ମିତ, ଖୁଦ ରୁକ୍ମିଣୀ କମଳା ଈଶ ?
ବିଦୁର କୁଟୀରେ ଶାଗ ଭଜା ସଙ୍ଗେ ପଖାଳ ଖିଆ
ପାଣ୍ଡବ ସଖା, ଧର୍ମ ରକ୍ଷଣେ
ଯୁଗେ ଯୁଗେ ହୁଅ ଅବତାରିଆ ?

କୁରୁ ସଭାତଳେ କୃଷ୍ଣାର ଲଜ୍ଜ୍ୟା
ନିବାରଣ କଲ ତୁମେ ନା ସତେ ?

ଚଣ୍ଡ ଚଣ୍ଡାଳ ଭଗବଦ୍ଭକ୍ତିକୁ
ଅଭୟ ଦେଇଛ ତୁମେ ନା ସତେ ?
ତୁମେ ନା ସତେ ?
ଯୁଧିଷ୍ଠିରର ଧର୍ମ ଯାଗେ
ଅତିଥିଙ୍କ ପାଦ ଧୋଇ ଦେଉଥିଲ
ଆପଣା ହାତେ ?
ଧର୍ମ ଯୁଦ୍ଧେ ଅସ୍ତ୍ର ନ ଧରି
ସାରଥି ହୋଇଲ ପାର୍ଥ ରଥେ ?
ତୁମେ କଣ ସେଇ ଦଶରଥ ସୁତ
ବିକଚ ରାଜୀବଲୋଚନ ରାମ ?
କଅଁଳ ଶ୍ୟାମଳ ଛନ ଛନ ଘାସ
ବରନ ତୁମର ଦେହର ଠାମ ।
ପିତାର ସତ୍ୟ ରକ୍ଷଣେ ତୁମେ
ବକଳ ବସନେ ଗମିଲ ବନ,
ଭରତଙ୍କୁ ଦେଇ ରାଜ୍ୟର ଭାର
ଜଟାଧାରୀ ହୋଇ କାଟିଲ ଦିନ ?
ତୁମଙ୍କୁ ଦେଖିଣ ଦଣ୍ଡକ ବଣେ
ମୁନି ଋଷିଙ୍କର ଟଳିଲା ମନ
କାମିନୀ ଭାବରେ ରମଣ ମାଗିଲେ
ତୁମେ ନା ସତେ ସେ ପୁରୁଷୋତ୍ତମ ?
ନୟନାଭିରାମ ହୃଦୟାଭିରାମ
ଯଜ୍ଞ ପାଳକ ହେ ଅଭିରାମ ?
ଦିବ୍ୟ ପୁରୁଷ ରମଣ ଲାଳସୀ
ସୂର୍ପଣଖାର କାଟିଲ ନାକ ଓ କାଟିଲ କାନ
ପ୍ରଜାରଞ୍ଜନ ଲାଗି ପୁଣି ଆହେ ନିଠୁର ଚିତ୍ତ
ସୀତାରେ କରିଲ ବିସର୍ଜନ;
ଜୀବନଟା ସାରା ବେଦନା ଦଗ୍ଧ
କରି ଆପିଗଲ ସଂସାର ଧର୍ମ !!!
ତୁମେ କଣ ସେଇ କପିଳବାସ୍ତୁ ମାୟାଦେବୀ ସୁତ ଶାକ୍ୟମୁନି
ଜୀବର କଷଣେ ବିଗଳିତ ପ୍ରାଣ, ଶୁଦ୍ଧ ବୁଦ୍ଧ କରୁଣା ଖଣି,
ତୁମେ କଣ ସେଇ ଆଦି ଅନାଦିର ଅସୀମ ସୀମା ?

ଶୂନ୍ୟ ପୁରୁଷ ଅଲେଖବ୍ରହ୍ମ ଅନାଦନା—
ଅଖିଳ ଭୂମା—
ଅଛ ନ' ଅଛର ଚରମ ସୀମା ?
ଆଜ କାଲୁ ଏଇ ଦାରୁଭୂତ ରୂପ ଦେଖିଲା ଷଣି
ହସ ମାଡ଼ୁଛି କି କାନ୍ଦ ମାଡ଼ୁଛି ମୁଁ ନପାରେ ଜାଣି,
ବୁଝି ପାରୁ ନାହିଁ କି ଭାବ ତୁମକୁ
ଏମିତ କଏ ସେ କାହିଁକି କଲା ?
ଅଥବା କାହାର ଗର୍ଭ ବିଦାର
ଅସମୟେ ତୋର ଜନ୍ମ ହେଲା ?
ଦେଖିଲା ବେଳକୁ ହାତ ଗୋଡ଼ ନାହିଁ
ଖଣ୍ଡିଆ ପିଲା ।
ତଥାପି କେମିତ କୋଟି କୋଟି ଆଖି
ଅପଲକ ହୋଇ ଚାହିଁଛି ଭଲା ?
କଏ ଯେ କାହାର ଗୁହାରି ଶୁଣିବ
କାହାର କଷଣ ପାରିବ ଫେଇ —
ସେ କଥା ଏହାର ହାତ ଗୋଡ଼ ଦେଖି
ବୁଝା ପଡ଼ୁଅଛି-ହାଇରେ ହାଇ !
ଇଏ ଅବା, କାର କରିବ କଅଣ
ମାଦଳା ଠାକୁର, ମାଦଳା ଭୂତ
ଆପଣାକୁ ଆପେ ରଖି ପାରିବାତ
ଏହାର ହୋଇଛି ସାଧ୍ୟାତୀତ
ଏ ପୁଣି କୁଆଡ଼େ ଜଗତନାଥ !
କେଜାଣି ସେ କଥା ମିଛ କି ସତ !
ସାଧୁ ସୁଜନଙ୍କ ସେଇଆ ମତ
କଏ ପୁଣି କହେ କାଳିଆ ଭୂତ—
ପାଦ ନାହିଁ ବୋଲି ବସିଛି ରଥ !
ଏ ଭୂତ ସାଙ୍ଗରେ ଭେଟଣା ହେଲେ—
ଜ୍ଞାନ ହଜିଯିବ ହେବ ଅଚେତ
ଜ୍ଞାନୀ ଭଗତଙ୍କ ସେଇଆ ମତ !
ମତେ ମିଛ ହେଲେ ତୁମକୁ ସତ !
ଏତକ ମାତର ମନେ ମୁଁ ଭାବୁଛି

କାଳିଆରେ ତତେ କି ଯାଦୁ ଜଣା ?
ଆରେ ତୋ ଆଖିରେ ଆଖି ମିଳିଗଲେ
ଆଖିର ପଲକ ନ ପଡ଼େ ଜମା !
ଦେଉଳେ ଥାଆକି ରଥରେ ଥାଆ ତୁ
ମାଦଳାରେ ତୋତେ ଚାହିଁଲି କ୍ଷଣି—
ଅକାରଣେ କୋହେ ଗଣ୍ଠି ଫାଟିଯାଏ
ଆଖିରୁ ବୁହଇ ଅସରା ପାଣି !
ମନ ହୁଏ ତୋତେ କୁଣ୍ଢାଇ ଧରନ୍ତି
ଜୀବନଟା ସାରା ବୁହାନ୍ତି ଲୁହ—
ଦୁଃଖିର ଧନତୁ ରଙ୍କ ରତନରେ
ଝରମାଖି ପୁଅ, ମାଦଳା ଦଅଁ !
ଧରିଲେତ ତୋତେ ହାତ ଛାଡ଼ୁ ନାହିଁ
ମନ ବଳୁନାହିଁ, ପକାଇ ଦେବ—
ଘୃଣପଟେ ତୋର ଚତଳ ଲୁହର
ଅଥଳ ଜଳେ
ଦୁଃଖିଧନ କାଳେ ଯିବୁ ତୁ ଡ଼ୁବି ! !
**

**

# ଜଗନ୍ନାଥ


## ଦୁର୍ଗାଚରଣ କୁଅଁର

(ବିଂଶ ଶତାବ୍ଦୀ)


ଜାଣେ ନାହିଁ ତୁମେ ମୋର ଭାଇ ବନ୍ଧୁ ସଖା ବା ସୋଦର
ଶଠ ପ୍ରପଞ୍ଚକ ଅବା କାଳସର୍ପ ଆରତ ଜନର

ତୁମକୁ ଦେଖିଲେ କାହୁଁ ଭଲ ଲାଗେ ଲାଗେ ଆପଣାର
କଳା ଶ୍ରୀମୁଖରେ ଅବା ଠୁଳ ସବୁ ଶୋଭାର ଭଣ୍ଡାର

ବିଶ୍ୱ ବ୍ରହ୍ମାଣ୍ଡର ସବୁ କଳାଯାକ ହୋଇ ଘନୀଭୂତ
ଗଢିଛି କି ଦେହ ତବ, ସେଥିପାଇଁ ତୁମେ ବିଶ୍ୱରୂପ

କୋଟି ସୂର୍ଯ୍ୟ ଗ୍ରହ ତାରା ମ୍ଳାନ ଅବା ସେ ଚକ୍ଷୁ ଖୋଲିଲେ
ଭସ୍ମ ଲାଗେ ସେଥିପାଇଁ ଛୁଡ଼ାଦେଲେ ତୁମର ସମ୍ମୁଖେ

ଆଶ୍ଚର୍ଯ୍ୟ ସେ ଦୃଷ୍ଟି ତବ ଜଗତର ପରମ ବିସ୍ମୟ
ସବୁ ଗର୍ବ ଅହଂକାର ଲଭେ ତହିଁ ଚରମ ବିଲୟ

ଜ୍ଞାନ ବୁଦ୍ଧି ପରାହତ ସେ ଦୃଷ୍ଟିର ଉଜ୍ଜ୍ୱଳ ଆଲୋକେ
ଶତ ମତ ଶତ ପଥ ଏକ ହୁଏ ସେ ଦୃଷ୍ଟି ଇଙ୍ଗିତେ

ତୁମକୁ ଦେଖାଇ ପୁଣି ଅନ୍ୟରୂପେ ରତ୍ନବେଦୀ ଛାଡ଼ି
ଉଭାହୁଅ ବଡ଼ଦାଣ୍ଡେ ବୋଲି ହୋଇ ଏ ଧରାର ଧୂଳି

ଭଲଲାଗେ ମଣିଷର ଠେଲାପେଲା ଅଙ୍ଗର ପରଶ
ଦାରୁରେ ତ ବ୍ରହ୍ମ ତୁମେ ଦାରୁ ପୁଣି ପାଲଟେ ମଣିଷ

ତୁମେ ପୁଣି ଯାଅ ଯୁଦ୍ଧେ ଦୁଇଭାଇ ହୋଇଣ ସାଉନ୍ତ
ରଖିବାକୁ ଭକ୍ତ ତବ ଗଜପତି ରାଜାର ମହତ ।

ରହସ୍ୟ ବି କର ତୁମେ ବାଟେ ଦେଖି ସୁନ୍ଦରୀ ତରୁଣୀ
ଧୋକ୍କା ଖାଇ ବନ୍ଧା ହଅ ରତ୍ନମୁଦ୍ର ପ୍ରେମୀ ଶିରୋମଣି ।

ତୁମପାଇଁ ଅଭିଷେକ ନ ହୋଇଲେ ଉତ୍କଳ ରାଜନେ
ଅଭିଷିକ୍ତ ତୁମେ ଯେଣୁ ସର୍ବଜନ ହୃଦ ସିଂହାସନେ

ଶତ୍ରୁ ଆକ୍ରମଣ କାଳେ ରଖିବାକୁ ତୁମର ସମ୍ମାନ
ଯୁଗେ ଯୁଗେ ଦେଶ ଲୋକେ କରିଛନ୍ତି ନଜରେ ବପନ୍ନ ।

ତୁମକୁ ଲୁଚାଇଛନ୍ତି ନେଇ କେଉଁ ପାହାଡ଼ କନ୍ଦରେ
ସୋନପୁରେ କେବେ ଅବା ଚିଲିକାର ନିର୍ଜନ ଦ୍ୱୀପରେ

ଏ ଜାତିର ଅନ୍ତରଙ୍ଗ ଅଟୁ କିଏ ତୁମ ପରି ଜଣେ
ସବୁ ଅଳି ଅଭିମାନ ସମର୍ପିତ ତୁମରି ଚରଣେ ।

ତୁମର ବି ମୃତ୍ୟୁ ହୁଏ । ହୁଏ ପୁଣି ନବ କଳେବର
ଅଶୌଚ ବିଧି ପାଳନ୍ତି ଦଇତାଏ । ସେ କି ତୁମ ଭାଇବିରାଦର

ଦେବ କି ମାନବ ତୁମେ ନୁହେଁ ଜାଣି ହେ ପୁରୁଷୋତ୍ତମ
ତଥାପି କରଇ ନତ ମଥା ମୋର, ଘେନ ହେ ପ୍ରଣାମ

**

***

# ସନ୍ଧ୍ୟା-ବନ୍ଦନା

## ଶ୍ରୀ ନୃପାଳ ଜୀ

(ବିଂଶ ଶତାବ୍ଦୀ)

[ରାଗ-ରାମକେରୀ]

ଝଙ୍କାର ଉଠୁଚି ମଧୁର ଚିର ସୁନ୍ଦର ବୀଣା
ଆହେ ଜଗନ୍ନାଥ ! ତୁମର ଆଜ ସନ୍ଧ୍ୟା-ବନ୍ଦନା ।

ଶୁଭ୍ର ଶଙ୍ଖ ବାଜେ ଗମ୍ଭୀରେ ଆଣେ ନବ ଚେତନା
ଗମ୍ଭୀର ଓଁକାର ଝଙ୍କାର ତୋଳେ ମଧୁ ମୂର୍ଚ୍ଛନା ।

ବୀଣା ମୁଖରିତ ମନ୍ଦିରେ ଦେଇ ସୁବାସ ଧୂପ
ପୂଜାରୀ କରଇ ଆରତି ଧରି ରତନ ଦୀପ ।

ତୁମରି ଆରତି ବନ୍ଦନାଭରା ଅମିୟ ଗୀତେ
ଆନନ୍ଦ ଜୁଆର ଉଚ୍ଛୁଳି ଉଠେ ତାହାରି ଚିତ୍ତେ ।

ତାରା ଆଲୋକିତ ରଜନୀ କୋଳେ ମଧୁ ଆରତି
ମଧୁ ସମୀରଣ ଗୁଞ୍ଜନ ତୋଳେ ବନ୍ଦନା ଗୀତି ।

ଅଗଣିତ ଭକ୍ତ ମିଳିତ ହୋଇ ନାଟମନ୍ଦିରେ
ତୁମ ଜୟଗାନ କରନ୍ତି ପ୍ରାଣ ପୁଲକ ଭରେ ।

ନୀଳଶୈଳ ଚୂଳେ ଶୋଭୁଚ ଆହେ ନୀଳସୁନ୍ଦର !
ଏ-ବିଶ୍ୱେ ଆଲୋକ ଦେଉଚ କୋଟି କୋଟି ଅନ୍ତର ।

ସେ ଆଲୋକ ପାଇ ଆସିଲେ ଜଗେ ଆଦ୍ୟ ଶଙ୍କର
" ଜଗନ୍ନାଥ ସ୍ୱାମୀ ଗାଇଲେ ରଚି ସ୍ତୁତି ମଧୁର !

ବନ୍ଦିଲେ ତୁମ୍ଭଙ୍କୁ ଚୈତନ୍ୟ ବଡ଼ ଦେଉଳେ ଆସି
ବିଲୀନ ହୋଇଲେ ଶ୍ରୀଅଙ୍ଗେ ପ୍ରେମସାଗରେ ଭାସି ।

ଲଳିତ ମଧୁର ଭାଷାରେ ରଚି ଗୀତଗୋବିନ୍ଦ
ଜୟଦେବ ଜଗତ ମନ୍ଦିରେ ଗାଇ ହେଲେ ଆନନ୍ଦ !

ଜଗନ୍ନାଥ ଦାଶ ତୁମର କେତେ ସ୍ତୁତି ବନ୍ଦନା
କଳ୍ପବଟ ମୂଳେ ରଚିଲେ ହୋଇ ହରଷମନା ।

ଜ୍ଞାନ ପ୍ରେମ ଅନ୍ତଃସଲିଳା ଫଲ୍ଗୁ ଧାରାରେ ଭାସି
ନିଗମଆନନ୍ଦ ଆସିଲେ ହେଲେ ଶ୍ରୀକ୍ଷେତ୍ର ବାସୀ

ନୀଳଚକ୍ର ବାନା ଗାଉଛି ସାମ୍ୟ ମୈତ୍ରୀ ଗାନ
ନୀଳସିନ୍ଧୁ ତାଳ ଦେଉଛି ତୋଳି ଗମ୍ଭୀର ତାନ ।

କ୍ଷେତ୍ର ମଧ୍ୟେ ଶ୍ରେଷ୍ଠ ପୁରୁଷୋତ୍ତମ ଜଗତ ନାଥ !
ଧର୍ମ ମଧ୍ୟେ ଶ୍ରେଷ୍ଠ ତୁମର ଧର୍ମ ବିଶ୍ୱବିଖ୍ୟାତ ।

* ଜ୍ଞାନ ପ୍ରେମ ଘନ ବିଗ୍ରହ ତୁମ୍ଭେ ଶ୍ରେଷ୍ଠ ପୁରୁଷ
ଶ୍ରୀଚରଣେ ଲୀନ କର ହେ ପ୍ରଭୁ ନୃପ ମାନସ ।

**

* ଜଗନ୍ନାଥହିଁ ପୂର୍ଣ୍ଣବ୍ରହ୍ମ । ବ୍ରହ୍ମଙ୍କର ସ୍ୱରୂପ ଜ୍ଞାନ ଓ ପ୍ରେମ । ସେଥିପାଇଁ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଋକ୍‌ବେଦର ମହାବାକ୍ୟ " ପ୍ରଜ୍ଞାନଂ ଆନନ୍ଦଂ ବ୍ରହ୍ମ " ଏହି ପୁରୁଷୋତ୍ତମ କ୍ଷେତ୍ରରେ ବିସ୍ତାର କରିବା ପାଇଁ ନିର୍ଦ୍ଦେଶ ଦେଇ ଯାଇଛନ୍ତି । ତେଣୁ ବନ୍ଦନାରେ ଶ୍ରୀଜଗନ୍ନାଥଙ୍କୁ ଜ୍ଞାନ ଓ ପ୍ରେମର ଘନୀଭୂତ ବିଗ୍ରହ ଏବଂ ଶ୍ରେଷ୍ଠ ପୁରୁଷ ବୋଲି ସମ୍ବୋଧନ କରାଯାଇଅଛି ।

**

# ଗାଳି ନଦେଲେ

## ଲକ୍ଷ୍ମୀଧର ମହାପାତ୍ର

(ବିଂଶ ଶତାବ୍ଦୀ)

(ଏବେ) ଗାଳି ନ ଦେଲେ କାଳିଆ ଫଳିବ ନାହିଁ
ଢାଳିଲି ଲୋତକ ଯେତେ ଢଳିଲା ନାହିଁ ।।ପଦ।।

ତ୍ରେତାରେ କାଳିଆ ରାମ ରୂପେ ଆବତରିଲା
ପୀରତି-ବନ୍ଧରେ ସୀତାଚିତ୍ତ ତା'ର ହରିଲା
ଧିକ ସେ ରଘୁମଣି
ବୃଥା ଗୁଜବ ଶୁଣି
ତେଜିଲା ସୀତାକୁ ବଣେ ପାଷାଣ ହୋଇ ।।୧।।

ଦ୍ୱାପରେ କାଳିଆ ପୁଣି କୃଷ୍ଣରୂପ ଧରିଲା
ଗୋପରେ ଗୋପଯୁବତୀ-ମନ ମାନ ହରିଲା
ଧିକ ଶ୍ୟାମ ପୀରତି
ତେଜି ଗୋପ ଯୁବତୀ
ଅକ୍ରୁର-କଥାରେ ଗଲା ମଥୁରା ଧାଇଁ ।।୨।।

କମଳା ମାଆ ସେବଇ କାଳିଆର ଚରଣ
ଏଇ କାଳିଆଟି ପୁଣି ଦେଲା ତାକୁ କଷଣ
ବଡଭାଇ କଥାରେ
ତାକୁ ତେଜିଲା ଥରେ
ବୁଲିଲା ବାର ଦୁଆରେ ବାଇଆ ହୋଇ ।।୩।।

ଲିଗା ନାହିଁ ତାକୁ ଦଗା ଦେବା ଜଗା ସ୍ୱଭାବ
ଗାଳି ଯେତେ ଦେଲେ ସେ କ ତା' ସ୍ୱଭାବ ଛାଡ଼ିବ
ତାକୁ ଦଅ ପୀରତି
ତା'ର ଚରଣେ ମତି
ଟଳିବ ଆସନ ତା'ର ଭକତ ପାଇଁ ॥୪॥
**

**

# ବଡ଼ଦାଣ୍ଡ ହୋଇ

## ଲକ୍ଷ୍ମୀଧର ମହାପାତ୍ର

(ବିଂଶ ଶତାବ୍ଦୀ)

ବଡ଼ଦାଣ୍ଡ ହୋଇ ବଡ଼ ଦେଉଳରେ
ବସିବା ତୁମର ବୃଥା
ବୁଝିଲନି ଯେବେ ବ୍ୟାକୁଳ ପ୍ରାଣର
ବିଷାଦ ବେଦନା ବ୍ୟଥା ॥ପଦ॥

ବଦିତ ହୋଇଛ ବେଦ ପୁରାଣରେ
ତୁମେ କୃପାର ବାରିଧି
ବନ୍ଧୁ ବନ୍ଧୁ ବାର ବଚନ ଦେଲେ କି
ହେବ ପଛୁ ଅପରାଧୀ
ବିପୁଳ ବିଭବ ବିତରି ଦାନବ
ବିଖ୍ୟାତ ବଳି ଦାତା ॥୧॥

ବିକ୍ତବନ୍ତି କୋଳେ ବଧୂ ବହୁନେ କି
ମାଳନବ ଶୋଭା ପାଏ
ବିନା ବସନ୍ତର ଆଗମେ କି ପିକ
ଚୂତ ଡାଳେ ଗୀତ ଗାଏ

ବିନା ତୁମ କୃପା ଥାଏ କି ମାନବ
ଜନମର ସାର୍ଥକତା ॥୨॥

ବର୍ଣ୍ଣ ରନ୍ଧ୍ର ଯେବେ ବିଳାପରେ ଖାଲି
ବିତିଯାଏ କାଳ ବେଳି
ବର୍ଣ୍ଣିବା ତେବେ ବିଧି ଅଭିଶାପ
ସୃଷ୍ଟି ତୁମର ଖେଳ
ବାତୁଳ ମାନବ ଦୁଆରେ ତୁମର
କାହିଁକି ପିଟଇ ମଥା ॥୩॥

ବିଷ ହେଉ ପଛେ ବିଷୟ ବାସନା
ସବୁତ ତୁମର ଦାନ
ବିସ୍ମୃତ କିବା ବିଶ୍ୱ-ମାନବ
କରିବାରେ ବିଷପାନ
ବଞ୍ଚିତ କିପାଁ ହେବ କରୁଣାରୁ
ତୁଟେନି ବିଶ୍ୱକରତା ॥୪॥

ବର୍ଷିବା ତୁମର ସାର୍ଥକ ହେବ
ବିସ୍ତାର ଦିଅ ବାହୁ
ବିଶ୍ୱ ବକ୍ଷରୁ ଅପସରି ଯାଉ
ବିକଟ ବିଷାଦ ରାହୁ
ବିନତି ଏତିକି ବିଶ୍ୱର ଯୋଜନବ
ବଚାଅ ହେ ବିଶ୍ୱପିତା ॥୫॥

**

**

# ଜଗବନ୍ଧୁ ପର ବନ୍ଧୁ

ଶ୍ରୀ ଲକ୍ଷ୍ମୀଧର ମହାପାତ୍ର

(ବିଂଶ ଶତାବ୍ଦୀ)

ଜଗବନ୍ଧୁ ପର ବନ୍ଧୁ ନାହିଁ ଜଗତେ ଜଣେ
ଜନ କଲ୍ୟାଣ କାମନା ତାହାର
ଜଗତ ଜନର ଯାତନା ଜାଣେ ॥ପଦ॥

ଜଡ଼ ପରି ସେତ ବସିଅଛୁ ସତ
ବଡ଼ଦାଣ୍ଡ ବୋଲି କଏ ନ ମଣେ
ଜପ ତା'ର ଗୁଣ ତା'ର ବନ୍ଧୁପଣ
ନମଇ ଜଗତ ତା'ର ଚରଣେ ॥୧॥

ଜଳ ଜଳ ନେତ୍ରେ ଗୃହିଁଛୁ ନଗରେ
ଜଗତଜନଙ୍କ ମନକୁ ଟାଣେ
ଜାଳି ଦିଏ ଭବ-ଭକତି ପ୍ରଦୀପ
ଅନୁଗତ ତା'ର ଭକତ ପ୍ରାଣେ

ଜଠର ଜ୍ୱାଳାରେ ଯେ ବନ୍ଧୁ ମହାନ୍ତି
ପଡ଼ିଥିଲେ ପେଜ ନଳାର କୋଣେ
ଜଗାଇ ତାହାକୁ ଯାଚି ଦେଲେ ଅନ୍ନ
ଯାମିନୀରେ ତା'ର କ୍ଷୁଧା ହରଣେ ॥୩॥

ଜନପଦ ପାଞ୍ଚପାଣ୍ଡବଙ୍କ ପାଇଁ
ମାଗି ଯାଇଥିଲେ ସେ କୁରୁରାଣେ
ଜୟ ଧ୍ୱଜା ଧରମର ଉଡ଼ାଇଲ
ସଖା ଅର୍ଜୁନର ସାରଥୀ ପଣେ

ଯାକ ଖୁଦଭଜା ଦ୍ୱାରକା ଭୁବନେ
ମିଳନ୍ତେ ସୁଦାମା ସନ୍ତର୍ପଣେ
ଯାବୃଞ୍ଜ ଧଇଲ ଆଦରେ ତାହାଙ୍କୁ
ବାଲ କାଳ-ସଖା ଭାବ ସ୍ମରଣେ ॥୫॥

ଜଳ ଜଳ ଚାହିଁଥିଲେ ପାଣ୍ଡୁ ସୁତେ
କୁରୁ ଦରବାରେ ବସ୍ତ୍ର ହରଣେ
ଜଣାଇ ଦେଲୁତା ବଂଧୁ ପଣିଆକୁ
ସତୀ ଦ୍ରଉପଦୀ ଲଜ୍ଜା ବାରଣେ ॥୬॥

ଜାନକୀ ଉଦ୍ଧାର ପାଇଁ ସେତ ଯେବେ
ବୁଲୁଥିଲ ଘୋର ଦୁର୍ଗମ ବଣେ
ଜଙ୍ଗଲ ବାସୀଙ୍କ ମଙ୍ଗଳ ବନ୍ଧୁଲ
ସଙ୍ଗ ହେଲେ ଆସି ଜଣକୁ ଜଣେ ॥୭॥

ଯାଢରେ ବାଉରି ଦାସିଆ ଗୁହାରି
ଶୁଣିଥିଲ ପଶି ତେଉର ଶ୍ରବଣେ
ଜାଳି ଦେଇଥିଲ ପୀରଘର ବତୀ
ଦୀନ ସାଲବେଗ ଯବନ ପ୍ରାଣେ ॥୮॥

ଜଞ୍ଜାଳ ଜାଲରେ ଥାଇ ଅବିରତ
ଜଗା ନାମ ହୃଦେ ଯେ ଜପି ଜାଣେ
ଜାତି ବର୍ଣ୍ଣ ଭେଦ ବିଚାର ନରଖି
ବନ୍ଧୁ ବୋଲି ଜଗା ତାହାକୁ ମଣେ ॥୯॥

ଜନକ ଜନନୀ ଜାୟା ସୁହାଗିନୀ
ଜଡ଼ିତ ସରବେ ସ୍ୱାର୍ଥ ସାଧନେ
ଜଗା ଦାଅଁ ଏକା ଆପଣାର ହୋଇ
ଉଦ୍ଧାର କରିବ ବିପଦ କ୍ଷଣେ ॥୧୦॥

ଜଗବନ୍ଧୁ ବନ୍ଧୁ ହେବ ଯେବେ ବନ୍ଧୁ,
ବାନ୍ଧଦଅ ପ୍ରାଣ ତା'ର ଚରଣେ
ଜନ୍ମ ସ୍ୱଣ ଝାଣ ଶୁଙ୍ଘିବ ଜାଣି
ଜିଣିବ ଧରିରେ ଜୀବନ ରଣେ ॥୧୧॥

**

**

# ଜଗା ମୁହଁ ସିନା କାଳିଆ

## ଶ୍ରୀ ଲକ୍ଷ୍ମୀଧର ମହାପାତ୍ର

(ବିଂଶ ଶତାବ୍ଦୀ)

ଜଗା ମୁହଁ ସିନା କାଳିଆ
ଜଗତେ ସୁନ୍ଦର କେ ତା' ଭଳିଆ ॥ପଦ॥

ତଳିଆ-ଦଳିତ ଜନେ ନ ଦିଶନ୍ତି
ବସିଥାନ୍ତି ଯଦ ହୋଇ ତଳିଆ
ଉପରେ ଥାଇ ସେ ତଳ ଦେଖିବାକୁ
ବସିଅଛୁ ହୋଇ ନୀଳାଚଳିଆ ॥୧॥

ଆଖି କୋଣେ ଥିଲେ କଣେଇ ଚାହାନ୍ତି
ଲୋକେ କହୁଥାନ୍ତେ ଜଗାକାଳିଆ
ସର୍ବଜନେ ସମଦୃଷ୍ଟି ଦେବ ବୋଲି
ଶୋଭା ପାଏ ବସି ଚକାଡୋଳିଆ ॥୨॥

କର-ପରଶରେ କୋଳକୁ ନିଅନ୍ତି
ଦେଖି ତା'ର ପ୍ରିୟ ଯେ କପାଳିଆ
ପ୍ରିୟ ଜନଦୋଷ ଦୋଷ ନାଶିବାକୁ
ହାତ ତାର ହୋଇଅଛୁ ଫାଳିଆ ॥୩॥

ଦୂରୁଦଶା ଗ୍ରନ୍ଥ ଦଳଦଳ ତା'ର
ଗଳା ହୋଇଅଛୁ ଧଣ୍ଡ୍ରାମାଳିଆ
ରସିକ ଜନର ମନ ରଂଜିବାକୁ
ବେଶ ସାଜେ ନଟ ଭଳିଭଳିଆ ।।୪।।

କଳିରେ କଳୁଷ-କାଳି ପୋଛୁପୋଛୁ
ମୁହଁ ତା'ର ହୋଇଅଛୁ କାଳିଆ
କଳୁଷ ନାଶି ସେ କୃପା ବରଷିବ
ହୃଦୟକୁ କର ନିରମଳିଆ

**

**

## ଗ୍ରହାଁରେ ଚଗଲା ମନ

### ଲକ୍ଷ୍ମୀଧର ମହାପାତ୍ର

(ବିଂଶ ଶତାବ୍ଦୀ)

ଗ୍ରହାଁରେ ଚଗଲ ମନ
ସେ ଚକାନୟନକୁ
ଗ୍ରହିଁଲେ ପାଇବୁ ଯାଇ
ମୁକତି ଆସ୍ଥନକୁ ।।ଘୋଷା।।

ଗ୍ରରୁ ଗ୍ରହାଣୀ ତାହାର
ଚହଲଏ ଚରାଚର
ଗ୍ରତକପର ଗ୍ରହିଁଆ
ସେ ନୟନ ଘନକୁ ।।୧।।

ଚକା ନୟନରେ ପରା
ତ୍ରିମ୍ଭୁକ ରହିଛୁ ଭରା
ଚାନ୍ଦପଟ ପର ଗ୍ରହାଁ
ଲୁହା କର ଧ୍ୱଆନକୁ ।।୨।।

ଘୁତରଦେଖାଉ କେତେ
ଘୁଣ ଧନକୁ ମରତେ
ଘୁଞ୍ଚିଛୁ କାଳ ଛଞ୍ଚାଣ
ଘୁଟି ଦେବ ଗୁମାନକୁ ॥୩॥

ଚପଳ ନ କରି ଚିତ୍ତ
ଚନ୍ଦ୍ରରେ ଚପଳା କାନ୍ତ
ଚଳୁ ଚୁମ୍ବକରେ ତାର
ନେବଟାଣି ତା ମନକୁ ॥୪॥

ଚତୁର ପଣକୁ ତେଜି
ଘୁଞ୍ଚାଁଖାଲି ଆଖିବୁଜ
ଚହଲିବ ଚକା ଆଖି
ଦେବ ସେ ଦରଶନକୁ ॥୫॥

**

**

# ଆମ ବଡ଼ ଠାକୁର

## ପରମା ନନ୍ଦ ଅଧିକାରୀ

(ବିଂଶ ଶତାବ୍ଦୀ)

ବଡ଼ ହଟିଆ ଆମ ଏଇ ବଡ଼ ଠାକୁର
ବଡ଼ ଦେଉଳେ ଗୋସାଇଁ ନୁହେଁ କାହାର ॥୧॥

ନୀଳଚକ୍ରେ ବାନ୍ଧି ନେତ
ବୋଲାଏ ସେ ଜଗନ୍ନାଥ
ବଡ଼ଦଅଁ ହୋଇ କରେ ବାଛ ବସ୍ତୁର ॥୨॥

କାଳିଆ ଚକ୍ଷ ବଳା
ଭାବ ବିନୋଦିଆ ଭୋଳା
ମନର ଠେକା ଜାଣଇ ବଡ଼ ହୁନ୍ଦର ॥୨॥

କୋଠ ଭୋଗ ଖିଆ ହର
ଦଗାଦିଆ ଦଇତାଙ୍କ
ସବୁଜାଣି ଅଦେଖା ସେ ରସସାଗର ॥୩॥

ଚକା ଡୋଳା ଚଉବାହା
କାହାକୁ ନହୁଏ ମାହା
ତା' ଇଚ୍ଛା ଯାକରୁ ତାହା, କରୁଣାକର ॥୪॥

କାହିଁକି ଖାଉନ୍ଦପଣେ
ଗଣିବ ସେହୁ ଆପଣେ
ମୋ କଥା ନହେଲା ଗ୍ରମୁରେ ଦନେ ବସ୍ତୁର ॥୫॥

**

**

# ଲୋଡ଼ା ତୋ ଠିକଣା

ବ୍ରଜମୋହନ ମହାନ୍ତି

(ବିଂଶ ଶତାବ୍ଦୀ)

ପିତା ଭଗବାନ ମୁଁ ବ୍ରଜ ମୋହନ
ସୁଜାତା ଭବନ ଠିକଣା ମୋର
ସୁତ ଜଗନ୍ନାଥ ମୁକାମ ଶ୍ରୀକ୍ଷେତ୍ର
କଏ ତୋର ତାତ କଳା ଠାକୁର ?

ସନତ ସୁବ୍ରତ ଦୁହେଁ ମୋର ସୁତ
ଘରଣୀ ମୋରତ ଅସ୍ମୀ ସୁଜାତା
ତୁମର ଘରଣୀ ଲକ୍ଷ୍ମୀ ଠାକୁରାଣୀ
ନାହାନ୍ତି କି ପୁଣି ସୁତ ବା ସୁତା ?

ବରଷକୁ ଏକ ସନ୍ତାନ ଜନକ
ସାଜନ୍ତି ଲୋକ ଆଜିକର ଯୁଗେ ।
କି ଔଷଧ ଖାଇ ଲକ୍ଷ୍ମୀ ମହାମାୟୀ
ଖାଲି କୋଡ଼ ହୋଇ ରହିଲେ ସଗେ ?

ଯଉବନ ଖସି ଯିବାକୁ ଭରସି
ଆଜିର ମାନସୀ ନ ଗୃହେଁ ସୁତ ।
ମୋର ପରି ପିତା ଜୀବନଟା ପିତା
ଅଶ୍ବିବର ଚିତା ଜାଳେ ମହତ ।

ଦେଖୁଥିବ ତୁମେ କାଖ କୋଡ଼େ ଆମେ
ବସାଇ ସରମେ କାଟୁ ଜୀବନ ।

ବରଷକୁ ଥରେ ସେ ନୀଳ କନ୍ଦରେ
କୁଆଁ ରବ ବାରେ ଶୁଣେ କି କାନ ?

ପିଣ୍ଡ ଦେବାପାଇଁ ତୁମ କୁଳେ କେହୁ
ସତେ ଲୋଡ଼ା ନାହିଁ ସରଗ ଦ୍ୱାରେ ।
ନରକର ଭୋଗ ଆମ ପାଇଁ ଯୋଗ
କରିଲ ସଂଯୋଗ କି ପରକାରେ ?

ଶ୍ରେଷ୍ଠ ପଞ୍ଚାମୃତ କରି ଜଗନ୍ନାଥ
ବେଢ଼ାରେ ବହୁତ ଦେବତା ଧରି
ରହୁଛ ଅନାଦି କାଳରୁ ତମାଦି
ହେଲଣି ବା ଯଦି ଗୁଣ ତୁମରି ।

ତୁମରି ଠିକଣା ପାଇଁ ବାଟ ବଣା
କୁହ ଥିଲେ ଜଣା କଳା ଠାକୁର ।
ଗାଡ଼ି ବା ମଟର ଅଥବା ସ୍କୁଟର
ଚଢ଼ି ଏହ୍ୱବାର ଯିବ ମୁକର ।

ଦରିଆର କୂଳେ ସେ ବଡ଼ ଦେଉଳେ
ଭକ୍ତ ଜନ ମେଳେ ରହୁଛ ଟିକ ?
ଯିବ ମୁହିଁ ସିଧା ନ ମାନବ ବାଧା
ଜନମେ ସରଧା ନପାରେ ରୋକ ।

ବୁଝିଲି ଏଥର ତୁ ପିତା ତୋହର
ଏ ସାରା ସଂସାର କଲୁ ସର୍ଜନା ।
ଆମେ ତୋ ସନ୍ତାନ କୋଟି କୋଟି ଜନ
ଖୋଲୁଛୁ ଲୋଚନ କର ମାର୍ଜନା ।

**

**

# ଚିଠି ଖଣ୍ଡେ ଜଗନ୍ନାଥଙ୍କୁ

## ବ୍ରଜମୋହନ ମହାନ୍ତି

(ବିଂଶ ଶତାବ୍ଦୀ)

ମାନନୀୟ ଜଗତର ନାଥ ଜଗନ୍ନାଥ
ଦୂରୁ ଜଣାଉଛି ମୋର କୋଟି ଦଣ୍ଡବତ ।

ଜଣାଇ ଦେବ ପ୍ରଣାମ ଭାଇ ବଳଦେବେ
ସୁଯୋଗ ହେଲେ ଶ୍ରୀକ୍ଷେତ୍ରେ ଦେଖା ହେବ କେବେ ।
ଭଗିନୀ ସୁଭଦ୍ରା ପଦେ ନତ କରେ ମଥା ।
ଆଶୀଷ ଦିଅନ୍ତୁ ସର୍ବ ବେଢ଼ାର ଦେବତା ।
ଚିଠି ପାଇ ଚିଠି ଖଣ୍ଡେ ଦେବ ତ ତୁରିତ ।

ସେବା ଠିକ ସେବାୟତ କରନ୍ତି କି ନାହିଁ
ମନ ଖୋଲି ଚିଠି ଦେବେ ଲେଖିବ ଗୋସାଇଁ ।
ଚଉଷଠି ପଉଟିର ଭୋଗ ମିଠା ଖଟା।
ପାଉଛ କି ନାହିଁ ତୁମେ ଏବକାର କୋଟା।
ହୋଟେଲ ସାଜୁଛି ହେଲେ ବିବାହ ବା ବ୍ରତ ।

ଗସ୍ତରେ ଯଦିବା କେହି ଆସିଲେ ଓଡ଼ିଶା
ତୁମକୁ ଦେଖିବା ପାଇଁ ମନେ ଧାରେ ଆଶା ।
ଡାକ ବଙ୍ଗଳାରେ ସବୁ ଜମିଯାଏ ଭିଡ଼ ।
କହିବ ଖୋଲେ କି ନାହିଁ ତୁମର ପହୁଡ଼ ।
ମହାପ୍ରସାଦକୁ ଛାଡ଼ି ଖାଇଲେ ମାଂସ ଭାତ ।

ଗୋଡ଼ମିଶା ଅନ୍ନ ଭୋଗ ବନସ୍ପତି ଘିଅ
କେତେଦିନ ଖାଉଥିବ ବସି କଳାହାଣ୍ଡି ।
ପରଅଣ୍ଟା ପାଉଁରୁଟି ବିରିଆନି ଦୋଶା ।
ଇଡ଼ିଲି ସମ୍ବର ପାଇଁ ନାହିଁ କି ଲାଳସା ?
ଜର କାଲେ ରମ୍ ଗ୍ଲୁଡ଼ ଖାଅନ୍ତ ନବାତ ।

ଅନଶନ ଧର୍ମଘଟ ଆମ ଆଡ଼େ ସ୍କୁଲେ
ପାଠ ପଢ଼ି ଇଚ୍ଛା ନାହିଁ ଖଟିବାକୁ ବଳେ ।
ଭାଗ ଚାଷୀ ଆନ୍ଦୋଳନ ଏଠି ଅହରହ ।
ତୁମ ଜମି କିଏ ଚଷୁଛନ୍ତି ଦେବ କୁହ ?
ସବୁ କଥା ବୁଝି ଉଠି ଦେବ ହେ ଭରତ ।

**

**

# ପୁରୀ-ମନ୍ଦିର

## କାଳିନ୍ଦୀ ଚରଣ ପାଣିଗ୍ରାହୀ

(ବିଂଶ-ଶତାବ୍ଦୀ)

କାଷ୍ଠ ପଷାଣ ଗଠିତ ହେ ନିର୍ଜୀବ ମୂରତି
ଏ ଦେଶ ଶୋଣିତେ ଆଜ ଜାଗ୍ରତ ଯେ ବିଶ୍ୱର ଜୀବତ,
ମାନବର ଶିଳ୍ପକଳା କଳ୍ପନା ଘଟିତ
ଯୁଗ ଯୁଗ ଧରି ଯାହା ହୋଇଛୁ ଗଠିତ
ମାନବର ହସ୍ତେ ବନ୍ଧ ରୂପ
ଭାଗ୍ୟେ ତାର କରୁଛ ବିଦ୍ରୂପ
ଅନ୍ତର ଗୁହାରି
ଶୁଣ କି ତାହାରି
ଶୂନ୍ୟ ପ୍ରାଣ
ହେ ପାଷାଣ ।

ନ ଲଭି ସାନ୍ତ୍ୱନା କାନ୍ଦି ଭଗ୍ନପ୍ରାଣ ମାନବ ସନ୍ତାନ
କାଷ୍ଠ ପାଷାଣର ଦେହେ କରଇ ସେ ଦେବତା ନିର୍ମାଣ
କୋମଳ ମଧୁର ଯାହା କରି ଆରାଧନା
ନୋହେ ଯେଣୁ ଉପଶମ ଅନ୍ତର ବେଦନା
ବ୍ୟାକୁଳ ହୃଦୟେ ଲୋଡ଼େ ସେହୁ
ଦୟା କ୍ଷମା ପାଷାଣର ଦେହୁ
ପାଷାଣର ଗାତ୍ରେ
ମସ୍ତକ ଆଘାତେ
ଅକାରଣ
ଅଶରଣ ।

ହେ ପାଷାଣ ମାଗୁନାହିଁ ଶମିବାକୁ ମୋ ମରମଭର,
କ୍ଷମିବାକୁ ଅପରାଧ ତୁଟିବାକୁ ବ୍ୟର୍ଥତା ଆଶାର
ଲୋଡ଼ୁନାହିଁ ଲଭିବାକୁ ତବ ଅନୁଗ୍ରହେ
ଧନ ମାନ ଯଶ ଖ୍ୟାତି ଅଭସ୍ତ ହୃଦୟେ
ମୃତ୍ୟୁପରେ ମୁକ୍ତି ନାହିଁ ମାଗେ
ବଇକୁଣ୍ଠ ନାହିଁ ଭଲ ଲାଗେ
ଏ ମର୍ତ୍ତ୍ୟ ଭୁବନ
ମୋ ସ୍ନେହ ସଦନ
ଏ ଧରଣୀ
ସୁଖମଣି

ଜୀବନର ଭାବନାରେ ବହିଯାଏ ମୋର ପ୍ରତି କ୍ଷଣ
ନାହିଁ ବେଳ କରିବାକୁ ମୁକ୍ତି ଅବା ମୃତ୍ୟୁର ଚିନ୍ତନ
ଲଭିଅଛୁ ଯେ ସଂପଦ ଏ ମର ଜୀବନେ
ମିଳଇ ସେ କେବେ କେଉଁ ଅମର ଭୁବନେ ?
ଏ ଜୀବନେ ଲଭିଛୁ ଯେ ନିଧି
ତୁଚ୍ଛ କରି ଦିଏଁ ସ୍ୱର୍ଗ ସିଦ୍ଧି;
ଭୋଗିବାକୁ ତାହା
ବେଳ ନାହିଁ ଆହା
କିବା ଲୋଡ଼ା
ସ୍ୱର୍ଗ ଯୋଡ଼ା

ଏ ଧରାର ସୁଖ ଦୁଃଖ ସ୍ନିଗ୍ଧ ରୁକ୍ଷ ସୁନ୍ଦର କୁତ୍ସିତ
ଅତି ଆଦରର ମୋର, ଏ ଜୀବନ ଅତି ପରିଚିତ
କେତେ ଆଶା କେତେ ମୋର ଆକାଙ୍କ୍ଷାର ଧନ
ଗୁଡ଼ି ସବୁ ନ ଲୋଡ଼ଇ ସ୍ୱରଗ ଭୁବନ
ଜନନୀର ଅମୃତ ସେନେହ
ଲାଳିତ କରଇ ଏ ଯେ ଦେହ,
ଆଶୀଷ ପିତାର
କଲ୍ୟାଣ ଆଧାର
ଏତେ ପ୍ରାଣ
ଏତେ ଦାନ

ସକଳ ମମତା ତେଜି ନ ଖୋଜଇଁ ମୁକତ ମାରଗ,
ହୁଅଇ ନାସ୍ତିକ ପଛେ, ନ ଲୋଡ଼ଇ ଅମର ସ୍ୱରଗ
କି ଆନନ୍ଦ ନିହିତ ସେ ସ୍ୱର୍ଗ ପରବାସେ
ହୁଏ କି ତା ସୁସ୍ମିତ ଶିଶୁର ସୁହାସେ ?
ସେ ସଙ୍ଗୀତ ପ୍ରିୟାର ନୂପୁରେ,
ଅଛି କେଉଁ ବଇକୁଣ୍ଠ ପୁରେ ?
ପ୍ରିୟା-ରୂପ-ଶଶୀ
ସେ କେଉଁ ଉର୍ବଶୀ
ପାରେ ଜିଣି
ଗରବିଣୀ

ତଥାପି ନମଇଁ ତୋରେ ହେ ନିର୍ଜୀବ କର୍କଶ ପାଷାଣ
ଘନୀଭୂତ ଏଥି ଯେଣୁ କେତେ ପୁଣ୍ୟ ଶିଳ୍ପୀର ପରାଣ
ଯେ ସୃଜନ ଗଢ଼ିଲା ଏ ପାଷାଣର ଗିର
ଯେ ବିରାଟ କଳ୍ପନାରୁ ଉଦ୍ଭୂତ ଏ ଶିଳ୍ପ
ବିଶ୍ୱପାଇଁ କରିଲା ଦାଦନ
ଅନ୍ତରର ବିପୁଳ ବେଦନ,
ହେବାକୁ ନିର୍ବଂଶ
ଲୋଡ଼ିଲା ଅଯଶ
ବଂଶ ଗର୍ବ
କରି ଖର୍ବ

ତ୍ୟାଗର ମହିମା ଯେଣୁ ଏ ଦେଉଳ ଘୋଷଇ ପବନେ
ତ୍ୟାଗର ଜୟ ପତାକା ଉଡ଼ାଉଛି ଅନନ୍ତ ଗଗନେ,
ବିରାଟ ସେ ଆତ୍ମାଏହୁ ପାଷାଣେ ନିହିତ,
ଉଦ୍ଦେଶ୍ୟେ ତାହାର ଆଜି ନମ୍ର ମୋର ଚିତ୍ତ
ରକତ ମାଂସର ଯେତେ ହସ୍ତ
ନିର୍ମିଲା ଏ ପ୍ରସ୍ତର ସମସ୍ତ
ତାହାର ସକାଶେ
ଏ ପାଷାଣ ପାଶେ
ନମସ୍କାର
ବାରମ୍ବାର !

ମାନବର ସୃଷ୍ଟି ଏ ଯେ ମାନବର ଅନ୍ତର ଆରବ୍ଧ
ନମଇଁ ମୁଁ ତେଣୁ ଏଥି ଜଣାଏଁ ମୋ ବ୍ୟଥାର ଭାରତୀ,
କାତର ଚିତ୍କାର କେତେ ଅନ୍ତରର ଦୁଃଖ
ଜଡ ଏ ପାଷାଣ ଦେହେ ଭଜିଅଛି ମୂକ
ଆଜି ଏହି ଦେଉଳ ଗହ୍ୱରେ
ଶତ କଣ୍ଠ-ପ୍ରତିଧ୍ୱନି ଅରେ
ମିଶାଇ ତା'ସଙ୍ଗେ
ଏ ମନ୍ଦିର ଅଙ୍ଗେ
କଣ୍ଠସ୍ୱର
ଉଠେ ମୋର !

ଲୁକ୍କାୟିତ ବିଶ୍ୱ ମଧ୍ୟେ ମାନବ ପ୍ରାଣର ଆଶା ଆଧି
ଏ ପାଷାଣ ଜନ୍ମୋହୋଇ ସ୍ତୂପୀକୃତ ଲଭିଛି ସମାଧି,
ବିରହ ବିଧୁର କେତେ ଯୁବତୀ ନିଶ୍ୱାସ,
ସନ୍ତାନହୀନାର କେତେ ଶୋକ ଅଶ୍ରୁଧାର,
ହୋଇଅଛି ଏଥି ଘନୀଭୂତ,
ଅନ୍ତରର ବାସନା ଅମୂର୍ତ୍ତ,
କେତେ ନିରାଶ୍ରୟ
ଲୋଡ଼ିଛି ଅଭୟ
ସଂଗୋପନେ
ଆଶା ମନେ !

ଶ୍ରେଷ୍ଠ ମାନବ-ଅନ୍ତର କେତେ ଏଥି ଆସିଅଛି ଧାଇଁ,
ଭକତି ପ୍ରେମର କେତେ ରସ ଉତ୍ସ ଦେଇଛି ବୁହାଇ,
ତରଳାଇ ନିର୍ଜୀବ ଏ ପାଷାଣର ଅଙ୍ଗ
ଜୀବନ ରସର କେତେ ଉଠିଛି ତରଙ୍ଗ,
କେତେ ଶତ ଜୀବନ୍ତ ଦେବତା
ବିଶ୍ୱପାଇଁ ପ୍ରକାଶିଛି ବ୍ୟଥା
ଏ ଶିଳା ବିଚିତ୍ର
ହୋଇଛି ପବିତ୍ର
ଲଭି ଯେଣୁ
ପଦ ରେଣୁ !

ଆଦର୍ଶ ଯାହାର ମହାସାମ୍ୟ ନୀତି ନାହିଁ ଭେଦଜ୍ଞାନ ।
ମାନବ ଶିଶୁର ଯହିଁ ନାହିଁ ଜାତି ଦ୍ୱେଷ ଅପମାନ
କବୀର, ନାନକ, ବୁଦ୍ଧ, ଚୈତନ୍ୟ, ଶଙ୍କର
କଲେ ଯହିଁ ସମାବେଶ ସକଳ ଧର୍ମର,
ଲେଖିଲେ ଏ ପାଷାଣର ଗଡେ
"ସକଳ ଯେ ସମାନ ଜଗତେ"
ସବୁ ବଡ ସାନ
ଦୀନ ଧନବାନ
ନତମୁଣ୍ଡ
ଏଥି ଲୁଣ୍ଠ !

ଯେତେ କୋଟି ଯାତ୍ରୀପଦ ପଡ଼ିଛି ଏ ମନ୍ଦିର ଦୁଆରେ,
ଭବିଷ୍ୟତେ ଯେତେ ପୁଣି ଲାଗିବ ଏ ପାଷାଣ ହୃଦ୍ୟାରେ
ନ ରହିବ ଇତିହାସ ନ ରହିବ ଚିହ୍ନ
ଏ ପାଷାଣ ଗାତ୍ର କାହିଁ ନୋହିବ ବିଦୀର୍ଣ୍ଣ !
କିନ୍ତୁ ସେ ଯେ ବିଶ୍ୱାସ ଭକତି
ତା' ଉଦ୍ଦେଶ୍ୟ ଜଣାଏଁ ମୁଁ ନତି
ମାନବ ଜୀବନେ
ଅମୂଲ୍ୟ ସେ ଧନେ
ନମସ୍କାର
ବାରମ୍ବାର ।

**

**

# ଚକାନୟନ ଗୃହାଁ ମାଗେ ମାଗୁଣୀରେ


## ସାରଦା ପ୍ରସନ୍ନ ନାୟକ

(ବିଂଶ ଶତାବ୍ଦୀ)


ଆରମ୍ଭ ସୁରେ ବାଟେ କରେ ମିନତିରେ
ଚକାନୟନ ଗୃହାଁ ମାଗେ ମାଗୁଣୀରେ ॥ ୦ ॥

ଜଳା ଜଳା ଦୁଇ ଆଖି ମନ କେତେ ଖୋଜିଲା
ଉଷାକାଳ ରବି ଛବି ମନେ ମନ ହଜିଲା
ଆଖି ନାହିଁ ସାକ୍ଷୀନାହିଁ ସାଥୀ କାହିଁ ଝୁରେ ରେ··· ॥ ୧ ॥
ଚକା ନୟନକୁ ଗୃହାଁ ମାଗେ ମାଗୁଣୀରେ

ନ ଦେଲେ ନଦେଅ ପଚ୍ଛେ ଆଖିରେ ମୋ ପରଶ
ସବୁର ପରାଣୁ ପ୍ରଭୁ ନ କରିଅ ହରଷ
ବାଲବନ ଗିରି ଶିରୀ କେତେ ରଙ୍ଗେ ଭରିରେ··· ॥ ୨ ॥
ଚକା ନୟନ ଗୃହାଁ ମାଗେ ମାଗୁଣୀରେ

ସବୁଜ ପତରେ ଧୀରେ ହାତ ତୁମେ ରଖିଲେ
ସବୁଜ ପଥରେ ଥରେ ପାଦ ତୁମେ ଥାପିଲେ
ନଈ ନାଳ ତୋଟା ମାଳ ଫୁଲେ ଫୁଲ ହସେରେ··· ॥ ୩ ॥
ଚକା ନୟନ ଗୃହାଁ ମାଗେ ମାଗୁଣୀରେ

ଘର ଛାଡ଼ି ପରଦେଶେ ପରଦେଶୀ ପଥିକ
ନ ଭାବ ଏ ଭବେ ଅଛି ଜଣେ ଏକା ନାବିକ
ଭାଙ୍ଗେ ସେହି ଗଢ଼େ ସେହି ନୀଳ ଗିରି କନ୍ଦରେ··· ॥ ୪ ॥
ଚକାନୟନ ଗୃହାଁ ମାଗେ ମାଗୁଣୀରେ

**

**

# ସଂଜ ସକାଳେ

**ସାରଦା ପ୍ରସନ୍ନ ନାୟକ**

(ବଂଶ-ଶତାବ୍ଦୀ)

ସଂଜ ସକାଳେ ତୁମ ଛବି ଖୋଜେ
ମୋର ଭିଜା ନୟନରେ, ହାୟ
ଜଗତର ନାଥ, ଆହେ ଜଗନ୍ନାଥ
ଆକୁଳ ଅନ୍ତରେ ଝୁରେ···ମୁଁ
ସଂଜ ସକାଳେ···ସଂଜ ସକାଳେ ॥ ୦ ॥

ମାଗୁ ନାହିଁ ଧନ, ମାନ ସନମାନ
ମାଗୁ ନାହିଁ ମୁଁ ଯେ ସ୍ୱର୍ଗ ନୀଳା ମୋକ୍ଷ
ମାଗିଥିଲେ ଯାହା, ଧ୍ରୁବ ପ୍ରହ୍ଲାଦ
ମାଗୁଛୁ ତହିଁରୁ ଦଅ ମତେ କିଛୁ
କରୁଣା ସାଗର ନ କର ହେ ପର
ମନର ମରାଳ ଝୁରି ମରେ ॥ ୧ ॥
ସଂଜ ସକାଳେ ତୁମ ଛବି ଖୋଜେ ମୋର ଭିଜା ନୟନରେ

ଗିରି ନଦୀ ବନ ବସନ୍ତ ପବନ
ଗଗନ ଜୋଛନା ତାରକା ତପନ
ସୁନୀଳ ସାଗର ଭରା ଉପବନ
ଝରଣାର ଅଙ୍ଗେ କଅଁଳ କଂପନ
ହସାଉଛନ୍ତି ସବୁ କନ୍ଦାଉଛ ମତେ
ପ୍ରଭୁ ହେ କାହିଁକି କୁହ ବାରେ ॥ ୨ ॥
ସଂଜ ସକାଳେ ତୁମ ଛବି ଖୋଜେ ମୋର ଭିଜା ନୟନରେ

**

**

# ନୀଳାଦ୍ରି ବିହାରୀ କରୁଛି ଗୁହାରୀ

## ସାରଦା ପ୍ରସନ୍ନ ନାୟକ

ବିଂଶ ଶତାବ୍ଦୀ)

ନୀଳାଦ୍ରି ବିହାରୀ କରୁଛି ଗୁହାରୀ!
ଘେନ ମୋର ନିବେଦନ
ଜୀବନ ଜୁଆ···ରେ ଜୀବନ ଜୁଆରେ
ଝୁରି ଝୁରିଯାଏ ଦିନ ॥ ୦ ॥

ବିଧୀର ଧୀବର ଧୋଇଦେଲା ପାଦ
ବାନ୍ଧି ନେଲା ନାବ ପରେ
ଉଠିଲା ଉଚ୍ଛୁଳ ଗଙ୍ଗାର ନୀର
ଗାଇଲା ଗୋଧୂଳି ସ୍ୱରେ···
ହସିଲା ମିଥିଳା ବନ ଉପବନ
ଆକୁଳେ କାନ୍ଦେ ମୋ ମନ···
ହାୟ···ଝୁରି ଝୁରି ଯାଏ ଦିନ ॥ ୧ ॥

ବାଜିଲା ମୁରଲୀ ମନ ଉଲୁସାଇ
ଗୋପରେ ପଡ଼ିଲା ହୁରି
ଧୂଳିକାଇ ତନୁ ଯମୁନାର ତୀରେ
କଦମ୍ବ ପଡ଼ିଲା ଝୁରି
ଆହେ ଚକାଡୋଳା ଗାଏ ତୁମ ଲୀଳା
ମନେ ଭରି ଅଭିମାନ···
ହାୟ···ଝୁରି ଝୁରି ଯାଏ ଦିନ ॥ ୨ ॥
ନୀଳାଦ୍ରି ବିହାରୀ······

**

***

# କଳାକଳା କରଝଳ

## କୁଳମଣି ମହାରଣା

(ବିଂଶ ଶତାବ୍ଦୀ)

ମହାବାହୁ ! ଏତିକ ମାଗର ଅଳି ।
ନିରେଖିବ ସଦା ନୀଳଗିରି ନାଥ
କଳା କଳାକର ଝଳ ॥ ଘୋଷା ॥

ହଳଦି ତୁଳସୀ ବାସ ଘ୍ରାସୁଥିବ
ନାସାପୁଟେ ଅହର୍ନିଶି ।
ଶୁଭୁଥିବ କାନେ ଆରତି ନିସ୍ୱନ
ଘଣ୍ଟା ମରଦଳ କାଂସି ॥ ୧ ॥

ନ ଅକିବ ପାଦ ଅଭୟ ଶ୍ରୀପଦ
ପାଶେ ହୋଇଥିବ ଠିଆ
ନେତ୍ର ଦେଖୁଥିବ ନୀଳାଦ୍ରି ମଣ୍ଡପେ
କଳା, ଧଳା, ହଳଦିଆ ॥ ୨ ॥

କମଳା ବିଳାସ ସେବାରେ ମାନସ
କ୍ଳେଶ ନ ଭଜିବ ଢଳେ
ଚକାଆଖି ଆଖି ଲାଖି ରହିଥିବ
ଅଳା ଚକ୍ରେ କାଳେ କାଳେ ॥ ୩ ॥

ବାଇଶି ପାବଚ୍ଛ ଧୂଳି ଅଙ୍ଗେ ବୋଳି
କୈବଲ୍ୟ ଅଙ୍ଗେ ବୋଳିବ
ବୋଲେ କୁଳମଣି ମହା ଯାତ୍ରା ପଥେ
ନାମ ଗାଇ ଗାଇ ଯିବ ॥ ୪ ॥

**

**

# ରଖ ହେ କଳା ଶ୍ରୀମୁଖ

## କୁଳମଣି ମହାରଣା

(ବିଂଶ ଶତାବ୍ଦୀ)

ରଜା ହୋଇ ବସିଛ ମୋ ଜଗାକାଳିଆ
ହଳଦୀ ମୁଖୀ ସୁମୁଖୀ ଧଳା ବଳିଆ ।। ଘୋଷା ।।

ମଣିମା ମଣିମା ଡାକ ଗୁମୁରେ ପଡ଼ିଛି ଦେଖ
ବଳିଆର ଭୁଜ ରଖ ରଖ ହେ କଳାଶ୍ରୀମୁଖ !
ତୋପରି ପ୍ରଭୁ ଥାଉ
କାହେଁ ବିପଦ ସହୁ ।
କରୁଣା ଭଣ୍ଡାରରୁ
କଣାଏ ଆଜ୍ଞା ହେଉ ।
ଆଉ ନୟନେ ଅନା ଚକାଡୋଳିଆ ।। ୧ ।।

ବାଜୁଛି ଶଙ୍ଖ, ମର୍ଦ୍ଦଳ, ଘଣ୍ଟ, ସଂକୀର୍ତ୍ତନ, ଗୋଳ
ହରିବୋଲ, ହୁଳହୁଳି, ଗୁମୁଗୁଡ଼ କୋଳାହଳ
କେହୁ ଢାଳେ ଚାମର
ଆଳଟ କାହା କର ।
ରତ୍ନ ମୁକୁଟ ଶିର
ରତ୍ନ ବେଦି ଉପର ।
ନାଚେ ଭକତ ଟଉ ଭାବ ଭୋଳିଆ ।। ୨ ।।

ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ, ବାମନ ଦେହ,
ପରଶୁରାମ, ଶ୍ରୀରାମ, ବଳରାମ, କୃପାମୟ
ଅବତାରୀ ମୋହନ
ଶ୍ରୀରାଧା ପ୍ରାଣଧନ ।
କେଶୀ, କଂସ ମର୍ଦ୍ଦନ
ଧାରଣ ଗୋବର୍ଦ୍ଧନ ।
ମୁରଲୀଧର ଶ୍ୟାମ ନୀପ ମୂଳିଆ ॥ ୩ ॥

ପାର୍ଥସାରଥୀ ଶ୍ରୀହରି ଜଗତେ ଗୀତା ପ୍ରଚାରି
ନୀଳମାଧବ ସ୍ୱରୂପ ଅପରୂପ ଗୋପ୍ୟକରି
ଦାରୁ ବ୍ରହ୍ମ ସୁନ୍ଦର
ବିଜେ ନୀଳ କନ୍ଦର ।
ବଉଧ ଅବତାର
ଜାଣ କେତେ ସୁନ୍ଦର ।
ପତିତପାବନ ନାଶ ପାପ ଅଳିଆ ॥ ୪ ॥

ବାର ମାସେ ତେର ଯାତ ଲୀଳା ଲଗିଛି ଶ୍ରୀକ୍ଷେତ୍ର
ଦାତାପଣେ ଜଗନ୍ନାଥ ନାମ ଜଗତେ ବିଖ୍ୟାତ
ନ ମାଗେ ଗତି ମୁକ୍ତି
ଅବା ଭୂତି, ବିଭୂତି ।
ରଙ୍ଗାଚରଣ ଭଣେ
ସଦା ରହୁ ମୋ ମତି ।
ତୋ ନାମ ଗାଉ ଗାଉ ଯାଉ ଭୁଲିଆ ॥ ୫ ॥

**

**

# ଜଗବନ୍ଧୁ ହେ ! ଦୀନବନ୍ଧୁ ହେ ! !

## କୁଳମଣି ମହାରଣା

(ବିଂଶ ଶତାବ୍ଦୀ)

ନୀଳାଦ୍ରିନାଥ ଶ୍ରୀନାଥେ ଅନାଥ ଜଣେ
ଧକ୍କା ଖାଇ ଅକାହୋଇ ସୁଦ୍ୱାର ଭଣେ ।। ଘୋଷା ।।

ଦରିଦ୍ରବାନ୍ଧବ ଦୀନବନ୍ଧୁ ବୋଲାଇ
କାତରେ ଡାକେ ଗରବ ଶୁଣିଲ ନାହିଁ ।
ଟିକିଏ ଚକାଇଲେ
ତର ଯାଆନ୍ତ ଭଲେ
କରୁଣା ଭଣ୍ଡାରରୁ
କଣାଏ ଆଜ୍ଞାହେଲେ ।
ଜଗବନ୍ଧୁ ହେ ! ଦୀନବନ୍ଧୁ ହେ !
କୃପାସିନ୍ଧୁ ମାଗୁନାହିଁ କୃପା ଭରଣେ ।।୧।।

ପତିତପାବନ ବାନା ଉଡ଼େ ଜଗତେ
ପତିତ ଜଣେ ଡାକୁଛି ଅତି ଆରତେ ।
ତୋ ବାନା ଧରି ହାତେ
ନ ଦିଶେ ନେତ୍ର ପଥେ
ଅପବାଦ ବାଜଣା
ବାଜି ଯିବ ଜଗତେ ।
ଜଗବନ୍ଧୁ ହେ ! ............ ଦୀନବନ୍ଧୁ ହେ !
ଲାଗିବ କଳଙ୍କ-ପଙ୍କ ରଙ୍ଗାଚରଣେ ।। ୨ ।।

ସଂସାର ଠାକୁର ବୋଲି ପଡ଼ିଛୁ ଶୁଣ
ଦୀନ ଅରକ୍ଷିତ ପଣେ ଭଣେ ଗୁହାରି ।
ହୃଦକନ୍ଦରେ ରହି
ଯାହା ଦେଲୁ ବତାଇ ।
କ୍ଷମାସାଗର ଦାସ—
ଦୋଷ କ୍ଷମିଲୁ ନାହିଁ ।
ଜଗବନ୍ଧୁ ହେ ! ଦୀନବନ୍ଧୁ ହେ
କୁଳମଣି ଅଳି କଲ କୃପା କୃପଣେ ॥ ୩ ॥

**

**

## ନୀଳାଚଳ କଳାଚନ୍ଦ୍ରମା

### କୁଳମଣି ମହାରଣା

(ବିଂଶ ଶତାବ୍ଦୀ)

ନୀଳାଚଳ କଳାଚନ୍ଦ୍ରମା
ହଳାହଳ ଦଳା ଛଳାଇବ କି ?
ଛଳାଇଲ ପର ଆହେ ଗିରଧାରି
ଦରଶନ ଦେଇ ପଳାଇବ କି ॥ ଘୋଷା ॥ ?

ପଳାଇ ଲଭିବ କି ଯଶ
କାଳିଆ କମଳା ବିଳାସ ।
ବିଳାସ କଳୁଷ ବଳାହକ ହାସ
କଳାପ ବିଳାପେ ଜଳାଇବ କି ?

ଜଳାଉଛି ଜଞ୍ଜାଳ ଜାଳି
ବଳାଉଛି ତାପ ବିଶାଳ ।
ବିଶାଳ କରୁଣା ବାରିଧି ପରିଧି
କଳାନିଧି କଳା ବୋଲାଇବ କି ?

ବୋଲାଇଲେ ହେ ଚକାଡୋଳା
ମିଳାଇବ ଭାବ ବାଉଳା ।
ବାଉଳା ସେ ନାମ ପତିତପାବନ
ଗାଇ କୁଳମଣି ଡୋଳାଇବ କି ?

**

**

# ନୀଳାଦ୍ରି ଗୋସାଇଁ

## ମୂରଲୀଧର ପାଇଟାଳ

(ବିଂଶ ଶତାବ୍ଦୀ)

[ରାଗ-ଶଙ୍କରାଭରଣ]

ଆହେ ପ୍ରଭୁ ଜଗନ୍ନାଥ ନୀଳାଦ୍ରି ଗୋସାଇଁ
ଭଲ ଲୀଳା ଲଗାଇଛ ଶ୍ରୀକ୍ଷେତ୍ରରେ ଥାଇ
ଭକ୍ତ ଗଣ ସଙ୍ଗେ ନେଇ
ବାରମାସେ ତେରଯାତ୍ରା କରିଲେ ଗୋସାଇଁ ॥୧॥

ଚତୁରଧାମ ମଧ୍ୟେ ଶ୍ରେଷ୍ଠ ଶ୍ରୀକ୍ଷେତ୍ର ଅଟଇ
ଏଣୁ କରି ପୁଣ୍ୟଧାମେ ରହିଲେ ଗୋସାଇଁ
ବଡ଼ ଦେଉଳେ ଆପଣେ
ବଡ଼ ଭୁଜ, ବଡ଼ ଚକ୍ଷୁ, ବଡ଼ ଦିଅଁ ପଣେ ॥୨॥

ଲକ୍ଷେ ଯୋଜନରୁ ଗଜ ଡାକିଲା ତୁମ୍ଭଙ୍କୁ
ଚକ୍ର ପେଷି ନକ୍ର ମାରି ଉଦ୍ଧାରିଲ ତାଙ୍କୁ
ଗଜ ବିପଦୁ ତାରିଲେ
ବିପଦ ନାଶନ ଜଗତରେ ବୋଲାଇଲେ ॥୩॥

ବିପଦ ନାଶନ ବାନା ଉଡ଼ାଇ ଜଗତେ
ଘୋର ବିପଦେ ଯେ ତୁମ ପଦ୍ମପାଦେ ଚିନ୍ତେ
ତାଙ୍କୁ କରନ୍ତ ଉଦ୍ଧାର
ଭକ୍ତର ବିକଳ ଡାକ ଶୁଣ ଚକ୍ରଧର ॥୪॥

ବଡ଼ ସାନ ଭେଦାଭେଦ ତୁମ୍ଭ ପାଶେ ନାହିଁ
ଏକ ନିଷ୍ଠା ଭକ୍ତି ଭାବେ ଯେ ଭକ୍ତ ଡାକଇ
ସେହୁ ବୈକୁଣ୍ଠ ଗମଇ
ଅନ୍ତିମ କାଳରେ ତୁମ୍ଭ ଦର୍ଶନ ଲଭଇ ॥୫॥

ନିତି ଛପନ ପଉଟି ପ୍ରସାଦ ସେବନ୍ତି
ତୁମ୍ଭପାଶେ କେହି ଭକ୍ତ ଉପାସ ନଥାନ୍ତି
ଅନ୍ନ ଦିଅନ୍ତି ସଭିଙ୍କି
ଅନ୍ନଦାତା ବୋଲି ଜନେ ଡାକନ୍ତି ତୁମ୍ଭଙ୍କି ॥୬॥

କେତେ ପାପୀ ତାପୀ ପ୍ରଭୁ କଲେଣି ଉଦ୍ଧାର
କରୁଣାମୟ ମୋ ପ୍ରତି କିଂପାଇଁ ନିଷ୍ଠୁର
କିବା ଦୋଷ କଲି ହରି
ଏ ଭବ ସାଗରୁ ପାରି କର ଚକ୍ରଧାରୀ ॥୭॥

କରନ୍ତୁ କରୁଣା ପ୍ରଭୁ ତ୍ରୈଲୋକ୍ୟ ଗୋସାଇଁ
ଏ ଭବ ସାଗରେ କନ୍ଦାଉଛ କାହିଁପାଇଁ
ନିନ୍ଦା ହୋଇବ ଜଗତେ
ଦୁଃଖୀର ବିକଳ ଡାକ ଶୁଣ ଜଗନ୍ନାଥେ ॥୮॥

ନୀଳଚକ୍ର ଧ୍ୱଜା ତୁମ୍ଭ ହଡ଼େ ଫର ଫର
ଦର୍ଶନ କରିଣ ଭକ୍ତ ହୁଅନ୍ତି ଉଦ୍ଧାର
ତୁମ୍ଭ ମହିମା ଅପାର
କେଉଁ ଅପରାଧ ପ୍ରଭୁ କଲି ଚକ୍ରଧର ॥୯॥

ଏତିକି ବିନତି ପ୍ରଭୁ ଶୁଣ ଲକ୍ଷ୍ମୀସାଇଁ
ଅନ୍ତିମ କାଳେ ସାକ୍ଷାତ ହେବେ ଲବଙ୍ଗାସ୍ୱାମୀ
ଦୋଷ କରନ୍ତୁ ମୋଚନ
ଶ୍ରୀପଦେ ଦୀନ ସୁରଲୀ କରୁଚି ଜଣାଣ ॥୧୦॥

**

**

# ଆହେ ଜଗନ୍ନାଥ

## ମୁରଲୀଧର ପାଇଟାଳ

(ବିଂଶ ଶତାବ୍ଦୀ)

[ରାଗ ଗୁଣ ସାଗର ବାଣୀ]

ଆହେ ଜଗନ୍ନାଥ ନୀଳଗିରି ନାଥ ଅନାଥର ନାଥ ହରି
ତୁମ୍ଭ ନାମ ଗୁଣ କରଣ ଗାୟନ ହୋଇଥାନ୍ତି ଭବୁ ପାରି

ଶ୍ରୀ ନୀଳ କନ୍ଦରେ ରତ୍ନ ନରନ୍ତ୍ରରେ କରନ୍ତି ସକଳ ଲୀଳା
ଭାବେ ହୋଇ ଭୋଳ ତୁମ୍ଭେ ଆଦିମୂଳ ନ ଶୁଭେକ ଚକାଡୋଳା

ବଡ଼ ଦେଉଳରେ ବଡ଼ଦାଉଁ ପଣେ ରହିଛନ୍ତି ଚନ୍ଦଧ୍ୱଜ
ଦେଉଳେ ତୁମ୍ଭର ଅଶେଷ ପ୍ରକାର ପ୍ରତିମୂର୍ତ୍ତି ଅଛି ପୂରି

ଅତି ମନୋହର ବେଢ଼ା ଚଉପାରି କଳି ନୁହେଁ ତା ଶୋଭାକୁ
ସ୍ୱୟଂ ବିଶ୍ୱକର୍ମା ଗଢ଼ିଛନ୍ତି ତାକୁ ନାହିଁ ଉପମା ଦେବାକୁ

ସିଂହଦ୍ୱାରେ ସିଂହ ମୁହାଣ ଅଛଇ ପୂର୍ବରେ ଅରୁଣ ସ୍ତମ୍ଭ
ସେଠାରେ ଗୁହାରି କଲେ ନରନାରୀ ଶୁଣନ୍ତି ଲକ୍ଷ୍ମୀ ବଲ୍ଲଭ

ଛପନକୋଟି ଜୀବଜନ୍ତୁମାନଙ୍କୁ ଆହାର ଦିଅନ୍ତି ହରି
ବଡ଼ ଦାଣ୍ଡ ଧୂଳି ହୃଦେ ହେଲେ ବୋଳି ପାପ ଯାଏ ଅପସରି

ସତ୍ୟ ଯୁଗରେ ବାମନାବତାରେ ମିଳିଲେ ବଳୀର ଦ୍ୱାରେ
ବଳୀ ବଡ଼ପଣ ଦେଖି ନାରାୟଣ ସ୍ଥାପିଲେ ପାତାଳପୁରେ

ତ୍ରେତୟା ଯୁଗରେ ରାମ ଅବତାରେ ନାଶିଲ ଦଶାନନକୁ
ଋଷି ମୁନିଗଣ ଯାଗଯଜ୍ଞ କରି ଜପିଲେ ତୁମ୍ଭ ନାମକୁ

ଦ୍ୱାପର ଯୁଗରେ କୃଷ୍ଣ ଅବତାରେ ସଖା ହେଲେ ଅର୍ଜୁନର
କୁରୁ ବଂଶ ଧ୍ୱଂସ କଲେ ହୃଷିକେଶ କରିଣ ମାୟା ସମର

ଏ କଳି ଯୁଗରେ ବୌଦ୍ଧଅବତାରେ ରହିଲେ ନୀଳାଞ୍ଚଳରେ
ଦୁଷ୍ଟ ଦାନବଙ୍କୁ ସଂହାର ଆପଣ ସାଧୁ ରଖିବେ ମହୀରେ

ତୁମ ଗୁଣକୀର୍ତ୍ତି ଅଟେ ଅକଳନ୍ତ କଳି ନୁହେଁ ତାର ସୀମା
ଭକ୍ତ ଗଣେ କୃପାଦୃଷ୍ଟି ଦିଅ ଦାସ ମୁରଲୀକୁ କର କ୍ଷମା ।

**

**

# ନୀଳଗିରି ନାଥ

## ମୁରଲୀଧର ପାଇଟାଳ

(ବିଂଶ ଶତାବ୍ଦୀ)

[କୃପାସିନ୍ଧୁ ଦୀନବନ୍ଧୁ ଶ୍ରୀଗୁରୁମୁରେ-ବୃନ୍ଦେ]

ଆହେ ଜଗନ୍ନାଥ ନୀଳଗିରି ନାଥ
କୃପାକର ବାରେ ଭାବଗ୍ରାହୀ
ତୁମ୍ଭ ବିନା କେହି ଏ ଜଗତେ ନାହିଁ
ରଖିବେ ଦୁଃଖିଙ୍କୁ ସୁଖ ଦେଇ
ଆହେ ଚକ୍ରଧାରୀ
ଏ ଭବ ସାଗରୁ କର ପାର ॥୧॥

ତୁମ୍ଭ ଟେକପଣ ବ୍ରହ୍ମାଣ୍ଡେ ଜାଣିଣ
ଡାକନ୍ତି ଭକତେ ନିଶିଦିନ
ତବ ଶ୍ରୀଚରଣ ବନ୍ଦେ ଯେଉଁଜନ
କଳୁଷ ଭାର ହୁଏ ମୋଚନ
ଆହେ ଭକ୍ତ ରକ୍ଷା
ବିପଦ ବେଳକୁ ଦେବେ ଦେଖା ।।୨।।

ଗର୍ବ ଯେଉଁଜନ କରେ ତୁମ୍ଭପାଶେ
ପାଏ ସେହି ଦୁଃଖ ନିର୍ଯ୍ୟାତନା
ଭକ୍ତବତ୍ସଳ ଅଟନ୍ତି ଆଦିମୂଳ
ଜଗତରେ ଉକ୍ତେ କୀର୍ତ୍ତିବାନା
ଆହେ ଭବଗ୍ରାସ୍ମୀ
ଦୟା କରନ୍ତୁ ହେ ଲକ୍ଷ୍ମୀସାଇଁ ।।୩।।

କେତେ ପାପୀତାପୀ ହେଲେଣି ଉଦ୍ଧାର
ତୁମ୍ଭ ଶ୍ରୀଚରଣେ ଠାବ ଦେଇ
କମାଇ କରୁଣା ମୋ ବେଳକୁ ଊଣା
କରନ୍ତି ହେ ତ୍ରୈଲୋକ୍ୟ ଗୋସାଇଁ
ଆହେ ଦାମୋଦର
ଦୀନଜନଠରେ କୃପା କର ।।୪।।

ନହେଲେ କରୁଣା ହେବ ବାଟବଣା
ଊଣା କଲେ କୃପା ଦୀନଜନେ
ହେଲେ କଳଙ୍କିତ ତୁମ୍ଭେ ଜଗନ୍ନାଥ
କି ବୋଲି ବୋଲିବେ ଭକ୍ତଜନେ
ଆହେ ବିଶ୍ୱମ୍ଭର
ଏ ପାପ ସଂସାରୁ ପାରିକର ।।୫।।

ଆହେ ଚକାଡ଼ୋଳା ବୁଡ଼ିଲା ମୋ ଭେଳା
ଉଦ୍ଧାରନ୍ତୁ ମୋତେ ଗିରିଧାରୀ
ବିପଦ ସାଗରେ ରନ୍ଧ୍ର ଜରନ୍ତରେ
ଦୁଃଖ ଭୋଗୁଅଛୁ କି ପୁସର
ଆହେ ହୃଷୀକେଶ
କ୍ଷମାକର ଦୀନଜନ ଦୋଷ ।।୬।।

କେତେ ପାପୀତାପି ଜଣରେ ଉଦ୍ଧାର
ମୁଁ କିବା ଦୋଷ କରିଛୁ ହରି
ଏ ଘୋର ସଙ୍କଟୁ ଉଦ୍ଧାର କରନ୍ତୁ
ଶରଣ ରକ୍ଷଣ ଚକ୍ରଧାରୀ
ଆହେ ଆର୍ତ୍ତତ୍ରାଣ
ମୂରଲୀଙ୍କୁ କର ପରିତ୍ରାଣ ।।୭।।

**

**

# ମୋ ଚକାଆଖିଆରେ

ଘଣ୍ଟାମଣି ଜେନା

(ବିଂଶ ଶତାବ୍ଦୀ)

[ମୋ କଳାମାଣିକ-ବୃନ୍ଦେ]

ତୋହ ଯୋଗୁଁ ଏ ସଂସାର ଚିନ୍ତା ଆତଯାତ
ସେଥିଲାଗି ତୁ ବୋଲାଉ ଜଗତର ନାଥ
ମୋ ଚକାଆଖିଆରେ ॥୧॥

ତୋତେ ସୁମରଣା କଲେ ପଳାଏ ଦୁର୍ଗତ
ମନବାଞ୍ଛା ପୂର୍ଣ୍ଣକରୁ ତୁହତ ଖ୍ୟାତ
ମୋ ଚକାଆଖିଆରେ ॥୨॥

ସାଙ୍ଗରେ ଭାଇଭଉଣୀ ରଖିଛୁ ସମ୍ଭାଳ
ଭାଇ ଭଉଣୀର ସ୍ନେହ କର ଗଳାମାଳ
ମୋ ଚକାଆଖିଆରେ ॥୩॥

ସେନେହ ସରାଗ ବିନା ସଂସାର ଅସାର
କୁଟୁମ୍ବରେ ବାନ୍ଧିଅଛୁ ଏ ସାରା ସଂସାର
ମୋ ଚକାଆଖିଆରେ ॥୪॥

ସମତା ସରଣୀ ଯାହା ଦେଖାଇ ତୁ ସତ
ଜଗତକୁ ଦେଖାଉଛୁ ସମତା ମହତ
ମୋ ଚକାଆଖିଆରେ ॥୫॥

ତୋହ୍ନ ଭଳି ଏଡ଼େ ଆପଣାର ଅଛୁ କିଏ ?
ବୁଝିଲୁ ତା କଥା ତୋତେ ଡାକ ଦେଲା ଯିଏ
ମୋ ଚକାଆଖିଆରେ ॥୬॥

ଏତେ ଆପଣାର ବୋଲି ଗାଳିମନ୍ଦ ଖାଉ
ଏମିତି ଠାକୁର କାହିଁ ଅଛୁକରେ ଆଉ ?
ମୋ ଚକାଆଖିଆରେ ॥୭॥

ଯେ ଯାହାକୁ ଭଲ ପାଏ ଦିଏ ତାକୁ ଗାଳି
ତା' ଗୁଣ ଗାରିମା ଯା'କ କରେ ଜପାମାଳି
ମୋ ଚକାଆଖିଆରେ ॥୮॥

ଯେତେ ଗାଳି ଦେତେ ଗେଲ ପାଉଛୁ ସହ୍ନରେ
ଏମିତି ଦିଅଁ ତ କାହିଁ ନାହିଁତ ମହୀରେ
ମୋ ଚକାଆଖିଆରେ ॥୯॥

ସଂସାରେ ଯେତେ ଧରମ ତୋ' ପାଖରେ ଠୁଳ
ସବୁ ଧରମର ତୁହି ଅଟୁ ଆଦି ମୂଳ
ମୋ ଚକାଆଖିଆରେ ॥୧୦॥

ତୁ ଏକା କୁଟୁମ୍ବୀ ଦିଅଁ ସବୁ ପରିବାରେ
ତୋତେ ନ ଚିହ୍ନିଲେ ଚିହ୍ନା ଜର ଖାଲି ଧାରେ
ମୋ ଚକାଆଖିଆରେ ॥୧୧॥

ତୁହି ରାମ, ତୁହି କୃଷ୍ଣ, ତୁହି ବୁଦ୍ଧ, ଜୀନ
ତୁ ଏକା ପାଳନକର୍ତ୍ତା ଏଇ ରାଢ ଧନ
ମୋ ଚକାଆଖିଆରେ ॥୧୨॥

ତୁହି ଏକା ଜନତାର ଅଟ ଜନାର୍ଦ୍ଦନ
ମଣିଷ ଭାଗଣେ ତୁହି ନରନାରାୟଣ
ମୋ ଚକାଆଖିଆରେ ॥୧୩॥

ସେଥିଲାଗି ପୁଣି ନାମ ଶ୍ରୀପୁରୁଷୋତ୍ତମ
ଖଣ୍ଡିବାକୁ ସଦାକାଳେ ସଂସାରର ତମ
ମୋ ଚକାଆଖିଆରେ ।।୧୪।।

ପାତକୀ ପାତକ ଖ୍ୟାଳ ହଏ ବରଦାନ
ସେଥିଲାଗି ପଂରନ୍ଧର ପତିତପାବନ
ମୋ ଚକାଆଖିଆରେ ।।୧୫।।

ତେଲିଆ ମୁଣ୍ଡରେ ତେଲ କେ ଆଜି ମାଖଉ
କମିଛି କମିଛି କଥା ଲାଗୁଚି ନାକଉ
ମୋ ଚକାଆଖିଆରେ ।।୧୬।।

ତୋ' ଆଖିର ଦୃଷ୍ଟି ପଡ଼ୁ କାଳିଆ ସେଇଠି
ସମସ୍ତେ ରହନ୍ତୁ ସୁଖ ଶାନ୍ତିରେ ଏଇଠି
ମୋ ଚକାଆଖିଆରେ ।।୧୭।।

ତୋ' ଭକ୍ତ ଦାଆଁ ଝଙ୍ଗଉ କରୁଣାର କଣା
କେହୁ ଆଜି ଅନାଦରେ ନୋହୁ ବାଟବଣା
ମୋ ଚକାଆଖିଆରେ ।।୧୮।।

ପରସ୍ପର ପରିବାରେ ଯେ ବିବାଦ କଳି
ତୁଟୁ ତୁଟୁ କାଳିଆରେ ଏଇ ମାଗେ ଅଳି
ମୋ ଚକାଆଖିଆରେ ।।୧୯।।

ଧନ, ଜନ, ଗୋପଲକ୍ଷ୍ମୀ କିଛୁ ମାଗୁନାହିଁ
ମଲାବେଳେ ମୋତେ ଟିକେ ଦେବୁ ତୁ ଅନାଇଁ
ମୋ ଚକାଆଖିଆରେ ।।୨୦।।

ସେତିକ ଦେବୁରେ ମୋତେ ମୁହିଁ ହେବି ଋଣୀ
ତୋ ଚରଣେ ଶ୍ରଦ୍ଧାମଣି ମାଗଇ ମାଗୁଣି
ମୋ ଚକାଆଖିଆରେ ।।୨୧।।

**

**

# ତକାଡୋଲା ବଡଦାଣ୍ଡେ

## ଉପେନ୍ଦ୍ର ନାଥ ବେହୁରା

(ବିଂଶ ଶତାବ୍ଦୀ)

ଚକାଡୋଳା ବଡଦାଣ୍ଡେ କରୁଅଛ ଖେଳା ॥ଘୋଷା॥
ଡାକ ଡାକ ଗଲିଣି ଅଙ୍କ ନ ଶୁଣୁଛ ବାରେ କାହିଁକ ?
ତୁମେ ମହାବାହୁ ନ ଶୁଣିଲେ ଆଉ
ହେବ ମୁ କାହାର ଆହେ ମାଷ୍ଟାଧର
ତବ ମୁଖ ଦେଖିବାକୁ ସପନ ହେଲା ॥୧॥

କେଉଁ କଥା କଲ ମୁଁ ଉଣା କପାଁ ମୋର ଡାକ ଶୁଣନା
ହେଲକ ପାଷାଣ ଆହେ ନାରାୟଣ
ତବ ନାମ ଧରି ହେବି ବୋଲି ପାରି
ଆଶା କରି ତବପାଦେ ଦିନ କ ଗଲା ॥୨॥

ଶୁଣିଅଛି ମୁହିଁ କର୍ଣ୍ଣରେ ଦ୍ରୌପଦୀଙ୍କୁ ରଖିଛ ବାରେ
ବହୁ ବସ୍ତ୍ର ଦେଇ ଲଜ୍ଜା ନିବାରିଲ
ଅର୍ଜ୍ଜୁନର ସଖା ସେଥିପାଇଁ ଏକା
ସାରଥୀ ଯେ ହୋଇଥିଲ ଲଗାଇ ଲୀଳା ॥୩॥

ତୁମେ ମୋର ହେଲ ଭଗାରି
କାହାକୁ କହିବି ମୁରାରି
ରଖ ବା ନରଖ ଆହେ ପଦ୍ମମୁଖ
ଲୋଡ଼ାନାହିଁ ଧନ ମାଗେ ଶ୍ରୀ ଚରଣ
ପାରି ହୋଇ ଯିବା ଲଗି ନ ଗାଥ ଭେଳା ॥୪॥

ସୁଦର୍ଶନ ଧରିଛ କରେ କାହିଁକି କପଟ ମୋ ଠାରେ
ଚକ୍ର ଉହାଡରେ ରଖ ନେଇ ଥରେ
ନ ମାଗଇ କିଛି ଆହେ ନନ୍ଦବତ୍ସି
ଉପଇନ୍ଦ୍ର ତବ ପଦଧ୍ୟାୟୀ କହିଲା ॥୫॥

**

**

## ଜଗବନ୍ଧୁ କାହିଁକି

### ଉପେନ୍ଦ୍ର ନାଥ ବେହୁରା

(ବିଂଶ ଶତାବ୍ଦୀ)

ଜଗବନ୍ଧୁ କାହିଁକି ହେଲ ଏଡେ କପଟୀ
କାମ ନାହିଁ ଧନ୍ଦା ନାହିଁ ବଢ଼ାଇଛ ପେଟଟି ॥ଘୋଷା॥

ବଡ ଦେଉଳରେ ବସି ଭୋଗ ଖାଅ ଦିବା ନିଶି
ରତ୍ନ ପଲଙ୍କରେ ଶୋଇ ଆଳସ୍ୟ କି ଭାଙ୍ଗୁ ନାହିଁ
ବଡ ବଡ ନେତ୍ର କରି ଗୃହୁଁ ଅଛ ତରାଟି ॥୧॥

ଭାଇ ଭଉଣୀଙ୍କୁ ତୁମେ ସଙ୍ଗତେ ଧରି
ଲୀଳା କରୁଅଛ ଭବେ ହେ ଦଇତାରି
ଭଣ୍ଡିବା ହେଲା ସାର ଆହେ କଳା ଠାକୁର
ଲଗାଇଛ ହୁନ୍ଦର ଧନ୍ୟ ମୁଖ ତୁମର
ଅଲଜୁକ ମୁହେଁ ତବ ଲାଜ ନାହିଁଟି ॥୨॥

କାହାର ମନକୁ ପ୍ରଭୁ କରୁଛ ହରଷ
କାହାକୁ ନ ଦିଅ ପଦ କୁଡ଼ିଆ ବାସ
ଲାଞ୍ଚ ଖାଇ ଶିଖିଛ ପର ଘର ଭାଙ୍ଗୁଛ
ମିଛେ କଂପା ବସିଛ ଲଗାଇ ଖଟ ମିଛ
ଲାଞ୍ଚୁଆ ପ୍ରଭୁ ବୋଲି କହୁ ଦେବେଟି ॥୩॥

